# ଗଣେଶ୍ୱର ଦାସ:
# ଜୀବନର
# କିଛି ପତ୍ର କିଛି ଫୁଲ















ଗଣେଶ୍ୱର ଦାସ:

# ଜୀବନର

# 'କିଛି ପତ୍ର, କିଛି ଫୁଲ'




ସଂପାଦନା

ଡକ୍ଟର ଶ୍ରୀଚରଣ ମହାନ୍ତି

ଗଣେଶ୍ୱର ଦାସ:

**ଜୀବନର**

**'କିଛି ପତ୍ର, କିଛି ଫୁଲ'**

ଗଣେଶ୍ୱର ଦାସ
୨୯, ଫରେଷ୍ଟ ପାର୍କ, ଭୁବନେଶ୍ୱର - ୭୫୧୦୦୯
ଫୋନ୍- (୦୬୭୪) ୨୫୯୬୨୪୩
୯୯୩୭୩୪୭୮୫୦

ସଂପାଦକ : ଡକ୍ଟର ଶ୍ରୀଚରଣ ମହାନ୍ତି
୮୮୬, ଚଣ୍ଡୀମାତା କଲୋନୀ
ପୋ- ରସୁଲଗଡ଼, ଭୁବନେଶ୍ୱର-୭୫୧୦୧୦
ଫୋନ୍- ୯୪୩୭୩୫୧୯୪୨

ମୁଦ୍ରଣ ଓ ପ୍ରକାଶନ:
**ମ୍ୟାଗ୍ନମ୍ ପ୍ରିଣ୍ଟର୍ସ**
ଆର.ଟି.-୨୮, ରସୁଲଗଡ଼ ଶିଳ୍ପାଞ୍ଚଳ
ଭୁବନେଶ୍ୱର-୭୫୧୦୧୦
ଫୋ- ୦୬୭୪-୨୫୪୯୩୦୭

Ganeswar Das:

*Jibanara*

"Kichhi Patra, Kichhi Phulla"

Ganeswar Das
29, Forest Park, Bhubaneswar-751009
Ph: (0674) 2596243
9937347850

Editor: Dr. Sricharan Mohanty
886, Chandimata Colony
PO: Rasulgarh, Bhubaneswar-751010
Ph: 9437351942

*Printing & Publishing:*
MAGNUM PRINTERS
RT-28, Rasulgarh Industrial Estate
Bhubaneswar - 751010
Ph.: 0674-2549307
Email: magnum_printers@rediffmail.com

# ସୂଚୀପତ୍ର



♦ ♦ ♦

# ସଂପାଦକଙ୍କ ପ୍ରଶଂସନୀୟ ଦୃଷ୍ଟିଭଙ୍ଗୀ ...

କଥା ଛଳରେ କହୁ କହୁ ମୁଁ ବନ୍ଧୁ ଡକ୍ଟର ଶ୍ରୀଚରଣ ମହାନ୍ତିଙ୍କୁ କହିଥିଲି ମୋର ବନ୍ଧୁମାନଙ୍କ ଠାରୁ ପାଉଥିବା ଚିଠି ସବୁ ମୁଁ କିପରି ସାଇତି ରଖେ। ତା'ଛଡା ମୁଁ ନିଜେ ଲେଖୁଥିବା କେତେକ ଚିଠିର ନକଲ ମଧ୍ୟ ପାଖରେ ରଖିଥାଏ। ପରମ ହିତାକାଂକ୍ଷୀ ବନ୍ଧୁ ଡକ୍ଟର ମହାନ୍ତି ଆଗ୍ରହ ପ୍ରକାଶ କଲେ କେତେକ ଚିଠି ଯଦି ଗୋପନୀୟ ନହୋଇଥାଏ ଦେଖିବା ଲାଗି। ଚିଠି ସବୁ ଦେଖିଲେ ଏବଂ ବାଛି ବାଛି କିଛି ଚିଠି ଜେରକ୍ସ କରି ନେବା ଲାଗି ଆଗ୍ରହ ପ୍ରକାଶ କଲେ। ମୋର ଯୋଗ୍ୟତା ନଥିଲେ ବି କିଛି ଅନୁଷ୍ଠାନରୁ ମତେ ମିଳିଥିବା ମାନପତ୍ର ସବୁର ନକଲ କରି ନେଇଗଲେ। ମୋର ୨/୪ଟା ଅପ୍ରକାଶିତ ପ୍ରବନ୍ଧ ଏବଂ ଭାଷଣ ପାଇଁ ପ୍ରସ୍ତୁତ ଲେଖା ମଧ୍ୟ ଜେରକ୍ସ କରିନେଲେ। କିଛିଦିନ ପରେ ସେ ତାଙ୍କର ଇଚ୍ଛା ପ୍ରକାଶ କଲେ ସେ ସବୁର ସମ୍ପାଦନା କରିବା ଲାଗି ଯଦି ମୋର କିଛି ଆପତ୍ତି ନଥାଏ। ବନ୍ଧୁତ୍ୱର ଆନ୍ତରିକତାର ଚାପରେ ମୁଁ ନାହିଁ କରିପାରିଲି ନାହିଁ। ତାଙ୍କର ବଳିଷ୍ଠ ସମ୍ପାଦନାରେ ମୋର ମୂଲ୍ୟ ନଥିବା ଏଣୁତେଣୁ ଲେଖା ସବୁରେ ମୂଲ୍ୟ ଆରୋପ କରି ବହିଟିଏ ପ୍ରକାଶ କରୁଛନ୍ତି। ମତେ ଦି'ପଦ ଲେଖିବା ପାଇଁ କହିଛନ୍ତି। ମୁଁ ବା କ'ଣ ଲେଖିବି ? ଅନାବନା ଜୀବନ କାହାଣୀ 'ମନେପଡ଼େ' ଛୋଟ ଆତ୍ମ ଜୀବନୀରେ ଲେଖିଥିଲି। ବହୁବର୍ଷ ବିତିଗଲାଣି। ଜୀବନ କିନ୍ତୁ ସରୁନାହିଁ। ଶାରୀରିକ କଷ୍ଟ ବଢିଚାଲିଛି। ପଢାପଢି ଲେଖାଲେଖିରେ ମଧ୍ୟ ମନ ରହୁନାହିଁ।

ଆନ୍ତରିକତାକୁ ହୃଦୟରେ ଉଚ୍ଚସ୍ଥାନ ଦେଇ ମୁଁ ଚିଠି ଲେଖେ ଏବଂ ପାଉଥିବା ଚିଠି ସବୁକୁ ସାଇତି ରଖେ। ଆଜିର ଦୁନିଆ ମୋର ଏ ଦୃଷ୍ଟିଭଙ୍ଗୀକୁ ହସରେ ଉଡାଇ ଦେଇପାରେ। ଚିଠିଟିଏ ଲେଖିବା ଅଥବା ଶୁଭେଚ୍ଛା କାର୍ଡଟିଏ ପଠାଇବା ଭିତରେ ଯେଉଁ ଆନ୍ତରିକତା ଭରି ରହୁଥିଲା ତାହା ଆଜିର ଦୁନିଆରେ ଲୋପ ପାଇ ସାରିଲାଣି। କମ୍ପ୍ୟୁଟର, ମୋବାଇଲ୍ ଯୁଗରେ ଚିଠି ଲେଖା ବନ୍ଦ ହୋଇ ସାରିଲାଣି। ନୂଆ ବର୍ଷ ଅଥବା ଜନ୍ମଦିନ ମାନଙ୍କରେ ଗ୍ରୀଟିଂ କାର୍ଡଟିଏ ବାଛି କରି କିଣିବା, ତାକରେ ପଠାଇବା ଏବଂ କାର୍ଡଟିଏ ପାଇବାରେ ଅନ୍ତର୍ନିହିତ ଆନନ୍ଦର ରୂପ ବଦଳି ଯାଇଛି। କମ୍ପ୍ୟୁଟର ବା ମୋବାଇଲ୍ ଜରିଆରେ ଦୁଇଧାଡି ମେସେଜ୍ ପଠାଇ ଦେଲେ କାମ ଶେଷ। ଯେଉଁମାନେ ମତେ ଭଲ ପାଆନ୍ତି ସେମାନେ ଚିଠି ଲେଖନ୍ତି। ମତେ କବିତା ଲେଖି ଆସେ ନାହିଁ। ତଥାପି ପରିବାର ସଦସ୍ୟ ମାନଙ୍କର ଜନ୍ମଦିନ ମାନଙ୍କରେ ଏବଂ ଦିବଂଗତ ବାବା, ମା, ଶାଶୁ ଶ୍ୱଶୁରଙ୍କ ଶ୍ରାଦ୍ଧ ଉତ୍ସବରେ ମୁଁ ତଥାକଥିତ କବିତା ମାନ ଲେଖେ। ଜଣେ ପ୍ରକାଶକ ଛାତ୍ରବନ୍ଧୁ ନିଜ ପ୍ରେସ୍‌ରେ ସେଗୁଡିକ ଛପାଇ ଦୁଇଟି ପୁସ୍ତକ ପ୍ରକାଶ କରିଥିଲେ। ତାଙ୍କର ଯୁକ୍ତି ଥିଲା, ବ୍ୟକ୍ତିଗତ ଲେଖା ମାଧ୍ୟମରେ ଆନ୍ତରିକତାର କୋହ ଅଟିହ୍ନା ପାଠକମାନଙ୍କ ପାଖରେ ପହଞ୍ଚିପାରିବ। ଶ୍ରୀଚରଣ ବାବୁ ପୁସ୍ତକ ଦୁଇଟିର ନାମକରଣ କରିଥିଲେ, "ବୈକୁଣ୍ଠ ସମାନ ଆହା ଅଟେ ସେହି ଘର" ଏବଂ "ଏ ସବୁ ମୋହର ସୁଖ ପସରା"। ମୁଁ କାହିଁକି ଭାବେ, ପ୍ରେମର ସଂଜ୍ଞା ମଧ୍ୟ ଆନ୍ତରିକତାର ଅଭାବରେ ମେସିନ୍ ଭିତରେ ଦଳି ଚକଟି ହୋଇଯାଉଛି।

ସାହିତ୍ୟ କ୍ଷେତ୍ରକୁ ଆସନ୍ତୁ। କବି ଲେଖୁଥିବା କବିତା ମାନ ବୁଝିବା କଷ୍ଟ ହେଉଛି। କବିତା ଟିଏ ଆବୃତ୍ତି କରିବାରେ ଆନନ୍ଦ ମିଳୁଥିଲା। ପାଠକ ବା ଶ୍ରୋତା ଯେକୌଣସି ଶ୍ରେଣୀର ହେଲେ ମଧ୍ୟ କବିତା ମଧ୍ୟରେ ଥିବା ଆନ୍ତରିକତାର ସ୍ପର୍ଶ ଅନୁଭବ କରି ପାରୁଥିଲେ। ଅଧିକାଂଶ କବିତା ପାଠକ ବା ଶ୍ରୋତା ମାନଙ୍କର କଣ୍ଠସ୍ଥ ହୋଇ ଯାଉଥିଲା। ଯୁଗ ବଦଳି ଯାଇଛି। କବିତା ଭିତରକୁ ଗଣିତ ବା ବିଜ୍ଞାନର କ୍ଳିଷ୍ଟତା ପ୍ରବେଶ କରି କବିତାର ସ୍ୱାଦ ନଷ୍ଟ କରିଦେଉଛି। କ୍ଳିଷ୍ଟତା ଥିବା କବିତାମାନଙ୍କୁ ହୃଦୟରେ ସାଇତି ରଖିହେଉନି। ଆମ ଭାଷା ଯଦି ଆମେ ନବୁଝିପାରୁ, ଆମ ଭାଷାରେ ଆମେ ଯଦି ଲାଳିତ୍ୟ ସୃଷ୍ଟି ନ କରିପାରୁ, ତେବେ ଭାଷା ଓ ସାହିତ୍ୟ କଠୋର କାରାଗାର ଭିତରେ ବନ୍ଦୀ ହୋଇଯିବେ। ଅବଶ୍ୟ ଏ ସବୁ ମୋ ପରି ମୂର୍ଖଙ୍କର ଅଜବ ଧାରଣା ହୋଇପାରେ।

ଆଜିର ସ୍ୱାର୍ଥ ନିହିତ ଦୁନିଆରେ ଡକ୍ଟର ଶ୍ରୀଚରଣ ମହାନ୍ତିଙ୍କ ପରି ବନ୍ଧୁ ମୋର ପୁରୁଣା ଚିଠିରୁ କିଛି ନେଇ ସଂପାଦନା କରୁଛନ୍ତି ଭାବିଲେ ଆଶ୍ଚର୍ଯ୍ୟ ଲାଗେ। ତାଙ୍କୁ ମୋର କୋଟି କୋଟି ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି।

**ଗଣେଶ୍ୱର ଦାସ**



ଗଣେଶ୍ୱର ସାର୍‌ଙ୍କର ପିଲାଦିନରୁ ଆରମ୍ଭ ହୋଇ ଏ ପର୍ଯ୍ୟନ୍ତ ଉଠିଥିବା ବିଭିନ୍ନ ଫଟୋ
**"ମନେପଡ଼େ"**



## କିଛି ଆଭାସ...

- ଏକ -

ଆମେ କୌଣସି ସର୍ଜନଶୀଳ-କାର୍ଯ୍ୟ, ଯେପରି କାବ୍ୟ, କବିତା, ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ ବା ସମାଲୋଚନା ଆଦି ପ୍ରସ୍ତୁତ କଲାବେଳେ ଚେତନ ବା ଅବଚେତନ ଅବସ୍ଥାରେ ପାଠକ/ପାଠିକା/ ଏକ ବୃହତ୍ତର ସମାଜ ବା ବହୁ ଅଜଣା ବ୍ୟକ୍ତିଙ୍କୁ ଆଖି ଆଗରେ ରଖିଥାଉ। ସେତେବେଳେ ସ୍ରଷ୍ଟା ସମ୍ମୁଖରେ ପାଠକ / ପାଠିକାଙ୍କର ଏ ସୃଷ୍ଟି ସଂପର୍କରେ ଅନେକ ପ୍ରଶ୍ନ ଆସିବାର ସମ୍ଭାବନା ଆଶା କରାଯାଇପାରେ।

ଅନେକ ସ୍ରଷ୍ଟା ହୁଏତ ଏହାକୁ ଅସ୍ୱୀକାର କରି କହନ୍ତି ଯେ ସେମାନେ ନିଜର ମାନସିକ ଶାନ୍ତି ବା ନିଜର ପରିତୃପ୍ତି ପାଇଁ ଏହି ସୃଷ୍ଟି କରୁଛନ୍ତି। ସେମାନେ ବାହାରକୁ ଏପରି ପ୍ରକାଶ କଲେବି ଅବଚେତନ ମନରେ ଅନ୍ୟକୁ ଦେଖାଇବାର ବାସନା ଥାଏ। କିନ୍ତୁ ଚିଠିପତ୍ର ଲେଖିଲାବେଳେ ଯାହାଙ୍କୁ ଲେଖାଯାଏ, ସେ ନିର୍ଦ୍ଦିଷ୍ଟ ବ୍ୟକ୍ତି ବା ଅତିବେଶି ତାଙ୍କ ପରିବାର ହିଁ ସମ୍ମୁଖକୁ ଆସିଥାନ୍ତି। ଯେଉଁମାନଙ୍କ ସହିତ ଆନ୍ତରିକତା ଥାଏ ବ୍ୟକ୍ତିଗତ ପତ୍ର ସେଇମାନଙ୍କ ପାଖକୁ ହିଁ ଦିଆଯାଏ। ଅନେକ ସମୟରେ ଏହି ବ୍ୟକ୍ତିଗତ ପତ୍ରରେ ଅବଚେତନ ଅବସ୍ଥାର ଅନେକ ପ୍ରସଙ୍ଗ ଆସିଯାଏ, ଯାହାର ରୂପ ସାର୍ବଜନୀନ।

ପତ୍ରପ୍ରେରକ ଭାବି ନଥାଏ ଯେ, ଏହାର ମୂଲ୍ୟ କେତେ। ଆଉ ଭବିଷ୍ୟତରେ କେତେବେଳେ ଏହା ସାର୍ବଜନୀନ ରୂପ ନେବ। ସହୃଦୟ ବ୍ୟକ୍ତି ଏ ସମ୍ପର୍କରେ ଆଦୌ ଏହି ପ୍ରସଙ୍ଗ ଆଶା କରିନଥାନ୍ତି। ଚିଠିରେ ଅନେକ ହୃଦୟର ନିଛକ ଛବି ରହିଥାଏ, ଏ କଥା ଅସ୍ୱୀକାର କରିହେବ ନାହିଁ।

ପ୍ରାଚୀନ ସମାଜରେ ବ୍ୟକ୍ତିଗତ ଅନୁଭବ, ପାରିବାରିକ ସୁଖଦୁଃଖ, ସାମାଜିକ ବ୍ୟବସ୍ଥା/ଅବ୍ୟବସ୍ଥା, ଘଟଣା/ଅଘଟଣ, ଲୋକମୁଖରେ ଚଳିଚଳି ଆସିଥିବା ବିଷୟବସ୍ତୁ କ୍ରମେ ଲୋକସାହିତ୍ୟର ରୂପନେଲା। ସେତେବେଳେ କେହି ଭାବି ଥିବେ ଯେ ଶାଶୁ ଘରର ସମ୍ଭାବ୍ୟ ଦୁଃଖକୁ ମନେପକାଇ କାନ୍ଦୁଥିବା ଝିଅଟିର ବା ମାଆଟିର କାନ୍ଦଣା, ହଳକରୁଥିବା ସରଳ ଚାଷୀଟିର ମନକୁମନ ଗୁନ୍ଥି ଗୀତଗାଉଥିବା ରାମାୟଣଗୀତ ହଳିଆ ରାମାୟଣ ଅଥବା ଜୀବଜନ୍ତୁ ପଶୁପକ୍ଷୀଙ୍କୁ ଅନୁକରଣ କରି ନାଚୁଥିବା ମଣିଷର ପରମ୍ପରା ପରବର୍ତ୍ତୀ ସମୟରେ ସାହିତ୍ୟର ରୂପନେବ?

ବିଶ୍ୱରେ ବିଶିଷ୍ଟ ଲେଖକ / ଲେଖିକାଙ୍କର ପ୍ରେରିତ ପତ୍ର ସାହିତ୍ୟରୂପ ନେଇଛି। ସେହି ପତ୍ରକୁ ଆଧାର କରି ଅନେକ ପୁସ୍ତକ ବି ରଚିତ ହୋଇପାରିଛି। ନମୁନା ସ୍ୱରୂପ କବି ମାୟାଧର ମାନସିଂହ ବିଲାତରେ ପାଠପଢ଼ିଯିବାକୁ ଯିବା, ରହିବା ଓ ଫେରିବା ବିଷୟରେ ଯେଉଁ ଲମ୍ବାଲମ୍ବା ଚିଠି ପଠାଉଥିଲେ ତାହାର ସଂକଳିତ ରୂପ ହିଁ ପଶ୍ଚିମପଥିକ ଭ୍ରମଣ କାହାଣୀ।

ସାରଙ୍କ ନିକଟକୁ ଆଗତ ପତ୍ର ସଂଗ୍ରହକରି ଏକ ପୁସ୍ତକ ରୂପ ଦେବା ଅନେକ ଦିନର ଅଭିଳାଷ ଥିଲା। ଏବେ ତାହା ଏକ ସଂକଳନ ରୂପ ନେବାକୁ ଯାଉଛି।

- ଦୁଇ -

କିଛି ଆଶା... ଅନେକ ଆଶଙ୍କା... ରଖି ଓଡ଼ିଆରେ ମୌଳିକ ଲେଖା-ଲେଖି ଆରମ୍ଭ କରିଥିବା ପ୍ରଫେସର ଗଣେଶ୍ୱର ଦାସ ଏବେ ଅନେକ ଆଶା... କିନ୍ତୁ ଆଶଙ୍କାହୀନ ଅବସ୍ଥାରେ ନିଜେ ପରିଣତ ହୋଇଛନ୍ତି। ଏପ୍ରିଲ ୪, ୧୯୮୪ ମସିହାରେ, ସାର, ପ୍ରଫେସର ଗଣେଶ୍ୱର ଦାସ ରାଉରକେଲା ସରକାରୀ ମହାବିଦ୍ୟାଳୟରେ ଅଧ୍ୟକ୍ଷ ଭାବରେ ଯୋଗଦାନ କଲେ। ଦୁଇବର୍ଷ ଆଗରୁ ମୁଁ ରାଉରକେଲା ସରକାରୀ କଲେଜରେ ଅଧ୍ୟାପକ

ଭାବରେ ଯୋଗଦେଇଥାଏ । ସାରଙ୍କର ପ୍ରଶାସନିକ ଦକ୍ଷତା, ପରିଚାଳନାର ନିଷ୍ଠା ଓ ସର୍ବୋପରି ନୂଆ କାମ କରିବାର ଆନ୍ତରିକତା, ଅସଜଡ଼ା କଲେଜକୁ ସଜାଡି ଚାଲିଥାଏ । ଏକଦା ରାଉରକେଲା ସରକାରୀ କଲେଜ ବିଶ୍ୱବିଦ୍ୟାଳୟରେ ସ୍ୱତନ୍ତ୍ରଗୌରବର ଅଧିକାରୀ ଥିଲା । ବିଜ୍ଞାନ ପରୀକ୍ଷାରେ ବିଶ୍ୱବିଦ୍ୟାଳୟର ପ୍ରଥମ ଦଶଜଣ ଶ୍ରେଷ୍ଠ ଛାତ୍ରଛାତ୍ରୀ ହିଁ ଥିଲେ କେବଳ ଏଇ କଲେଜର । ମାତ୍ର ସାର୍‌ଙ୍କ ଆଗମନର ଠିକ୍ ପୂର୍ବରୁ ପରିଚାଳନାଗତ ଅବ୍ୟବସ୍ଥା ଯୋଗୁଁ କଲେଜ କେତେବର୍ଷ ହତଶ୍ରୀ ହୋଇଯାଇଥିଲା । କଲେଜରେ ଶୃଙ୍ଖଳା ପ୍ରାୟତଃ ନଥିଲା । ଏହି ଘଡ଼ିସନ୍ଧି ଅବସ୍ଥାରେ କଲେଜରେ ଯୋଗଦାନ କଲେ ସାର୍ । ପ୍ରାୟ ୩ମାସ ମଧ୍ୟରେ କଲେଜର ପୂର୍ବଅବସ୍ଥା କ୍ରମଶଃ ବଦଳିଗଲା । ଗୋଟିଏ ବର୍ଷରେ କଲେଜ ପୂର୍ବଗୌରବ ଫେରିପାଇବା ସହିତ ଏକ ଅଭିନବ ରୂପ ଧାରଣ କଲା ।

ନିୟମାନୁବର୍ତ୍ତିତା ଓ ପ୍ରଶାସନିକ ଶୃଙ୍ଖଳାରେ ବିଶ୍ୱାସ କରୁଥିବା ଅଧ୍ୟକ୍ଷ କଲେଜକୁ ସକାଳ ୮ଟାରେ ଆସି ଅପରାହ୍ନ ୫ଟା ଯାଏ ବା କେବେ କେବେ ଆହୁରି ବିଳମ୍ବ ଯାଏ କାମ କରୁଥିଲେ । ସାର୍‌ଙ୍କ ଆସିବାବେଳକୁ କଲେଜରେ ଛାତ୍ରଛାତ୍ରୀ, ଅଧ୍ୟାପିକା / ଅଧ୍ୟାପକ ତଥା ଅଣଶିକ୍ଷକ ବି ଖୁବ୍ ଭଲ ଥିଲେ, କିନ୍ତୁ ନୌକାର ମଙ୍ଗୁଆଳ ଠିକ୍ ନଥିବାରୁ ନୌକା ବାରବାଙ୍କ ବୁଲିଲା ଭଳି କଲେଜର ପୂର୍ବଅବସ୍ଥା ଏପରି ହୋଇଥିଲା ।

ସାର୍, ଅଧ୍ୟକ୍ଷ ଭାବରେ ଯୋଗଦାନ କରିବା ପୂର୍ବରୁ ମୁଁ କେବଳ ସାର୍‌ଙ୍କ ନାମ ଶୁଣିଥିଲି, ଆଖିରେ ଦେଖି ନଥିଲି । ଅଳ୍ପଦିନ ଭିତରେ କଲେଜର ଶିକ୍ଷକ, ଅଣଶିକ୍ଷକ ଓ ଚତୁର୍ଥଶ୍ରେଣୀ କର୍ମଚାରୀଙ୍କ ସହିତ ସାର୍ ବି ପରିଚିତ ହୋଇଗଲେ । ଆସନ୍ତା ବର୍ଷକୁ ଆସୁଥାଏ କଲେଜର ରଜତ ଜୟନ୍ତୀ ଉତ୍ସବ । ସେତେବେଳେ କଲେଜ, ଓଡ଼ିଆ ବିଭାଗର ମୁଁ କନିଷ୍ଠତମ ବ୍ୟକ୍ତି ।

ଅନ୍ଧାରଘରକୁ ଆଲୋକିତ କରିବା ପାଇଁ ସାର୍‌ଙ୍କ ପାଖରେ ପ୍ରଦୀପଟିଏ ଥିଲା, ଇନ୍ଧନ, ବଳିତା ଓ ଅଗ୍ନିର ଉତ୍ସ ବି ଥିଲା, କିନ୍ତୁ ପ୍ରଦୀପକୁ ଡେଜିବା ପାଇଁ କାଠି (ଦୀପଶଳାକା) ଖଣ୍ଡିଏ ର ନିତାନ୍ତ ଆବଶ୍ୟକତା ଥିଲା । ସାର୍ ସୁନ୍ଦର ଭାବରେ ଇଂରାଜୀରେ ତଥା ଓଡ଼ିଆରେ ଲେଖିପାରନ୍ତି । ଓଡ଼ିଆ ଓ ଇଂରାଜୀରେ ହୃଦୟକୁ ଛୁଇଁଲା ଭଳି କବିତା ଓ ଚିଠି ଲେଖିପାରନ୍ତି । କୌଣସି ସମସ୍ୟା ସଂପର୍କରେ ଭାଷଣ ବି ପ୍ରସ୍ତୁତ କରିପାରନ୍ତି । ମାତ୍ର ସାର୍ ଭୁଲ୍ ବା ଶୃଙ୍ଖଳାଭଙ୍ଗକୁ ସହଜରେ ଚଳାଇ ନେଇ ପାରନ୍ତି ନାହିଁ । ଏଣୁ ଏ ସମସ୍ତକୁ ଉପସ୍ଥାପନ କରିବା ପାଇଁ ସାର୍‌ଙ୍କ ଜଣେ ପ୍ରାରମ୍ଭିକ ପାଠକ ବା ଶ୍ରୋତା ଦରକାର ହେଉଥିଲା । ଶ୍ରୋତା ଜଣକ ବରିଷ୍ଠ ବା କନିଷ୍ଠ ହୋଇଥାଉ କିନ୍ତୁ ନିର୍ଭିକ ଓ ନିରପେକ୍ଷ ହେବା ଦରକାର । ନିଜେ ଲେଖିପାରୁଥିବ ବା ଅବଶ୍ୟକ ସ୍ଥଳେ ଲେଖା ସଂପର୍କରେ ମତାମତ ଦେଇ ପାରୁଥିବ । ସାର୍ ଏ ସବୁ କଥାକୁ ମନରେ ରଖି ବିଭିନ୍ନ ସମୟରେ କଲେଜରେ ପୂର୍ବରୁଥିବା କେତେକ ସାର୍‌ଙ୍କୁ ଅଲଗା ଅଲଗା ସମୟରେ ଡକାଇଥିଲେ । ଥରେ ମତେ ବି ଡକାଇ ପଠାଇଲେ । ପରେ କଲେଜ ପତ୍ରିକା ସଂପାଦନା କାମରେ ସାର୍‌ଙ୍କ ସହିତ ମୋର ବିଶେଷ ପରିଚୟ ହେଲା ।

କେବଳ ଅଧ୍ୟକ୍ଷ ଭାବରେ ଥିବା ସାଢେ ସାତବର୍ଷ ନୁହେଁ, ଏ ପର୍ଯ୍ୟନ୍ତ ଦୀର୍ଘ ୩୦ବର୍ଷ ହେବ ସାରଙ୍କ ସହିତ ମୋର ସଂପର୍କ ରହିଆସିଛି । ଏବେ ପ୍ରସଙ୍ଗକୁ ଆସିବା । ରାଉରକେଲା ସରକାରୀ କଲେଜରେ ଯୋଗଦାନ କରିବା ସମୟରେ କେବଳ ଶୃଙ୍ଖଳା ଓ ପାଠପଢ଼ାକୁ ନୁହେଁ, ସାରଙ୍କର ଲକ୍ଷ୍ୟଥିଲା ପ୍ରତିଭା ଅନ୍ୱେଷଣ (Talent Search) । ସାର୍ ସେଇଠାରେ ପାଇଲେ ଚିତ୍ର, ଗୀତ, ବାଦ୍ୟ, ଅଭିନୟ ଓ ସାଙ୍ଗଠନିକ ଦକ୍ଷତା ଥିବା ଛାତ୍ରଛାତ୍ରୀମାନଙ୍କୁ । ସେମାନଙ୍କ ପାଇଁ କିଣାହେଲା ବାଦ୍ୟଯନ୍ତ୍ର ସାମଗ୍ରୀ ଆହୁରି ଅନେକ କିଛି । କଲେଜର ସମସ୍ତ ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ କେବଳ ଶିକ୍ଷକ ଅଣଶିକ୍ଷକ କର୍ମଚାରୀ ଓ ଛାତ୍ରଛାତ୍ରୀମାନେ । ଅଧ୍ୟକ୍ଷ କେବଳ ଅଫିସରେ ବସୁନଥିଲେ, କଲେଜ ଭିତରେ ବୁଲି ଦେଖୁଥିଲେ । ଲଜିକ୍ / ଫିଲୋସଫିର ଶ୍ରେଣୀରେ ପାଠ ବି ପଢାଉଥିଲେ । କଲେଜ ପତ୍ରିକାରେ ଇଂରାଜୀରେ ଅଧ୍ୟକ୍ଷଙ୍କ ବାର୍ତ୍ତା ନଦେଇ ସ୍ୱତନ୍ତ୍ର ଲେଖା ରହୁଥିଲା । ଏଇଠି ହିଁ ସାରଙ୍କ ସହିତ ମୋର ପ୍ରତ୍ୟକ୍ଷ ସାକ୍ଷାତ ହେଲା । ସାର୍ ପତ୍ରିକା ପାଇଁ ଲେଖାଟି ଲେଖି ମତେ ପଢିବା ପାଇଁ ଡକାଇଲେ । ଲେଖାଟି ଚମତ୍କାର ଥିଲା ମାତ୍ର ନାଁ ଦିଆ ହୋଇନଥିଲା ।

ମୋର କାମ ଥିଲା ପଢିସାରି ସେଇଠି ସାରଙ୍କ ପାଖରେ ନାଆଁ ଦେବା ପାଇଁ। ବିଷୟ ବସ୍ତୁକୁ ଆଧାର କରି ସେଦିନ ମୁଁ ନାମ ଦେଇଥିଲି "କିଛି ଆଶା... ଅନେକ ଆଶଙ୍କା..." ପୂର୍ବରୁ ସାର୍ - ପାଶ୍ଚାତ୍ୟ ଦର୍ଶନର ଇତିହାସ - ପୁସ୍ତକ ଲେଖିଥିଲେ। ମାତ୍ର ପାଠ୍ୟକ୍ରମ ବାହାରେ ସାଧାରଣ ଅନୁଭୂତିକୁ ନେଇ ସେଇ ଦିନଠୁ ଆଜିପର୍ଯ୍ୟନ୍ତ ଚାଲିଛି ଅନବରତ ଲେଖାଲେଖି।

ବିଭିନ୍ନ ସଂକଳନ ଓ ପତ୍ରପତ୍ରିକାରେ ସାରଙ୍କ ଲେଖା ପ୍ରକାଶିତ ହୋଇ ଲୋକପ୍ରିୟତା ଲାଭ କରିପାରିଛି। ସାରଙ୍କ ଲେଖାର ପାଣ୍ଡୁଲିପିରେ ପରିବର୍ତ୍ତନ କରିବା ଦରକାର ପଡେନା ମାତ୍ର ଗୋଟିଏ ଆଶଙ୍କା ରହିଥାଏ, କାଳେ କିଛି ଭୁଲ ରହିଗଲା କି ?

ସାରଙ୍କ ବିଭିନ୍ନ ଅପ୍ରକାଶିତ ଲେଖା ଦେଖିବାକୁ ମୁଁ ଇଚ୍ଛାକରେ। ଥରେ ମୁଁ ଗୋଟିଏ ଫାଇଲରେ ଦେଖିଲି ସାର୍ ସପରିବାରର ସମସ୍ତଙ୍କ ପାଇଁ କବିତାରେ ଅନେକ ଲେଖା ଲେଖିଛନ୍ତି, ମାତ୍ର ତାହାକୁ ପ୍ରକାଶ କରିବାକୁ ସାହସ କରିନାହାନ୍ତି। ସମସ୍ତ ଲେଖାକୁ ଦେଖିବାକୁ ମୁଁ ଅନୁରୋଧ କରିବାରୁ ସାର ପୁରା ଫାଇଲଟି ଧରେଇ ଦେଲେ। ଲେଖାକୁ କ୍ରମରେ ସଜାଇବା ଓ ନାମକରଣ କରିବା ଥିଲା ମୋ କାମ। ବହିଟିର ନାମ ଦେଲି "ବୈକୁଣ୍ଠ ସମାନ ଆହା ଅଟେ ସେହି ଘର" ଥରେ ଆଉ ଏକ ଫାଇଲ୍ ସାର୍ ନିଜେ ମତେ ଦେଲେ ସେହି ପାରିବାରିକ ପୁସ୍ତକଟିକୁ ମୁଁ ସଜାଇଥିଲି ଓ ନାମ ଦେଇଥିଲି "ଏ ସବୁ ମୋହର ସୁଖ ପସରା"।

ଏହିକ୍ରମରେ ସାରଙ୍କର ଆତ୍ମଜୀବନୀ ଓ ଅନ୍ୟାନ୍ୟ ପ୍ରବନ୍ଧ ତଥା ଆଲୋଚନା ପୁସ୍ତକ ପ୍ରକାଶିତ ହେଲା ପରେ ମୁଁ ଦେଖିଲି ସାରଙ୍କର ଆଉ କେତେକ ଫାଇଲ ବନ୍ଧା ହୋଇ ରହିଛି। ସେ ଦିନ ସାର୍ ତାଙ୍କର ବନ୍ଧୁମାନଙ୍କର ଚିଠିପତ୍ର କିପରି ସାଇତି ରଖନ୍ତି ସେ ପ୍ରସଙ୍ଗରେ କହିଲେ। ସାରଙ୍କୁ ଅନୁରୋଧ କଲି ଯେ ସେ ଚିଠିପତ୍ର କିପରି ସାଇତି ରଖନ୍ତି ସେ ପ୍ରସଙ୍ଗରେ କହିଲେ। ସାରଙ୍କୁ ଅନୁରୋଧ କଲି ଯେ ସେ ଚିଠିପତ୍ର ମଧ୍ୟରୁ ବ୍ୟକ୍ତିଗତ ପ୍ରସଙ୍ଗ ଚିଠି ବ୍ୟତୀତ ଅନ୍ୟାନ୍ୟ ଚିଠି ଦେଖାଇବା ପାଇଁ। ସାର ଅନେକ ଚିଠି ମତେ ପଢିବା ପାଇଁ ଦେଲେ। ସେ ଚିଠିରେ ବିଶିଷ୍ଟ ଲୋକଙ୍କର ମୂଲ୍ୟବାନ ଚିଠିଥିଲା। ଏହାର ବୈଶିଷ୍ଟ୍ୟ ରହିଛି ଓ ଏହା ପ୍ରକାଶ ଉପଯୋଗୀ ତଥା ଏହାକୁ ପୁସ୍ତକ ରୂପ ଦେବାପାଇଁ ମୁଁ ସାରଙ୍କୁ ଅନୁରୋଧ କଲି। ଅନ୍ୟଏକ ଫାଇଲରେ ସାର ବନ୍ଧୁମାନଙ୍କୁ ପଠାଇଥିବା ଚିଠିର ନକଲ ରଖିଥିବାର ବି ଦେଖିଲି। ଏହା ସହିତ ବିଭିନ୍ନ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷ ପ୍ରଦାନ କରିଥିବା ଅଭିନନ୍ଦନ ପତ୍ରକୁ ମୁଦ୍ରଣ ପାଇଁ କହିଲି। ସୌଭାଗ୍ୟକ୍ରମେ ଏହା ମୁଦ୍ରିତ ରୂପ ନେବାକୁ ଯାଉଛି। ଚିଠିପତ୍ର ସହିତ ସାର୍ ପ୍ରେରଣ କରିଥିବା କେତେକ ଉତ୍ତର ବି ଦେଖିଲି। ସାର୍ ପ୍ରଶାସନ କାର୍ଯ୍ୟରେ ଯେତିକି କଠିନ ନିଜ ସଂପର୍କରେ କିଛି ପ୍ରକାଶ କରିବାକୁ ଅଧିକ ସଂକୋଚବୋଧ କରନ୍ତି। ଯାହାହେଉ ମୋର ଅନୁରୋଧ ରକ୍ଷା କରି ସେ ସବୁ ପ୍ରଦାନ କରିଛନ୍ତି।

ବିଶିଷ୍ଟ ଲେଖକଙ୍କର ହାତଲେଖାକୁ ପରିଚିତ କରାଇବା ପାଇଁ ସାମାନ୍ୟ ଓ ସଂକ୍ଷେପରେ କେଇଧାଡି ଲେଖାଯାଇଛି। ଏଭଳି ବିରାଟ ଲେଖକଙ୍କ ସମ୍ପର୍କରେ ପରିଚୟଟି ଅତି କମ୍ ହୋଇଛି, କାରଣ ମୂଳଚିଠି ବିଶେଷ ବଡ ନୁହେଁ। ଏହି ଜାତୀୟ ସଂପଦ଼ି କେବେ କୌଣସି ପାଠକପାଠିକାଙ୍କର ଉପଯୋଗରେ ଆସିପାରିଲେ ଆମେ ଗୌରବ ଅନୁଭବ କରିବୁ।

ସାର୍ ପ୍ରଫେସର ଦାସ, ତାଙ୍କର ଏହି ୩୦ବର୍ଷ ଅବଧିରେ ଯେଉଁ ଶ୍ରଦ୍ଧା ବା ସଦିଚ୍ଛା ମୋ ପ୍ରତି ପ୍ରଦାନ କରି ଆସିଛନ୍ତି, ଏହି ପୁସ୍ତକ ପ୍ରକାଶନ କାଳରେ ମୁଁ ସାରଙ୍କୁ କେବଳ ସଭକ୍ତି ପ୍ରଣାମ ହିଁ ଜଣାଉଛି।

(ଡକ୍ଟର ଶ୍ରୀଚରଣ ମହାନ୍ତି)
ତା ୧୮.୧୨.୨୦୧୪

## ଅଧକ୍ଷ, ଗୁରୁଜୀ ପ୍ରଫେସର ଗଣେଶ୍ୱର ଦାସଙ୍କୁ

ସାଗର ସଲିଳ କୋଳାଗ୍ରତ କରି
ମଉସୁମୀ ଆସେ ବହି,
ତାଳ ତମାଳର କାନନିକା ଭେଦି
ମେଦିନୀ ଛୁଇଁବା ପାଇଁ।
ବଜ୍ରନିନାଦ ଝଟକା ପ୍ରବାହ
କରକା ପତନ ମେଳେ,
ଦୁର୍ଦ୍ଦମନୀୟ ମଉସୁମୀ ଆସି
ଜନ-ମନ ବନେ ଖେଳେ।
ଧ୍ୱଂସ ନୁହେଁ ତା ଲକ୍ଷ୍ୟ,
ଜଗତର ହିତେ ଜନ ମଙ୍ଗଳେ
ପରିପୂର୍ଣ୍ଣ ତା ବକ୍ଷ।

ବତୀଶିଖା ପରି ଶିକ୍ଷକ ପ୍ରାଣ
ନିଜେ ଜଳି, ଦିଏ ଜ୍ୟୋତି,
କଠୋରତା ଅଛି, ଅଛି ରୁକ୍ଷତା
ନାରିକେଳ ସମ ମତି।
ଗୋଟିଏ ବତୀରୁ ଅନେକ ଜଳିବ
ଏକକୁ ଅନେକ କରି,
ବତୀଶିଖା ପ୍ରାଣ ସାର୍ଥକ ହେବ
ତମସାରେ ଜ୍ୟୋତି ଭରି।
ନିଜେ ଜଳି ଜାଳି-ବତୀ
ଶିକ୍ଷକ, ଆହେ ପ୍ରାପ୍ତିରେ ନାହିଁ
ପ୍ରଦାନରେ ପ୍ରାଣ ତୃପ୍ତି
ଭରସା ଦେଉଛୁ ଆମେ
ଗୋଟିଏ ଶିଖାରୁ କୋଟି ଶିଖା କରି
ଜଳାଇବୁ ପ୍ରତି ପ୍ରାଣେ

+୨ ବିଜ୍ଞାନ ଛାତ୍ରଛାତ୍ରୀ
ରାଉରକେଲା ସରକାରୀ କଲେଜ

ସାର୍‌ଙ୍କ ଅବସରକାଳୀନ ବିଦାୟ ଉତ୍ସବରେ ରାଉରକେଲା ସରକାରୀ ମହାବିଦ୍ୟାଳୟର +୨ ବିଜ୍ଞାନ ଛାତ୍ରଛାତ୍ରୀମାନେ ଏହି କବିତାଟି ଉପହାର ଦେଇଥିଲେ।

## ସଂବର୍ଦ୍ଧନା ଓ ମାନପତ୍ର

ସାର୍ (ଗଣେଶ୍ୱର ଦାସ) ତାଙ୍କର ଦୀର୍ଘ ଅଧ୍ୟାପନା ଏବଂ ଅବସର ସମୟ ଭିତରେ ଅନେକ ଅନୁଷ୍ଠାନ ତଥା ବ୍ୟକ୍ତି ବିଶେଷଙ୍କ ଠାରୁ ସଂବର୍ଦ୍ଧନା ଲାଭ କରିଛନ୍ତି । ସେ ସବୁ ମଧ୍ୟରୁ ମାତ୍ର ୮ଟି ସଂବର୍ଦ୍ଧନା (ମାନ ପତ୍ର) ମୁଁ ତାଙ୍କ ଠାରୁ ପାଇ ପାରିଲି । ଉକ୍ତ ସଂବର୍ଦ୍ଧନା ପତ୍ରମାନଙ୍କର ନକଲ ଏହି ପୁସ୍ତକଟିରେ ପ୍ରଥମରୁ ସାଇତି ରଖିଛି ।



୧. ନିଖିଳ ଉତ୍କଳ ଦର୍ଶନ ସଂସଦର ଦ୍ୱାଦଶ ବାର୍ଷିକ ସମାରୋହ - କଟକ ରେଭେନ୍ସା କଲେଜ୍ ପରିସରରେ




୨. ଶ୍ୱେତ ସଂକେତ ଅନୁଷ୍ଠାନ ଠାରୁ ରତ୍ନାକର ପତି ସମ୍ମାନ

# Felicitation to Professor Ganeswar Das

29, Forest Park,
Bhubaneswar-9

Respected Sir,

Kindly allow me to felicitate you on this occasion from the core of my heart. I very much cherish the memory of having you as my teacher during my under-graduate study at Ravenshaw College in 1958. Your pleasing manners and undaunted personality with remarkable gentleness become highly inspiring for me. Specially your emphasis on philosophical concern for social need and welfare remains highly encouraging to me. I earnestly desire your good wishes and blessings.

With my deepest regards to you.

Yours Affectionately,

Bijay
(Bijayananda Kar)

୩. ପ୍ରଫେସର ଡକ୍ଟର ବିଜୟାନନ୍ଦ କରଙ୍କ ସମ୍ମାନାର୍ଥେ Festschrift volume ଉନ୍ମୋଚନ ସମୟରେ ଡକ୍ଟର କର ପ୍ରଥମେ ତାଙ୍କର ଗୁରୁ ଗଣେଶ୍ୱର ଦାସଙ୍କୁ ମାନପତ୍ର ଦେଇ ଅଭ୍ୟର୍ଥନା କରିଥିଲେ।

ମା
ନ
ପ
ତ୍ର



## ବିଜେବି ସ୍ୱୟଂଶାସିତ ମହାବିଦ୍ୟାଳୟ, ଭୁବନେଶ୍ୱର
## ଦର୍ଶନ ବିଭାଗ

### ପ୍ରଫେସର ଗଣେଶ୍ୱର ଦାସ ମହୋଦୟେଷୁ

ମହାଶୟ,

ବିଜେବି ସ୍ୱୟଂଶାସିତ ମହାବିଦ୍ୟାଳୟ ଦର୍ଶନ ବିଭାଗର ଅଧ୍ୟାପକ ଓ ଛାତ୍ର ଛାତ୍ରୀଗଣ ଆପଣଙ୍କୁ ସମ୍ବର୍ଦ୍ଧିତ କରିବାକୁ ଯାଇ ଅତ୍ୟନ୍ତ ଆନନ୍ଦ ଅନୁଭବ କରୁଛନ୍ତି । ଆପଣ ଓଡ଼ିଶାର ଶିକ୍ଷାବିଭାଗର ଜଣେ ପ୍ରବୀଣ ଅଧ୍ୟାପକ, ଗବେଷକ ଓ ଅଧକ୍ଷ ଭାବେ କାର୍ଯ୍ୟନିର୍ବାହ କରି ଅବସର ନେଇ ସାରିଛନ୍ତି । ରେଭେନ୍ସା ମହାବିଦ୍ୟାଳୟରୁ ଦର୍ଶନଶାସ୍ତ୍ରରେ ସ୍ନାତକ ଓ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ଦର୍ଶନଶାସ୍ତ୍ରରେ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କରି ଓଡ଼ିଶାର ବିଭିନ୍ନ ମହାବିଦ୍ୟାଳୟରେ ଅଧ୍ୟାପକ ହୋଇ ନିଜର କର୍ମମୟ ଜୀବନ ଅତିବାହିତ କରିଛନ୍ତି । ଜଣେ ନିଷ୍ଠାପର ଅଧ୍ୟାପକ, ଆଦର୍ଶବାଦୀ ବ୍ୟକ୍ତି ଓ ମୂଲ୍ୟବୋଧରେ ବିଶ୍ୱାସୀ ଶିକ୍ଷାବିତ୍ ଭାବେ ଆପଣ ଓଡ଼ିଶାରେ ସୁପରିଚିତ । ଅଧ୍ୟାପନା ବ୍ୟତୀତ ମାନବିକତା ଓ ମାନବିକ ମୂଲ୍ୟବୋଧରେ ଗଭୀର ବିଶ୍ୱାସୀ ହୋଇ ଆପଣ ଅଗଣିତ ଛାତ୍ର,ଛାତ୍ରୀଙ୍କୁ ପ୍ରଭାବିତ କରିଛନ୍ତି । ଜୀବନ ପ୍ରତି ସର୍ବଦା ଏକ ସକାରାତ୍ମକ ଦୃଷ୍ଟିଭଙ୍ଗୀ ପୋଷଣ କରି ବାଟ ଚାଲିଛନ୍ତି । ଜୀବନସାରା ଜଣେ ଜ୍ଞାନ-ପିପାସୁ ହୋଇ ଅନେକ କିଛି ଅଧ୍ୟୟନ କରିଛନ୍ତି । ଅଧକ୍ଷଭାବେ କାର୍ଯ୍ୟରତ ଥିବା ବେଳେ ଆପଣ ଯେଉଁ ନିଷ୍ଠା, ସାଧୁତା ଓ କର୍ତ୍ତବ୍ୟନିଷ୍ଠା ପ୍ରଦର୍ଶନ କରିଛନ୍ତି ତାହା ଓଡ଼ିଶାରେ ଆପଣଙ୍କ ଛାତ୍ର, ଛାତ୍ରୀ, ସହକର୍ମୀ ଓ ପ୍ରଶାସନିକ ଲୋକଙ୍କ ସ୍ମୃତିରେ ଅମଳିନ ରହିଛି ।

ଆପଣ ୧୯୯୧ ମସିହାରୁ ଅବସର ନେଇ ବିଭିନ୍ନ ଲେଖା ମାଧ୍ୟମରେ ଓଡ଼ିଶାରେ ଭଚଣିଶାକୁ ବିଭିନ୍ନ ଦିଗ୍‌ଦର୍ଶନ ଦେଉଛନ୍ତି । ଆପଣଙ୍କ ବିଶ୍ଳେଷଣାତ୍ମକ ଅନୁଶୀଳନ ଓ ଗଭୀର ଅନ୍ତର୍ଦୃଷ୍ଟି ଆପଣଙ୍କ ପ୍ରବନ୍ଧ ମାନଙ୍କରେ ସ୍ପଷ୍ଟ ପ୍ରତୀୟମାନ ହୁଏ । ଆପଣଙ୍କର ରଚିତ ପ୍ରବନ୍ଧ ସଂକଳନ "ଶିକ୍ଷା, ଦର୍ଶନ ଓ ସମାଜଚେତନା" ତଥା "ନୂତନ ଆହ୍ୱାନ" ଆପଣଙ୍କ ବୌଦ୍ଧିକ ଉତ୍କର୍ଷର ସ୍ୱାକ୍ଷର ବହନ କରେ । ଆପଣଙ୍କର ଆତ୍ମଜୀବନୀ "ମନେ ପଡେ" ତଥା କବିତା ସଂକଳନ "ବୈକୁଣ୍ଠ ସମାନ ଆହା ଅଟେ ସେହି ଘର" ଆପଣଙ୍କ ସାରସ୍ୱତ ପ୍ରତିଭାର ପରିଚୟ ଦିଏ ।

ଦର୍ଶନବିଭାଗ ଦ୍ୱାରା ଆୟୋଜିତ ସୋପାନ "ଉତ୍ତମ ଜୀବନର ଦର୍ଶନ" (Philosophy of Good Life) ପ୍ରକୃତରେ ଆପଣଙ୍କ ପାଇଁ ଯଥାର୍ଥରେ ପ୍ରଯୁଜ୍ୟ । ଆପଣ ହିଁ ଏକ ଉତ୍ତମ ଜୀବନ ବଞ୍ଚିଥିବା ଜଣେ ଯଶସ୍ୱୀ ଅଧ୍ୟାପକ । ବିଜେବି ମହାବିଦ୍ୟାଳୟର ଦର୍ଶନ ବିଭାଗ ଆପଣଙ୍କୁ ସମ୍ବର୍ଦ୍ଧିତ କରିବା ଅବସରରେ ଆପଣଙ୍କର ସୁଦୀର୍ଘ ନିରାମୟ ଜୀବନ କାମନା କରୁଛି ।

ବିଭାଗୀୟ ମୁଖ୍ୟ
ଦର୍ଶନ ବିଭାଗ

୪. ଭୁବନେଶ୍ୱର ବି.ଜେ.ବି ସ୍ୱୟଂଶାସିତ ମହାବିଦ୍ୟାଳୟର ଦର୍ଶନ ବିଭାଗ ତରଫରୁ ଶ୍ରୀଯୁକ୍ତ ଦାସଙ୍କୁ ମାନପତ୍ର



INSTITUTE OF MANAGEMENT BHUBANESWAR

FELICITATION
TO
PROF. GANESWAR DAS

Retired Principal
29, Forest Park, Bhubaneswar

Revered Sir,

The Chairman, Director, Members of Governing Council, Members of Faculty Council and Students of the IMB deemed it a great privilege to extend a heartfelt felicitation to you for your life time dedication and contribution for the cause of education of the state. Your valuable guidance through the articles published in various dailies, magazines and journals will always remain a source of inspiration to the students and teachers for all time to come. Your excellence as a teacher remains an ideal before the teaching community. Your large number of students moving through various corners of the world have preserved with care all that you have taught them. Your published books will always remain as monumental work to inspire the minds, young and old.

Every branch of study takes its root in Philosophy and hence you as a Philosopher will be the source of guidance to us, the students and teachers of Management too. Your sincere labour in giving an ideal shape to two important colleges of the state – B. J. B. College, Bhubaneswar and Government College, Rourkela has proved your excellence as an administrator.

We are sure, sir, you and your work will always remain a perennial source of inspiration to students for all time to come. On this day of the convocation of this institution we feel honour in felicitating an educationist of your caliber. May God allow you vigour and strength with inner peace of mind to continue your noble work.

Chairman

Director

୫. ଭୁବନେଶ୍ୱର ତତ୍କାଳୀନ Institute of Management ତରଫରୁ ସଂବର୍ଦ୍ଧନା ଓ ମାନପତ୍ର ପ୍ରଦାନ



ପ୍ରଫେସର ଶ୍ରୀ ଗଣେଶ୍ୱର ଦାସ,

ସହୃଦୟେଷୁ——

ବିଦାୟ ସଂବର୍ଦ୍ଧନା

ମହାଶୟ,

[illegible]

[illegible]

[illegible]

ରାଉରକେଲା-୪

[illegible]

ସଭାପତି

ସଂପାଦକ

ଶିକ୍ଷକ ପରିଷଦ, ରାଉରକେଲା

ସରକାରୀ ମହାବିଦ୍ୟାଳୟ

୬. ରାଉରକେଲା ସରକାରୀ ମହାବିଦ୍ୟାଳୟ ଶିକ୍ଷକ ପରିଷଦ ତରଫରୁ ବିଦାୟ ସଂବର୍ଦ୍ଧନା

# ON THE EVE OF THE SUPERANNUATION OF
# Prof. Ganeswar Das

To Prof. Ganeswar Das
Principal. Govt. College, Rourkela.

Sir,

The clouds of gloom and desperation assail the innermost recesses of our hearts at this sad moment of the department and the college when we are biding farewell to you. Sir, You have been a perennial source of inspiration to all of us for the last - seven years (1984-1991) of your tenure in this college. Your profound devotion to learning and deep love for the teachers and unfailing care for the students will remain forever unsurpassed. What indefatigable energy in such a seemingly frail frame when matters of student welfare is concerned !! What unparalleled moral courage to fight the cause of truth and justice! What sense of integrity in a world where values are being relegated to the background. In this world of sick hurry and divided aims where everyone runs in frenzied madness after pelf and power your nobility of aim, lenacity of purpose, geniality of soul and strong moral and charater will serve as a beacon light to one and all. The agonized world today is in the dire need of these services of magnanimous souls like you. This accounts for the partial joy that we feel at letting you go to serve the cause of the sorrowing humanity. At this bereaved moment of the department we pray to the Almighty that your future path be strewn with fragrant flowers of peace and happiness.

Students & Staff
Members of the P.G. Dept. of English
Govt. College, Rourkela.

31st July, 1991.

୭. ରାଉରକେଲା ସରକାରୀ ମହାବିଦ୍ୟାଳୟର Post Graduate English Deptt. ତରଫରୁ ଅଧ୍ୟକ୍ଷ ଶ୍ରୀଯୁକ୍ତ ଦାସଙ୍କର ଅବସର ଗ୍ରହଣ ଉପଲକ୍ଷେ ମାନପତ୍ର।

To

Prof. G. Das, Principal Government college Rourkela on the occasion of his superannuation.

Honoured Sir,

It was my good fortune to be linked with you as a colleague through seven years of sublime and unclouded friendship. I came to admire your human grandeur to an ever growing degree. your strength, your purity of will, your austerity toward yourself, your objectivity, your incorruptible judgment ——— all these were of a kind seldom found joined in a single individual. You felt yourself at every moment to be a servant of society, and your profound modesty never left any room for complacency. A man of wisdom and humility, armed with resolve and inflexible consistency, you devoted all your strength to the uplifting of this college and the betterment of its lot.

With your kind permission, Sir I quote the memorable words of Albert Einstein in honour of Gandhiji with a little modification — Generations to come, it may be, will scarce believe that such a one as you ever in flesh and blood adorned the seat of the principal of this college.

With unfathomable regards.

Sarat Kumar Sahu
Senior Lecturer
Deptt. of Political Science
Govt. College, Rourkela.

୮. ଶ୍ରୀଯୁକ୍ତ ଦାସଙ୍କର ଅବସର ନେବା ସମୟରେ ରାଉରକେଲା ସରକାରୀ ମହାବିଦ୍ୟାଳୟର ଅଧ୍ୟାପକ ଶରତ କୁମାର ସାହୁଙ୍କର ଚିଠି।

# ଚିଠି ଓ ପ୍ରବନ୍ଧ ଜରିଆରେ କେତେକ
# ବିଶିଷ୍ଟ ବନ୍ଧୁଙ୍କ ସହିତ ସାର୍‌ଙ୍କର ସମ୍ପର୍କ

୧. ପ୍ରଫେସର ଡକ୍ଟର ଜୀତେନ୍ଦ୍ର ନାଥ ମହାନ୍ତି
୨. ସୁପ୍ରିମ୍‌କୋର୍ଟର ପୂର୍ବତନ ପ୍ରଧାନ ବିଚାରପତି ଗୋପାଳ ବଲ୍ଲଭ ପଟ୍ଟନାୟକ
୩. ପଦ୍ମଶ୍ରୀ ଡକ୍ଟର ଜୟନ୍ତ ମହାପାତ୍ର
୪. ପଦ୍ମଭୂଷଣ ଡକ୍ଟର ସୀତାକାନ୍ତ ମହାପାତ୍ର
୫. ପ୍ରଫେସର ଡକ୍ଟର ପ୍ରଶାନ୍ତ କୁମାର ପଟ୍ଟନାୟକ
୬. ଅବସରପ୍ରାପ୍ତ ଆଇ.ଏ.ଏସ୍. ଜଗନ୍ନାଥ ପ୍ରସାଦ ଦାସ
୭. ପ୍ରଫେସର ଡକ୍ଟର ଗୌର କିଶୋର ଦାସ
୮. ପୂର୍ବତନ ଆକାଉଣ୍ଟାଣ୍ଟ ଜେନେରାଲ ଶ୍ରୀ ହରପ୍ରସାଦ ଦାସ
୯. ପ୍ରଫେସର ହୃଦାନନ୍ଦ ରାୟ
୧୦. ପ୍ରଫେସର ଡକ୍ଟର ଗୌରାଙ୍ଗ ଚରଣ ନାୟକ
୧୧. ଇଞ୍ଜିନିୟର ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ
୧୨. ପ୍ରଫେସର ଡକ୍ଟର ବିଜୟାନନ୍ଦ କର
୧୩. ଦାଶ୍ ବେନ୍‌ହୁର
୧୪. ଅଧାପକ ପ୍ରଫୁଲ ଚନ୍ଦ୍ର ମିଶ୍ର
୧୫. ଅଧାପକ ଡକ୍ଟର ସୁକାନ୍ତ ଚନ୍ଦ୍ର ସ୍ୱାଇଁ
୧୬. ଡକ୍ଟର ରବିନାରାୟଣ ମହାନ୍ତି

# ପ୍ରଫେସର ଡକ୍ଟର ଜୀତେନ୍ଦ୍ର ନାଥ ମହାନ୍ତି

ପ୍ରଫେସର ଜୀତେନ୍ଦ୍ର ନାଥ ମହାନ୍ତି ଜଣେ ବିଶ୍ୱବିଖ୍ୟାତ ଦାର୍ଶନିକ । ତାଙ୍କର ଉଚ୍ଚକୋଟିର ଗବେଷଣା ପୃଥିବୀର କୋଣେ କୋଣେ ଦାର୍ଶନିକ ମାନଙ୍କ ଦ୍ୱାରା ସମ୍ମାନିତ । ବରେଣ୍ୟ ପ୍ରଫେସର ମହାନ୍ତିଙ୍କର ପ୍ରଫେସର ଗଣେଶ୍ୱର ଦାସଙ୍କ ନିକଟକୁ ପ୍ରେରିତ ଚିଠିରୁ ତାଙ୍କର ଏ ପରିଣତ ବୟସରେ ମଧ ଦର୍ଶନ ପୁସ୍ତକ ଲେଖିବା କାର୍ଯ୍ୟରେ ସେ କିପରି ବ୍ୟସ୍ତ ଅଛନ୍ତି ଜଣାପଡେ । ଗଣେଶ୍ୱର ସାର୍ ତାଙ୍କର "ଶିକ୍ଷା ଦର୍ଶନ ଓ ସମାଜ ଚେତନା" ପୁସ୍ତକରେ ପ୍ରଫେସର ମହାନ୍ତିଙ୍କ ଶିକ୍ଷା ଓ ଗବେଷଣା ବିଷୟରେ ଯାହା ଲେଖିଛନ୍ତି ତାହାର ନକଲ ନିମ୍ନରେ ଉଲ୍ଲେଖ କରୁଅଛି ।

- ସମ୍ପାଦକ

## Jitendra Nath Mohanty:

Professor J.N. Mohanty was a very distinguished student (a topper) at Ravenshaw College during 1943-45 and after that he went to Presidency College, Calcutta. He immediately drew attention of the academia, because of his ingenious incisiveness. He had good Sanskrit background and had the privilege of studying Sankara Advaita with Yogendranath Tarkavedantatirtha. He went to Germany (Gottingen), studied there first Mathematics, Vedic Sanskrit and then Philosophy, being associated with Husserl and Heidegger. His research output was brought out in a book on Nicolai Hartmann and A.N. Whitehead (1957) which, in due course, has brought him international recognition. He is now a leading authority on Husserl's phenomenology.

After his return from Germany, he joined Vinoba on his padayatra across India. This amply speaks of the practical human aspect of his personality, besides his glorious theoretical academic pursuit. He came back to Calcutta in 1955 and held post of Professor of Philosophy at Calcutta University till 1970 and since then he moved to America and settled there as a distinguished Professor in the Universities of Oklahoma, Emory and Temple at Philadelphia. His major publications are of varied dimensions. Some of those are Edmund Husserl's Theory of Meaning (1964), Phenemenology and Ontology (1970), The Concept of Intentionality (1972), Gangesa's Theory of Truth (1966), Reason and Tradition in India Thought (1992), Classical Indian Philosophy (2000), Husserl and Frege (1982), The Possibility of Transcedental Philosophy (1985). Most of these publications came out from Germany, England and America, besides India.

Recently Indian council of Philosophical Research (ICPR) was privileged to have the opportunity of conferring the Lifetime Achievement Award on Profession J.N. Mohanty. I am tempted to quote here few lines from the address presented to him while offering the Award.

"His autobiography, appropriately titled 'Between Two Worlds: East and West', stands as a glowing testimony to his penetrating and inightful analysis of philosophical views and concepts."

"An exceptionally gifted exponent of the very difficult philosophies of Edmund Husserl as well as of Advaita Vedanta and Navya Nyaya, his journey through philosophy is a briliant example of a pilgrimage of a philosopher who saw the rise and decline of Logical Positivism and also the rehabilitation of metaphysics.





TEMPLE UNIVERSITY
A Commonwealth University

College of Liberal Arts
Philosophy Department

Humanities Building 022-32
Philadelphia, Pennsylvania 19122

ଜୁନ୍ ୧୬, ୨୦୦୬

ଗଣେଶ୍ୱର,

ସ୍ନେହଭାଜନେଷୁ,

ତୁମର ୨ଟି ବହି ଓ ଚିଠିଟିଏ ରାଜେନ୍ଦ୍ର ଦାସଙ୍କଠାରୁ ଜର୍ମାନୀରୁ ପାଇ ଅତ୍ୟନ୍ତ ଆନନ୍ଦିତ ହେଲି । ପଢିବାର ଶକ୍ତି କମିଗଲାଣି ଆଖି ଖରାପ ଯୋଗୁ । ତଥାପି "ମନେ ପଡ଼େ" ବହିଟି ପଢିନେଲି । ଖୁବ୍ ଆନନ୍ଦ ମିଳିଲା । ତୁମମାନଙ୍କୁ ପିଲାଦିନେ ଦେଖିଥିଲି । ତୁମ ପରିବାରରେ ତୁମର ବୋଉ ଓ ଭଉଣୀ 'ନିମି' ମୋର ସବୁଠାରୁ ପ୍ରିୟ ଥିଲେ । ବୋଉ ତ ନାହାନ୍ତି । ନିମିଙ୍କର ଯଦି ଗାଁ କଥା ମନେ ଥାଏ, ତାଙ୍କୁ ମୋର ସ୍ନେହ ଜଣାଇଦେବ । ମୋ ବୋଉଠାରୁ ତାଙ୍କ ଖବର ପାଉଥିଲି । ବୋଉ ଚାଲିଗଲା ପରେ ଖବରର ସବୁ ରାସ୍ତା ବନ୍ଦ ।

ଓଡ଼ିଶାକୁ ମୁଁ ବରାବର ଯାଏ, କିନ୍ତୁ ଗାଁରେ ରହେ । ସହରର ସରକାରୀ ଚାକିରୀ କରୁଥିବା ସମାଜକୁ ମୁଁ ଚିହ୍ନେନାହିଁ । ମନମୋହନ ଚୌଧୁରୀ ଚାଲିଗଲା ପରେ ଯାହା ସାମାନ୍ୟ ବନ୍ଧନ ଥିଲା କଟକ ସାଙ୍ଗରେ ତାହା ମଧ ଗଲା । କିନ୍ତୁ ସ୍ଥାନ ଗୁଡିକ ରହିଛି, ନଈକୂଳ, ବାଖରାବାଦ ଇତ୍ୟାଦି । ପିଲାଦିନର ସ୍ମୃତି ବିଜଡିତ ।

ମୁଁ ଏଇ ମାସରୁ ପୁରା ଅବସର ନେଲି । ପଢିବା ଶକ୍ତି ଚାଲିଗଲାରୁ ଲେଖିବା ଛଡା ଆଉ କୌଣସି କାମ ନାହିଁ । ଦୁଇଖଣ୍ଡରେ ଗୋଟିଏ ବହି ୧୫୦୦ ପୃଷ୍ଠାର Yale University ଛପାଉଛି । ଦିଲ୍ଲୀରୁ Oxford ଗୋଟିଏ ରଚନା ସଂଗ୍ରହ ବାହାର କରୁଛି । ମୋର ପ୍ରିୟ ଛାତ୍ରୀ ତାରା ଚଟ୍ଟୋପାଧ୍ୟାୟଙ୍କର ସମ୍ପାଦନାରେ । ଏହା ପରେ ବେଦାନ୍ତ ଉପରେ ବିଶେଷତଃ ପଦ୍ମପାଦଙ୍କର ବିବରଣ ପ୍ରସ୍ଥାନ ଅନୁଯାୟୀ - ଗୋଟିଏ ବହି ବାହାରିବ । 'ବିବରଣ'ର ଇଂରାଜୀ ଅନୁବାଦ ମୋର ଛାତ୍ରୀ କରିସାରିଛନ୍ତି ।

ତୁମର ଦର୍ଶନପ୍ରେମ ମୋତେ ଆନନ୍ଦ ଦେଇଛି । 'ଅପା'କୁ ମୋର ସ୍ନେହ ଦେବ । ତମ ସ୍ମୃତି କଥାରୁ ଜାଣିଲି ତୁମର ସ୍ତ୍ରୀ ପାରେଶ୍ୱର ବାବୁଙ୍କର ଝିଅ, ମୁଁ ତାଙ୍କ ବିବାହରେ ଉପସ୍ଥିତ ଥିଲି । ବାଖରାବାଦରେ ରହି ପଢୁଥିଲି, ମୋ ବୋଉ ଆସି ତାଙ୍କ ଘରେ ରହିଥିଲା । ମୋର ନାତୁଣୀ ନାଁ ମଧ 'ପଦ୍ମିନୀ' ।

ତୁମର ସହଲେଖକ ହୃଦାନନ୍ଦ ରାୟଙ୍କୁ ସ୍ନେହ ଓ ଶୁଭେଚ୍ଛା ଜଣାଉଛି । ପରିଚୟ ହୋଇନାହିଁ । କିନ୍ତୁ ପ୍ରଶଂସା ଶୁଣିଛି ।

ଇତି

ଜିତେନ୍ଦ୍ର

ଜିତେନ୍ଦ୍ର

## ଅବସରପ୍ରାପ୍ତ ସୁପ୍ରିମକୋର୍ଟ ଚିଫ୍‌ଜଷ୍ଟିସ୍ ଗୋପାଳ ବଲ୍ଲଭ ପଟ୍ଟନାୟକ

ସୁପ୍ରିମକୋର୍ଟର ଚିଫ୍‌ଜଷ୍ଟିସ୍ ପଦରେ ରହିବାରେ ପ୍ରଥମ ଓଡ଼ିଆ ଥିଲେ ୰ ଜଷ୍ଟିସ୍ ରଙ୍ଗନାଥ ମିଶ୍ର । ତାପରେ ଏ ସୌଭାଗ୍ୟପୂର୍ଣ୍ଣ ଦାୟିତ୍ୱ ମିଳିଥିଲା ଜଷ୍ଟିସ୍ ଗୋପାଳ ବଲ୍ଲଭ ପଟ୍ଟନାୟକଙ୍କୁ । ସେ ଗଣେଶ୍ୱର ସାର୍‌ଙ୍କର ନିକଟ ସଂପର୍କୀୟ ବନ୍ଧୁ । ସାର୍‌ଙ୍କ ଲିଖିତ 'ମନେପଡେ' ଆତ୍ମଜୀବନୀ ପଢି ଆନନ୍ଦ ଲାଭ କରି ସେ ସାର୍‌ଙ୍କ ନିକଟକୁ ଯେଉଁ ଚିଠିଟିଏ ଦେଇଥିଲେ ତାହାର ନକଲ ନିମ୍ନରେ ଦିଆଗଲା ।

- ସମ୍ପାଦକ

**Justice G.B. Patnaik**
Former Chief Justice of India

Delhi
26.05.2007

Respected Ganeswar Babu,

ଆଜି ଆପଣଙ୍କର ଲେଖା 'ମନେପଡ଼େ'ର କିଛି ଅଂଶ ଫଟୋକପି କରି ଜର୍ମାନିରୁ ରାଜେନ୍ଦ୍ର ଦାସଙ୍କ ଠାରୁ ପାଇ ପଢି, ବହୁତ ଭଲ ଲାଗିଲା - ମୁଁ ଜାଣିନଥିଲି ଆପଣ ଏତେ ଭଲ ଲେଖନ୍ତି ବୋଲି - ମୁଁ ହେଉଛି ସ୍ୱର୍ଗତ ରାସବିହାରି ପଟ୍ଟନାୟକଙ୍କର ପୁଅ - ବାପା, ଆପଣଙ୍କ ବାପାଙ୍କ ଅଧିନରେ କାମ କରୁଥିଲେ ଓ ସରକାରି ଚାକିରିରୁ ଅବସର ନେବାପରେ କାଫଲା ରେବା କଲୋନୀରେ ଘର କରି ରହୁଥିଲେ - ଆପଣଙ୍କ ବୋଉ ଅନେକ ଥର ଆମ କାଫଲା ଘରକୁ ଆସିଛନ୍ତି - ଆପଣଙ୍କର ବଡଭାଇ ବିଶେଶ୍ୱର ବାବୁଙ୍କ ସହିତ ପ୍ରାୟ ଦେଖାହୁଏ। ଆପଣଙ୍କର ଲେଖାଟି ପଢି ମୋର ମଧ୍ୟ ପିଲାଦିନର ଅନେକ ସ୍ମୃତି ଜାଗିଉଠିଲା - ମୁଁ ମଝିରେ ମଝିରେ ଓଡ଼ିଶା ଯାଏ ନରୋତ୍ତମ ଦାସ (କସ୍ତୁରୀର ସ୍ୱାମୀ) ସହିତ ଦେଖା ହୁଏ - ସେ ମୋର ସମସାମୟିକ ଓ ବନ୍ଧୁ - ଏଥର ଗଲେ ଆପଣଙ୍କୁ ଦେଖା କରିବି - ଆପଣଙ୍କର ଶଶୁର ବିଜୟ କିଶୋର ରାୟ ମୋର Law College ରେ ପ୍ରଫେସର ଥିଲେ ଓ ତାଙ୍କର ପ୍ରେରଣାରେ ମୁଁ ଓକିଲାତି ଆରମ୍ଭ କରିଥିଲି - ତେଣୁ ଜୀବନରେ ଯାହା ହୋଇପାରିଛି ମୁଁ ସେଥିପାଇଁ ତାଙ୍କଠାରେ କୃତଜ୍ଞ। ଭଗବାନ ଆପଣଙ୍କର ସ୍ୱାସ୍ଥ୍ୟ ଭଲରଖିଥାଆନ୍ତୁ ଓ ଆପଣଙ୍କର କଲମରୁ ଲେଖା ବାହାରୁ, ଏହା ହିଁ ମୋର ପ୍ରାର୍ଥନା।

ପ୍ରଣାମ ସହ ରହିଲି
ଇତି ଗୋପାଳ

## ପଦ୍ମଶ୍ରୀ ଡକ୍ଟର ଜୟନ୍ତ ମହାପାତ୍ର

ପଦ୍ମଶ୍ରୀ ଡକ୍ଟର ଜୟନ୍ତ ମହାପାତ୍ର ତାଙ୍କର ଉଚ୍ଚକୋଟୀର ଇଂରାଜୀ କବିତା ପାଇଁ ସାରା ପୃଥିବୀରେ ପରିଚିତ । ପରେ ପରେ ଓଡ଼ିଆ କବିତା ଲେଖିବାକୁ ଯାଇ କବିତାର ଏକ ନୂତନ ଚିତ୍ର ପ୍ରଦାନ କରିପାରିଛନ୍ତି । ଓଡ଼ିଆରେ ଲିଖିତ ତାଙ୍କର ଆତ୍ମଜୀବନୀ "ଭୋର ମୋତିର କାନଫୁଲ" ଏବଂ "ପାହିନି ରାତି" ଗତାନୁଗତିକ ଆତ୍ମଜୀବନୀ ଠାରୁ ସମ୍ପୂର୍ଣ୍ଣ ଭାବରେ ଭିନ୍ନ । ଆତ୍ମଜୀବନୀ ପଛକୁ ଦୁଇଜଣ ବନ୍ଧୁ ଅମରେଶ ପଟ୍ଟନାୟକ ଏବଂ ପୂର୍ବତନ କୁଳପତି ପ୍ରଫେସର ଡକ୍ଟର ଗୌରକିଶୋର ଦାସ ଯାହା ସବୁ ଲେଖିଛନ୍ତି ସେଥିରୁ ଜୟନ୍ତ ମହାପାତ୍ର ପୃଥିବୀରେ ସାହିତ୍ୟ କ୍ଷେତ୍ରରେ କେଉଁ ସ୍ଥାନ ଅଧିକାର କରିଛନ୍ତି ଜାଣିହେବ । ସାଆର୍କ (ଦକ୍ଷିଣ ଏସୀୟ ଆଞ୍ଚଳିକ ସହଯୋଗ ସଂଘ) ୨୦୧୦ ପୁସ୍ତିକା ଭାଷାରେ "ଆଧୁନିକ ଯୁଗର ସବୁଠୁଁ ବଡ ଭାରତୀୟ କବିଙ୍କ ମଧ୍ୟରୁ ଜଣେ ସେ" । ୧୮୯୨ ରୁ ନିୟମିତ ପ୍ରକାଶିତ ସୁବିଖ୍ୟାତ ଆମେରିକୀୟ ପତ୍ରିକା 'ଦ ସିୱାନ ରିଭ୍ୟୁ'ର ୨୦୦୯ର ସବୁଠୁ ବଳି ଭଲ କବିତାର କବି ପୁରସ୍କାର ଲାଭ କରିବାରେ ସେ ଆମ ମାଟିର ପ୍ରଥମ କବି । ପଦ୍ମଶ୍ରୀ, କେନ୍ଦ୍ରୀୟ ସାହିତ୍ୟ ଏକାଡେମୀ, ସାଆର୍କ ସାହିତ୍ୟ ପୁରସ୍କାର ତଥା ବହୁ ଆନ୍ତର୍ଜାତିକ ଓ ଆନ୍ତର୍ଜାତୀୟ ସମ୍ମାନରେ ସମ୍ମାନିତ ସେ ।

ଡକ୍ଟର ମହାପାତ୍ର ଓ ଶ୍ରୀମତୀ ମହାପାତ୍ର ପ୍ରଫେସର ଗଣେଶ୍ୱର ଦାସ ଓ ତାଙ୍କ ପରିବାରଙ୍କ ସହିତ ଅତି ଘନିଷ୍ଠ । ପ୍ରଫେସର ଦାସଙ୍କ ଅଧ୍ୟାପକ ଚାକିରୀ ଆରମ୍ଭରୁ ଉଭୟ ତାଙ୍କୁ ବହୁତ ଭଲପାଇ ଆସିଛନ୍ତି । ଉଭୟଙ୍କ ଭିତରେ ଆଦାନ ପ୍ରଦାନ କରାଯାଇଥିବା ଅନେକ ଚିଠି ଭିତରୁ ମାତ୍ର ଅଳ୍ପ କେତେକ ମତେ ମିଳିଲା ଯାହାକୁ ମୁଁ ଏଇ ପୁସ୍ତକରେ ସ୍ଥାନ ଦେଇଛି । ପ୍ରଫେସର ଦାସ ତାଙ୍କ ଆତ୍ମଜୀବନୀ 'ମନେପଡ଼େ'ର ବିଭିନ୍ନ ସ୍ଥାନରେ ପୂଜ୍ୟ ମହାପାତ୍ରଙ୍କ ବିଷୟ ଉଲ୍ଲେଖ କରିଛନ୍ତି ।

- ସମ୍ପାଦକ

**ଜୟନ୍ତ ମହାପାତ୍ର** **May 22, 2008.**

ସ୍ନେହର ଗନା

ଏତେ ସୁନ୍ଦର ଚିଠିଟି ପାଇ ଭଲ ଲାଗିଲା । କଣ କହିବି । ଏତେ ଚଞ୍ଚଳ ଏତେ କଥା ହୋଇଯାଇପାରେ ବୋଲି ଭାବିନଥିଲି । ଜାଣେନା ସୁଖ ଦୁଃଖ ଭିତରେ କଣ ଫରକ୍ ଥାଏ । ଜାଣେନା ସତ୍ୟ କଣ, ମିଥ୍ୟା କଣ । ଜାଣେନା ଭଲ ପାଇବା ବି କଣ । ଏତିକି ବୋଧେ ଜାଣେ ଯେ ରୁନୁଅପାର ଯତ୍ନ ନେଲି ନାଇଁ ।

ପଦ୍ମିନୀଙ୍କୁ, ତମଙ୍କୁ, ଅନେକ ସ୍ନେହ

ସାର୍

**ଜୟନ୍ତ ମହାପାତ୍ର** **March 20, 2011.**

ସ୍ନେହର ଗନା

ଏମିତି ସୁନ୍ଦର ଚିଠି ଜୀବନରେ ୩/୪ଥର ପାଇଥିବି କି ନାଇଁ, କିନ୍ତୁ ସେଇ ଚିଠି ଗୁଡ଼ିକରୁ ବଞ୍ଚିବା ପାଇଁ ଯାହା ଦରକାର ପାଇଛି । ଭଲ ପାଇବାଠାରୁ କଣ କିଛି ବଡ କଥା ଅଛି ? ହେଲେ ଆଜିକାଲି ଏଇ ଭଲ ପାଇବା ମନରେ ଅନେକ ପ୍ରଶ୍ନ ଆଣିଦିଏ । ଯାହାର ଉତ୍ତର ନଥାଏ, ଆଉ ଥିଲେ ବି କଣ ହେବ ଆମର ? ହଁ ଗନା, ଚିଠିଟି ପାଇଁ ବହୁତ ଖୁସି, ମୋର ଏକା ମନକୁ ଭରି ଦେଲା । ଏକା ମନ କହି ଭୁଲ୍ କହିଲି, ଏକା ତ ମୁଁ ନାଇଁ, ଯେମିତି ଥିଲା ଘରେ ସେମିତି ବି ଅଛି । ମତେ ଏତେ ଶାରିରୀକ କଷ୍ଟ ଭିତରେ ବି ଆଗେଇ ନେଉଛି ଜୀବନ । ଆଉ ମୁଁ ଚାଲିଛି, ଚାଲିବି, ଯେତେଦୂର ପାରିବି । ବୁଢା ମୁଁ ନୁହଁ କାହିଁକି ବୁଢା ହେବି ? ଈଶ୍ୱର ମୋ ମନକୁ ସେମିତି ରଖିଛନ୍ତି, ଆଉ ମୁଁ ଖୁସିହୁଏ ପ୍ରଜାପତିଟି ଦେଖିଲେ, ଝିଅ ଗୋଟିଏ ଦେଖିଲେ - ମୁଁ ଭାବେ ଭୁଲ୍ ନୁହଁ ମୋର ସେଇଟା ।

ଆଉ କ'ଣ ଲେଖିବି ? ବହି ଭଲ ଲାଗିଲା, ମୋ ପାଇଁ କେତେ ବଡ଼ କଥାଟିଏ ? ବାକି ସବୁ 'ସମ୍ମାନ' ବାଜେକଥା । ମୋ ନିଜ କଥାକୁ ଆହୁରି ଭଲ କରି ଲେଖିଥାନ୍ତି । କିନ୍ତୁ ଲେଖିଲି ନାହିଁ । ମତେ ଯଦି କାହାକୁ ଭଲ ଲାଗିଲା, କାହା ହାତ ଧରି

ରହିବାକୁ ଇଚ୍ଛା କଲି, କାହାର କାନ୍ଧରୁ ବ୍ଲାଉଜ୍ ଟିକେ ଖସେଇ ଦେବାକୁ ଇଚ୍ଛା କଲି, ସେଇ ଝିଅର ଇଚ୍ଛାରେ, କଣ ଭୁଲ୍ କଲି ? ଜାଣିନାଇଁ। ଗୁନୁଅପା ତ ମୋ ପାଇଁ ପ୍ରକୃତିଠୁ ଇଶ୍ୱରଙ୍କଠୁ ବଡ ଥିଲା, ଅଛି, ରହିବ। ମୋ ଭାଗ୍ୟ କେତେ ବଡ଼, ନା ?

ମୁଁ କି ମୂର୍ଖ, ଗନା। ମୂର୍ଖ ନହେଇଥିଲେ ଏ ସବୁ କଥା ଲେଖିପାରନ୍ତି ?

ସ୍ନେହ ଶ୍ରଦ୍ଧାରେ, ସାର୍

**ଜୟନ୍ତ ମହାପାତ୍ର** **June 05, 2011,** ଦ୍ୱିପହର

ସ୍ନେହର ଗନା

ହାତ ଟିକେ ଦଗା ଦେଉଛି, ମଣିଷଙ୍କ ପରି। ତେବେ ଭାବିଲି, ଗନାକୁ ଦିଧାଡି ଲେଖିଦିଏ, କିଏ କହିବ କାଲିକୁ ସେ ହାତଟି ଆହୁରି ରାଗି ଯାଇପାରେ। ଗୋଡ ଅଣ୍ଟା ବି ଆହୁରି ଅଭିମାନୀ, କିଛି କରିହେବ ନାଇଁ।

ଚିଠି ଲେଖିବାକୁ କଷ୍ଟ ହେଉନଥିଲେ ଲମ୍ବା ଚିଠିଟି ଲେଖିଥାନ୍ତି। ଜୀବନଟା କିନ୍ତୁ ଓଲଟା। ବୟସ ସଙ୍ଗେ କମ୍ କଥା କହିବାକୁ ଭଲ ଲାଗେ। କବିତାର ତ ରାସ୍ତା ଲମିଥାଏ ନୀରବତାକୁ; କମ୍ ଲେଖୁଛି ମୁଁ, କିନ୍ତୁ ନୀରବତାରେ ପହଞ୍ଚି ପାରୁନାଇଁ।

'ଭୋରମୋତି' ପର କଥା ଯେତେବେଳେ ପାରୁଛି, ଲେଖୁଛି। ମତେ ତ ସମସ୍ତେ ମୋ ମନର ଅନୈତିକ କଥାରୁ ବିଚାର କଲେ। କାହାକୁ ଭଲ ପାଇବା କ'ଣ କାହା ହାତରେ। ପଦୀ ତ ମୋର ଭୋର ହେଇ ସବୁ ସକାଳେ ଆସେ, ରଙ୍ଗହୀନ, ବୟସହୀନ। ପୁଅ ବା ଝିଅ ବି ନୁହଁ। କିନ୍ତୁ ଆସେ। ନୀରବତା ଶିଖେଇବାକୁ।

ତେବେ ଏ ଦ୍ୱିତୀୟ ଲେଖାଟିରେ ଅନେକ ଜିନିଷ ଲେଖୁନାଇଁ। କାହା ମନରେ କଷ୍ଟ ନଦେବା ଭଲ, ନା ? ମୋର ଲେଖା କଥା ଲେଖୁଚି।

ପଢିଲି କବିତା। ଭାବୁଚି ଶହେ ବର୍ଷ କବିତା ଲେଖିବାଠୁ ଗୋଟିଏ ଦିନ ଭଲ ପାଇବାର କୋଳରେ କାଟିଦେଲେ ଭଲ।

**ସାର୍**

ପୁଅ ଭାବିଲା ମୋ ନାଁ ବଡ ଅକ୍ଷରରେ ଛାପିଦେଲେ ବଡ ଙ୍ଗଗସଗରଗ ଗୋଟେ ହେଇଯିବି। କାଗଜ ରହି ରହି ହଳଦିଆ ହେଲାଣି।

**ଜୟନ୍ତ ମହାପାତ୍ର** **June 15, 2011.**

ସ୍ନେହର ଗନା

ତୁମ ସୁନ୍ଦର ଚିଠିର ଜବାବ ଦେଇ ନାହିଁ। କଣ ବା ଲେଖିଥାନ୍ତି ? କିନ୍ତୁ ଏତିକି କହିବି ଯେ ମୁଁ ଭଲ ଅଛି। ଅସୁବିଧା କିଛି ନାଇଁ। ଘର ତ ଖାଲି ଲାଗିବ। ଘର ଯେମିତି ସେମିତି ଅଛି, କାହିଁକି ଘରେ କିଛି ଏପଟ ସେପଟ କରିବି ?

ଥରେ ଟେଲିଫୋନ୍ କରିଥିଲି। ବାଜିଲା, କିନ୍ତୁ କେହି ଉଠେଇଲେ ନାଇଁ। ମତେ ଟେଲିଫୋନ୍ କରିଆସେନା। ଏ ସବୁ ଗୁନୁଅପା କରୁଥିଲା। ସତରେ ମତେ ସେମିତି କିଛି କରି ଆସେନାଇଁ। କରିବା ବି ଆଦୌ ଦରକାର ନଥିଲା।

ଆମ ହାତରେ ତ କୌଣସି କଥା ବାଛିବାର ଶକ୍ତି ନଥାଏ। ମୃତ୍ୟୁର ଦିନ ତ କେବେ ନୁହଁ। ହଁ, ବଞ୍ଚିବା କେମିତି ଆଜି, ସେଇଟି ବାଛି ହେବ। ଆଉ ବାଛୁ ବାଛୁ ସପ୍ନ ସବୁ ଧିରେ ଧିରେ ଆଖି ଆଗରେ ଚାଲି ଯାଆନ୍ତି।

ଘରୁ ବାହାରି ନାଇଁ କେତେ ଦିନ ହବ। ସମସ୍ତେ କହୁଛନ୍ତି: କାହିଁକି ଯାଉନ କୁଆଡେ ? ମତେ କିନ୍ତୁ ଘରେ ଭଲ ଲାଗୁଚି, ଏକଲା ରହିବାକୁ। ଲେଖିବାକୁ ଇଚ୍ଛା ହଉଚି ଯେ ସେମିତି କିଛି ଲେଖିନାଇଁ। ଲେଖିପାରେ। କବିତା ଥିବା ଯାଏ ତ ଈଶ୍ୱର ରହିଥିବେ, ନା ? ଆଉ ବୋଧେ କବିତା ନଥିଲେ ବି ଈଶ୍ୱର ଥିବେ, ଦୁଆର ପରି।

ଦେହର ଯତ୍ନ ନବ। ଏତେ ସୁନ୍ଦର ଚିଠିର ଉତ୍ତରରେ କ'ଣ ଇଆଡୁ ସିଆଡୁ ଲେଖିଗଲି।

ସ୍ନେହରେ, ସାର୍

**Jayanta Mahapatra**

Tinikonia Bagicha, Cuttack-753001 **April 24,2011**

The rain is home, clinging
pitifully to the Orisa countryside.
Orioles turn on their wings of gold
where the sky falls into darker cloud.
Beyond the wood fence grow lotuses
and wild hyacinths of the wetness.
Again, from somewhere,
one calls back the love
of what one hungers to be touched by,
so I can call you by your name - Orissa,
as the wind returns again
for those empty voices it nurtures
in the thick-leafed mangoes and cashews,
and rain's frightened hands
drop the comic book of our history
onto the weathered stones

ସ୍ନେହର ଗନା,

ଲେଖିବି ଲେଖିବି ବୋଲି ପୁଣି ଯୋଉ କଥାକୁ ସେଇ କଥା । ଥରେ ଥରେ କିଛି କରିବାକୁ ଇଚ୍ଛା ହୁଏ ନାହିଁ, ଟେଲିଫୋନ୍ ଆଦୌ ଛୁଇଁବାକୁ ହାତ ଯାଏ ନାହିଁ । ଗାଳି ଦେବ ନାଇଁ । ଡେରି ପାଇଁ । ପୁଣି ଜୀବନ କଥା ଟିକେ ଲେଖିବାକୁ ଆରମ୍ଭ କରିଛି । ଭୋର୍ ମୋତି ସୁଖିଯିବା ପର କଥା । ଅନେକ କଥା ଜାଣି ଜାଣି ଛାଡି ଦେଇଚି, କାରଣ ସତ ବୋଲି ଯାହା ଭାବୁଛି ଲେଖି ପାରିବି ନାଇଁ । ଖାଲି ଏତିକି: ମୋର ଗୋଟିଏ immune setback ଯୋଗୁଁ steroid ଖାଉଚି ପାଞ୍ଚବର୍ଷ ହେବ । ଛାଡି ହେବ ନାଇଁ । ଆଉ steroid ର side effect ବହୁତ । ତେବେ ଦେହକୁ ଧରି ଧରି ଚାଲିଚି । କେମିତି ବାକି ଲେଖାଟିକୁ ଶେଷ କରିବି, ସେଇ କଥା ଅଥୟ କରୁଚି ମତେ । କାଲିକା କଥା କିଏ କହିବ ? ମୋ କାଲିର ଗୋଡ ହାତ ଭଙ୍ଗାରେ ଗନା ।
ରହିଲି ଆଜି ଏତିକିରେ

ଜୟନ୍ତ ସାର୍

ଗଣେଶ୍ୱର ଦାସ

୨୯, ଫରେଷ୍ଟ ପାର୍କ, ଭୁବନେଶ୍ୱର
ଫୋନ୍-୨୫୯୬୨୪୩

ସାର୍

ମୁଁ ବରାବର କହି ଆସିଛି, ସମ୍ମାନ ଦେଉଥିବା ସଂସ୍ଥାମାନେ ଆପଣଙ୍କ ପରି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ କବିଙ୍କୁ ସମ୍ମାନିତ କରିବା ଦ୍ୱାରା ନିଜେ ସମ୍ମାନ ଲାଭ କରୁଛନ୍ତି। ତେଣୁ ଆପଣଙ୍କୁ ସମ୍ମାନ ଦେବା ଲାଗି ସବୁ ସଂସ୍ଥାମାନ ଆଗେଇ ଆସିବେ। ସମ୍ମାନ ପାଇବା ଓ ନପାଇବା ଆପଣଙ୍କ ପାଇଁ କିଛି ଫରକ ନ ଆଣିପାରେ, କିନ୍ତୁ ସଂସ୍ଥା ପାଇଁ ତାହା ବହୁତ କିଛି। ସେଇ ଦୃଷ୍ଟିରୁ ଆପଣଙ୍କୁ ସମ୍ମାନତି କରିବା 'ସାରଳା ସାହିତ୍ୟ ସଂସଦ' ର ଗର୍ବ ଓ ଗୌରବ।

"ଓଡ଼ିଶା ମୋର ସମୁଦ୍ର, ମୋର ଆକାଶ"ରେ ଆପଣଙ୍କର ପ୍ରଶ୍ନୋତ୍ତରମାନ ଯେଉଁ ଭାବନାମାନ ମୋ ମନରେ ସୃଷ୍ଟି କଲେ ଏବଂ ଆପଣଙ୍କୁ ମନ ଭିତରେ ମୁଁ ଯେଉଁ ଉଚ୍ଚତାକୁ ନେଇଗଲି ସେ ଉଚ୍ଚତାର ମାପକାଠି ନାହିଁ। ମୋ ଭାବନାକୁ, ମୋ ଆନନ୍ଦକୁ, ମୋ ଭଲ ପାଇବାକୁ ମୁଁ ସବୁବେଳେ ସେମିତି ଅପହଞ୍ଚ ଉଚ୍ଚତାରେ ରଖିଥାଏ ଯେଉଁଠାକୁ ମୁଁ ନିଜେ ଯାଇ ପାରିବି ନାହିଁ, କିନ୍ତୁ ଆନନ୍ଦ ଲଭିବି।

ସାର୍, ମୁଁ କାହିଁକି ସେମାନଙ୍କର ତଥା କଥିତ ଆଧୁନିକ ସମସ୍ତ ଚେଷ୍ଟା ସତ୍ତ୍ୱେ ବି ବୁଝିପାରେ ନାହିଁ, ଅଥଚ ଆପଣଙ୍କର 'ଘା' କବିତାଟି ଅନ୍ୟ କବିତାମାନଙ୍କ ପରି ମୋ ଭିତରକୁ ପ୍ରବେଶ କରି ପାରିଲା, ଅନ୍ୟ କବିମାନେ କବିତାକୁ ମାଥେମେଟିକ୍ସ୍ ଫିଜିକ୍ସ କରି ଥୋଇ ଦିଅନ୍ତି ଯେମିତିକି ପଢ଼ିଲେ ପାଖ ଛୁଇଁ ହେବ ନାହିଁ।

ସାର୍, ଶାରିରୀକ କଷ୍ଟରେ ଘାଣ୍ଟି ହେଉଛି। ବହୁତ ଆତୁ ବହୁତ ରୋଗ। ଆଜି ଗୋଟାଏ ତ କାଲି ଆଉ ଗୋଟାଏ। ରୋଗମାନଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ ବି ମୋ ଭିତରଟା ଏ ପର୍ଯ୍ୟନ୍ତ ରୋଗଗ୍ରସ୍ତ ହୋଇନାହିଁ ଯେଉଁଥିପାଇଁ କି ଆପଣଙ୍କର କବିତାଟିଏ ପଢ଼ିଲେ ମନର ଆନନ୍ଦକୁ ପ୍ରକାଶ କରିବାକୁ ଇଚ୍ଛା ହୋଇ ପାରୁଛି, ଯେଉଁଥିପାଇଁ କି ଚିଠିଟିଏ ଆପଣଙ୍କ ନିକଟକୁ ଲେଖି ପାରୁଛି ପାଖକୁ ନଯାଇ ପାରିଲେ ମଧ।

ସାର୍, ସତ କହୁଛି, ଏ ତେଲ ଲୁଣ ସଂସାରରେ ମୋ ପରି ଲୋକ ପାଇଁ ଏତେ ବର୍ଷ ବଞ୍ଚିବା ବଡ କଷ୍ଟ ଦାୟକ। ଯେଉଁ ମୃତ୍ୟୁକୁ ଚାହୁଁ ତାକୁ ତ ପାଉନି, ମୋର ସେ ''ଚାହିଁବାର ବି ମୃତ୍ୟୁ ହେଉନି।

ମୁଁ ଜାଣେ, ଆପଣ ଯଦିଓ ଏକାଟିଆ ଏତେ ବଡ ଘରଟାରେ ଅଛନ୍ତି, ଆପଣ କେତେବେଳେ ହେଲେ ଏକାଟିଆ ନଥିବେ। ଆପଣ ଯେଉଁଠି ଥାଆନ୍ତି ଆପଣଙ୍କର ବହି ପଢ଼ା, କବିତା ଲେଖା ଛଡା ନିଜର ଛୋଟ ଦୁନିଆଟିଏ ଗଢ଼ି ନିଅନ୍ତି। ଆପଣଙ୍କୁ ଭଲ ପାଇବା ଲୋକଙ୍କ ସଂଖ୍ୟା କିଛି କମ୍ ନୁହେଁ. ଏବେ ତ ସାରା ପୃଥିବୀ ଜି.ଏମ୍.କଲେଜ୍ ପାଖ ଘର ଅଥବା ବିଜେବି କଲେଜ୍ ପାଲଟି ଯାଇଛି ଆପଣଙ୍କ ପାଇଁ।

ମୁଁ ଆପଣଙ୍କ ପାଖକୁ ଯାଇ ପାରୁନି, ଦୁଃଖ ହେଉଛି ସତ, କିନ୍ତୁ ଆପଣଙ୍କ ଉଚ୍ଚତାକୁ କଳିବାର ଚେଷ୍ଟାରେ କିଛିଟା ଆନନ୍ଦ ଲଭୁଛି।

ଆପଣଙ୍କର 'ଗନା'

ହଁ ସାର୍, 'ଭୋର ମୋତିର କାନଫୁଲ' ମନ ଭିତରେ ଯାହା ପ୍ରଭାବ ପକାଇଲା ସେଇ ପ୍ରଭାବ ହିଁ ମୋ ବାକି ଜୀବନର ସାଥୀ, ତା'ର ପ୍ରତ୍ୟେକଟି ବାକ୍ୟ ମୋର ମନେ ପଡିଯାଏ। ମୁଁ ତ ବିଶେଷ କିଛି ପାଠ ପଢ଼ିନି, ତଥାପି ଯାହା ପଢ଼ିଛି ତାହା ଶୂନ୍ୟପରି ମନେ ହୁଏ 'ଭୋର ମୋତିର କାନଫୁଲ' ପଢ଼ିବା ପରେ।

ଗଣେଶ୍ୱର ଦାସ

୨୯, ଫରେଷ୍ଟ ପାର୍କ, ଭୁବନେଶ୍ୱର
ଫୋନ୍-୨୫୯୬୨୪୩

ସାର୍

ଚିଠି ଓ କବିତା ଠିକ୍ ସମୟରେ ପାଇଛି। ମନେ ହେଲା ଯେମିତି ବହୁତ ଭୋକ ହେଉଥିଲା। କେହି ଦୟା ପରବଶ ହୋଇ ମତେ କିଛି ଖାଦ୍ୟ ଯୋଗାଇ ଦେଲେ। ନାଇଁ ସାର୍, ମୁଁ ଖାଇବାକୁ ଇଚ୍ଛା କରେ ସତ, ତା ଅର୍ଥ ନୁହେଁ ମୋ ଇଚ୍ଛା ଜାଣିବା ମାତ୍ରକେ ଆପଣ ଖାଦ୍ୟ ଯୋଗାଇଦେବେ। କିଛିଦିନ ଉପାସ ରହିବାକୁ ଦେଲେ 'ଭୋକ' ମତେ ମାରିଦେବ ନାହିଁ। 'ଖାଦ୍ୟ ଆସିବ' ଏଇ ଆଶାରେ ବି ବଞ୍ଚି ରହିବାରେ ଆନନ୍ଦ ଅଛି। ଆପଣଙ୍କ ଚିଠିର ପ୍ରତ୍ୟେକଟି ଶବ୍ଦ ଏବଂ କବିତାର ପ୍ରତ୍ୟେକଟି ବାକ୍ୟ ମତେ ବଞ୍ଚିବାର ଖୋରାକି ଯୋଗାଏ। ଡେରିହେଲେ ଅପେକ୍ଷା କରିବାରେ ବି ଗୋଟାଏ ରକମର ଆନନ୍ଦ ମିଳେ।

ଆଶ୍ଚର୍ଯ୍ୟ ଲାଗେ ସାର୍, ସାରା ପୃଥିବୀରେ ଯାହାଙ୍କର ଲେଖାସବୁ ଘୁରି ବୁଲୁଛି ଏବଂ ପୃଥିବୀର ବିଭିନ୍ନ କୋଣରୁ 'ପୁରସ୍କାର', 'ଅଭିନନ୍ଦନ' ସମୁଦ୍ର ଢେଉ ପରି ମାଡି ଆସୁଛି ଯାହାଙ୍କର ପାଦ ସ୍ପର୍ଶ କରିବା ଲାଗି, ସେ ବି ସମୟ ଦେଇପାରୁଛନ୍ତି ମୋ ପରି ମୂର୍ଖ ପାଖକୁ ଚିଠିଟିଏ ଲେଖିବାକୁ। ଏଇ ବୋଧହୁଏ ଯାହାକୁ ଭଗବାନଙ୍କ କରୁଣା କହନ୍ତି।

'ଭୋର ମୋତି ଶୁଖିଯିବା ପର କଥା' ମୁଁ ଶୁଣି ପାରିବି କି ନାହିଁ ଜାଣେ ନା। ମୁଁ ନଥାଏ ପରେ ଅନେକ କାନ ସେ କଥା ଶୁଣିବ। ପ୍ରାର୍ଥନା କରୁଛି ଏତେ ରୋଗ ଭିତରେ ବି ଆପଣଙ୍କୁ ଶକ୍ତି ଦିଅନ୍ତୁ ସେ ଲେଖାଟି ସାରିବା ଲାଗି। Steriod ତ ଛାଡି ହେବ ନାହିଁ। ଯେଉଁ ଭଗବାନ୍ ୫ବର୍ଷ କାଳ ତାରି ଭିତରେ ଚଳାଇ ଆଣିଲେଣି ସେ ନିଶ୍ଚେ ଚଳାଇ ନେବେ ଭୋର ମୋତି ସୁଖିଯିବା କଥା ପୃଥିବୀର ଆଲୋକ ପାଇବା ପର୍ଯ୍ୟନ୍ତ।

ସାର୍, ସବୁ ଭୁଲି ଯାଇପାରେ, କିନ୍ତୁ ମୁଁ କେମିତି ଭୁଲିବି, "କାଲି କା କଥା କିଏ କହିବ ? ମୋ କାଲିର ଗୋଡ ହାତ ଭଙ୍ଗାରେ ଗନା"।

ହଁ ସାର୍, ଆପଣ ତ ଜାଣନ୍ତି ମୁଁ ଲେଖାଲେଖିରେ ମୂର୍ଖ। କବିତା ଲେଖି ଜାଣେନି ତଥାପି ପରିବାର ଭିତରେ ପଦ୍ମିନୀ ଓ ପିଲାମାନଙ୍କର ଜନ୍ମଦିନ, ଆନିଭର୍ସାରୀ ପ୍ରଭୃତିରେ ମନ କଥା ଦି ପଦ ଲେଖି ଉପହାର ଦିଏ। ଗୋଟିଏ student publisher ସେ ସବୁ ଲେଖାକୁ ନେଇ ୬ବର୍ଷ ତଳେ ମୋ ଅନିଚ୍ଛା ସତ୍ତ୍ୱେ ଗୋଟିଏ ବହି ଛାପିଦେଇଥିଲା - "ବୈକୁଣ୍ଠ ସମାନ ଆହା ଅଟେ ସେଇ ଘର"। ବାକି ଲେଖାତକ ନେଇ ଆଉ ଗୋଟିଏ ବହି ଏବେ ଛପାଇଛି। "ସେ ସବୁ ମୋହର ସୁଖ ପସରା"। ନିଜର ମୂର୍ଖାମୀର ପରିଚୟ ଦେବା ପାଇଁ ଲାଜରେ କାହାକୁ ଦେଖାଏ ନି ସେ ବହି। ତଥାପି ଆପଣ ଯେହେତୁ ମୋ ଅନ୍ତର ଭିତରର ଦେବତା ପ୍ରାୟ, ଆପଣଙ୍କ ନିକଟକୁ ପଠାଉଛି।

ହଁ ସାର୍, ବେଶ୍ କିଛିବର୍ଷତଳେ ଗୋଟିଏ ଛୋଟ ପିଲା ତା ନିଜର sex activity ମୋ ଆଗରେ କହିବାକୁ ବାଧ ହୋଇଥିଲା କାରଣ ମୁଁ ତାକୁ ଭଲ ପାଉଥିଲି। ପାଠଶାଠ ପଢିନି ମୋ ଶ୍ୱଶୁରଙ୍କ ମୃତ୍ୟୁ ପରେ ତାକୁ Highcourt ରେ peon ଚାକିରିରେ ରଖିଦେଇଛି। ତାର so-called activity କୁ ମୁଁ ମୋର ଶୃଙ୍ଖଳା ରଙ୍ଗ ତୂଳୀରେ ସଜାଇବାକୁ ଚେଷ୍ଟା କରିଥିଲି। କାହାକୁ ବା କିପରି ଦେଖାଇବି ? ତଥାପି ଆଜି ସେ ଲେଖାଟି ଆପଣଙ୍କ ନିକଟକୁ ପଠାଉଛି। ଆପଣ ଏକା ପଢିବେ ସମୟ ହେଲେ। ଏକା ପଦ୍ମିନୀ ଛଡା କାହାକୁ ଦେଖାଇ ନଥିଲି। କବିତା (ତଥାକଥିତ) ବହି ଦୁଇଟି ପରେ ପରେ ପଠାଇବି। ପ୍ରବନ୍ଧ ବହି ସବୁ ଲେଖିଛି ସତ, କିନ୍ତୁ ମୋ ନିଜକୁ ଭଲ ଲାଗେନି।

ସମୟ, ସୁବିଧା ଦେଖି ଚିଠି ଦେବେ, ଡେରି ହେଲେ ମୋର anxiety ବଢିବା ଜନିତ ସୁଖ ମିଳିବ।

ପ୍ରଣାମ ସହ ରହିଲି- ଇତି ଗନା

ଗଣେଶ୍ୱର ଦାସ

୨୯, ଫରେଷ୍ଟ ପାର୍କ, ଭୁବନେଶ୍ୱର
ଫୋନ୍-୨୫୯୬୨୪୩

ସାର୍

ଆପଣଙ୍କ ଚିଠିଟି ପାଇ ଆଖିରେ ଆଖିରେ ଲୁହ ଭରି ହୋଇଗଲା। ଦେହଟା ଟିକେ ଭଲ ଥିଲେ ସାଙ୍ଗେ ସାଙ୍ଗେ ପହଞ୍ଚିଥାନ୍ତି ଆପଣଙ୍କ ପାଖରେ ଯଦିଓ କିଛି କଥା କହି ପାରିନଥାନ୍ତି। ମନ ଭିତର କଥା କ'ଣ ସହଜରେ ପ୍ରକାଶ ପାଇପାରେ ?

ଆପଣ ଲେଖିଛନ୍ତି ଗୁନୁଅପାଙ୍କର ଯତ୍ନ ନେଇ ପାରିଲେ ନାହିଁ। ଯଦି ଯତ୍ନ ନେଇ ପାରିନାହାନ୍ତି କିପରି ମନ ଭିତରେ କଥା ଲେଖି ପାରିଲେ, "ଜାଣେ ନା ସୁଖ ଦୁଃଖ ଭିତରେ କ'ଣ ଫରକ ଥାଏ। ଜାଣେ ନା ସତ୍ୟ କ'ଣ, ମିଥ୍ୟା କ'ଣ। ଜାଣେନା ଭଲ ପାଇବା କ'ଣ"। ଏହା ହିଁ ସତ୍ୟ। ଏହା ହିଁ ଗୁନୁଅପାଙ୍କର ନେଇଥିବା ଯତ୍ନର ପୁରସ୍କାର। ଆନ୍ତର୍ଜାତିକ ସ୍ତରରେ ଯେଉଁ ସମ୍ମାନ ପାଇଛନ୍ତି ତା'ଠାରୁ ଅଧିକ ମୂଲ୍ୟବାନ୍ ହେଉଛି ଏଇ ପୁରସ୍କାର।

ସତ କହୁଛି ସାର୍, ମୁଁ ଆପଣଙ୍କ ପାଖକୁ ଯାଏ ନଯାଏ, ଯେତେବେଳେ ଭାବି ଦିଏ କଟକରେ ଆପଣ ଓ ଗୁନୁଅପା ଅଛନ୍ତି, ଏତିକି ମୋ ମନ ଭିତରେ ଗୋଟାଏ ରକମ ଆଶ୍ୱାସନା ଆଣୁଥିଲା। ନହେଲେ କଟକରେ ଆଗରୁ ପୁରି ରହିଥିବା ଆନ୍ତରିକତା, ଭାବର ଉଚ୍ଛ୍ୱାସ, ପ୍ରାଣର ଉନ୍ମାଦନା ସବୁ କମି କମି ଶୂନ୍ୟ ପାଖରେ ପହଞ୍ଚି ଆସୁଥିଲା। ଜୀବନ ସରି ଆସିଲା ବେଳକୁ କାଳେ 'କଟକ'ର ସ୍ମୃତି ମତେ ଦୁର୍ବଳ କରି ପକାଇବ ସେଥିଲାଗି ମନରୁ ସେ ସ୍ମୃତି କାଢି ଦେବାକୁ ଚେଷ୍ଟା କରୁଥିଲି। ଆପଣ ତ ଜାଣନ୍ତି ସାର୍, ଟଙ୍କା ପଇସା ସମ୍ପତି - ଏ ସବୁ ପ୍ରତି ମୋର ଟିକେ ବି ଲୋଭ ନଥିଲା। ତେବେ ବି ଆମ ଘରଥିଲା, ଶ୍ୱଶୁରଙ୍କର ଘର ଥିଲା, ବନ୍ଧୁବାନ୍ଧବ ବହୁତ ଥିଲେ। କିନ୍ତୁ ଧୀରେ ଧୀରେ ସବୁ ଚାଲିଗଲା। ଖାଲି ଭାବିନିଏ ଆପଣ ଓ ଗୁନୁଅପା ଅଛନ୍ତି। 'କଟକ' ଅଛି।

ପ୍ରଥମେ ଗୁନୁ ଅପାଙ୍କୁ କଲେଜ୍‌ରେ ଦେଖିଲି। ପରେ ପରେ ଯୁବକ ସୁଲଭ ଅଧ୍ୟାପକ ଆପଣଙ୍କୁ ଦେଖିଲି। ତାପରେ... ସମ୍ବଲପୁର.... ଭୁବନେଶ୍ୱର ପ୍ରଭୃତିରେ ଚାକିରି ଜୀବନ। ଆପଣ ଦୁହିଁଙ୍କ ପ୍ରଭାବ ବିସ୍ତାରି ହୋଇ ଚାଲିଥାଏ। ଆପଣ ଦୁହିଁଙ୍କୁ ଜାଣିବା ଦିନଠାରୁ ଏ ପର୍ଯ୍ୟନ୍ତ ହେଉଛି ଏକ ଲମ୍ବା କାହାଣୀ ଯାହାର ବିଷୟବସ୍ତୁକୁ ମୁଁ ସଯତ୍ନେ ସାଇତି ରଖିଛି।

ସାର୍, Walt Whitman ଙ୍କର କେଇଧାଡି କବିତା ପରା ଆପଣଙ୍କର relationship ର ଶୁଭ ଦେଇଛି। ତାଠାରୁ ଅଧିକ ଆଶ୍ୱସନା, ଅଧିକ ସମ୍ପର୍କ କ'ଣ ବା ଆଶା କରି ହେବ ? ମୁଁ ସବୁବେଳେ ସେଇ କବିତା ବାକ୍ୟ ଗୁଡ଼ିକୁ ପଢି ଚାଲିଛି।

I am large,
I contain multitudes
I exist as I am, that is enough
If no other in the world be aware, I sit content
And if each all be aware, I sit content.

ତା ପରେ ଆପଣଙ୍କ 'ralationship' ର ଶେଷ କବିତାର ଶେଷ ୫ଟି ଧାଡି ମନେ ହୁଏ ଗୁନୁ ଅପା କୁଆଡେ ଯାଇନାହାନ୍ତି, ଅଛନ୍ତି ଆପଣଙ୍କ ପାଖରେ। ଆପଣ ସାର୍ ଭାଗ୍ୟବାନ୍। ଭଗବାନ୍ ଆପଣଙ୍କୁ ଏପରି ଶକ୍ତି ଦେଇଛନ୍ତି ଯେଉଁ ଶକ୍ତି ବଳରେ କବିତା ସୃଷ୍ଟି କରି ଆପଣ ଗୁନୁ ଅପାଙ୍କୁ ବଞ୍ଚାଇ ରଖିପାରିବେ। ବାହାର ଜାକଜମକ ପୂର୍ଣ୍ଣ ତାଜମହଲର ଆବଶ୍ୟକତା ନାହିଁ।

ସାର୍, ଆପଣ ଜାଣନ୍ତି, ମୁଁ ମୂର୍ଖ, ଜୀବନରେ କିଛି କରିପାରିଲି ନାହିଁ, ହାରିଗଲି ବହୁତ ଜୋରରେ। ବଞ୍ଚିବାକୁ ନ ଚାହିଁଲେ ବି ମୃତ୍ୟୁ ର ଦୟା ନାହିଁ। ଶାରିରୀକ, ମାନସିକ ଯନ୍ତ୍ରଣାରେ କଲବଲ ହେବା ପାଇଁ ବଞ୍ଚି ରହିଛି। ଜଣକୁ understand କରିବାକୁ କେହି ନଥାନ୍ତି। ଏ materialistic world ରେ ମୋର ସ୍ଥାନ କେଉଁଠି ଜାଣିପାରୁନି। ଭାବୁଛି କବିତା ଲେଖିପାରୁଥିଲେ କବିତା ହିଁ ଏକମାତ୍ର ମତେ ବୁଝି ପାରୁଥାନ୍ତା।

ପାଗଳଙ୍କ ପରି ଏଣୁ ତେଣୁ ଲେଖିଲିଣି। କ୍ଷମା କରିବେ। ବିଙ୍କି ଓ ତା ପିଲାମାନେ ଆସିଥିବେ।

ପ୍ରଣାମ ସହ - ରହିଲି ସାର୍
ସ୍ନେହାଧୀନ ଗନା

ଗଣେଶ୍ୱର ଦାସ

୨୯, ଫରେଷ୍ଟ ପାର୍କ, ଭୁବନେଶ୍ୱର
ଫୋନ୍-୨୫୯୬୨୪୩

ସାର୍

ଜାଣିଶୁଣି 'ସମ୍ମାନନୀୟ' ଅଥବା 'ପୂଜନୀୟେଷୁ' ଇତ୍ୟାଦିକୁ ମନ ଭିତରେ ଲୁଚାଇ ରଖି କେବଳ 'ସାର୍' ବୋଲି ସମ୍ବୋଧନ କରୁଛି । ଦେହର ଅସୁସ୍ଥତା ହେତୁ ଟାଇପ୍ କରୁଛି । ଆଶା ଓ ବିଶ୍ୱାସ କ୍ଷମା କରିବେ । ହାତଲେଖା ଚିଠିର ଆନ୍ତରିକତା ମୁଁ ନଷ୍ଟ ହେବାକୁ ଦେଇନାହିଁ ।

ଆପଣଙ୍କ ସଙ୍ଗେ ଫୋନ୍‌ରେ କଥା ହେବା ପରେ ପରେ ଦେହ ଭଲ ନଲାଗୁଥିଲେ ବି ବାହାରି ପଡିଲି । ସେଆର ଟେମ୍ପୋ ୨ଟା ବଦଳାଇ ପୁରୁଣା ବସ୍‌ଷ୍ଟାଣ୍ଡ ବହି ଦୋକାନରେ ପହଞ୍ଚି ହତାଶ୍ ହୋଇ ପଡିଲି ଯେତେବେଳେ ସେ କହିଲା ବହି ତା ପାଖରେ ନାହିଁ ବୋଲି । ମୁଁ ତାକୁ ଅନୁରୋଧ କଲି କେଉଁଠାରୁ ହେଉ ମଗାଇ ଦେବାଲାଗି । ହଁ ପୂର୍ବରୁ ସେ ମତେ ଫୋନ୍‌ରେ ବହିଟି ଦେବ ବୋଲି କହିଥିଲା । ତେଣୁ ସେ ବାଧ ହୋଇ ଦୋକାନ ଛାଡି ଗଲା ଏବଂ ଅଳ୍ପ ସମୟ ଭିତରେ ମୋ ପାଖରେ ପହଞ୍ଚିଲା "ଭୋର ମୋତିର କାନଫୁଲ" । ବହିର ଗେଟ୍‌ଅପ୍ ଦେଖି କାବା ହୋଇଗଲି, କାରଣ ମୋର ମନେ ହେଲା ଆପଣଙ୍କ ଚେହେରା ଯେମିତି ବହି କଭର ଠିକ୍ ସେହି ଚେହେରା ମୋ ସାମ୍ନାରେ ରଖି ଦେଉଛି । ଆନନ୍ଦ ମନରେ ଘରକୁ ଫେରିଲି । ବାଟଯାକ ଭାବୁଥାଏ କେମିତି ପଢିବି ଓ କେତେବେଳେ ପଢିବି ।

ସାର୍, ବହି ପଢିଚାଲିଲି ପୃଷ୍ଠା ପରେ ପୃଷ୍ଠା । କଳି ପାରିଲି ନାହିଁ ମୁଁ କି ରକମ ବହି ପଢୁଛି । ଇଏତ ଆଦୌ ଆତ୍ମଜୀବନୀ ନୁହେଁ କାରଣ ତଥା କଥିତ ଆତ୍ମଜୀବନୀ ସବୁରେ ଲେଖକର ଗର୍ବ ଓ ବାହାଦୂରୀ ଭର୍ତ୍ତି ହୋଇଥାଏ । ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଥିବା ଆପଣ ନିଜ ଖ୍ୟାତି ବଦଳରେ ନିଜର କେତେ ଦୋଷ ଦୁର୍ବଳତା ବର୍ଣ୍ଣି ଯାଇଛନ୍ତି ବହିଟିରେ । ସତ କହୁଛି ସାର୍ ମୁଁ ଏ ରକମ ଆତ୍ମଜୀବନୀ ପଢିନଥିଲି କି ପଢିବାର ଆଶା ବି ରଖିନାହିଁ ।

ଇଏତ ଗଳ୍ପ ବା ଉପନ୍ୟାସ ନୁହେଁ ଯେଉଁଥିରେ ଚରିତ୍ର ସୃଷ୍ଟି କରାଯାଇଥାଏ । କଳ୍ପନା ତା ନିଜର ମହତ୍ୱ ବିସ୍ତାର କରି ଚାଲିଥାଏ । ସହଜରେ ଲେଖକକୁ ଜାଣି ହୁଏ ନାହିଁ ।

ସାର୍, ମୁଁ ତ ମୂର୍ଖ । ଜୀବନର ପ୍ରତି ସ୍ତରରେ ହାରିଯାଇଛି । କିନ୍ତୁ ଲେଖି ନଜାଣିଥିଲେ ବି ଲେଖାରେ ହେଉ ବା ଅନୁଭୂତିରେ ହେଉ ମୁଁ ଖୋଜି ବୁଲୁଥିଲି ପ୍ରାଣ ବା ହୃଦୟ । ମୁଁ ଭାବୁଥିଲି ଏ ଜଗତରେ ହୃଦୟର ଅଭାବ କ'ଣ ଭଗବାନ୍‌ଙ୍କର ଇଚ୍ଛା । ସାର୍, ମୋର ଏ ପରିଣତ ବୟସରେ ଆପଣଙ୍କ ବହି ମୋତେ ଏପରି ହୃଦୟର ପରିଚୟ ଦେଲା ଯେଉଁଥିରେ କି ମୋ ଆଇନାରେ ନିଜକୁ ଦେଖିଲେ ବୁଢା ବୋଲି ମନେକରେ, କିନ୍ତୁ ମନ ଭିତରେ ସେ ବାର୍ଦ୍ଧକ୍ୟ ଆସିନାହିଁ ବୋଲି ଏବେ ମୁଁ ଜାଣୁଛି, କାରଣ ଆପଣଙ୍କ ପରି ବିଶ୍ୱସ୍ତରର କବିଙ୍କର ଲେଖା ମୁଁ କିଛି କିଛି ବୁଝିପାରୁଛି ।

ମତେ ବହିଟିଏ ଭଲ ଲାଗିଲେ ମୁଁ ପାଖରେ କାଗଜ ରଖି ଭଲ ଲାଗୁଥିବା ବାକ୍ୟ ସବୁ ଲେଖିପକାଏ । ଠିକ୍ ସେଇ ଅଭ୍ୟାସରେ ଆପଣଙ୍କ ବହିଟି ପଢିଲା ବେଳେ କାଗଜ ଧରି ବସିଲି, କିନ୍ତୁ କ'ଣ ଲେଖିବି ମୁଁ ଜାଣିପାରିଲି ନାହିଁ । ସତ କହୁଛି ସାର୍, ମୁଁ ପ୍ରତ୍ୟେକଟି ବାକ୍ୟ ଲେଖିବାକୁ ଆରମ୍ଭ କଲି । ଗୋଟିଏ ବି ବାକ୍ୟ ନାହିଁ ଯାହାକୁ ଲେଖି ରଖିବାକୁ ଇଚ୍ଛା ହୁଏନି ।

କାଠଯୋଡ଼ି ହଷ୍ଟେଲରେ ଆପଣଙ୍କ ରହଣି, କଟକ ସହର ଉପରେ କବିତା - ଏସବୁ ମତେ କଟକ ତୁହାଇ ତୁହାଇ ମନେ ପକାଇ ଦେଲେ । କଟକକୁ ଭୁଲି ହୁଏନି ସାର୍ । ଅବସ୍ଥା ଚକ୍ରରେ ପଡି ଆମ ଡଗରପଡା ନଈକୂଳ ଘର ବିକ୍ରୀ ହୋଇଗଲା । ଭାଇ, ଭାଉଜ ତା ପୂର୍ବରୁ ସତୀଚଉରା ରୋଡରେ ନୂଆ ଘର ବନାଇଥିଲେ । ଠିକ୍ ସେମିତି ଶ୍ୱଶୁରଙ୍କର ସନ୍‌ସାଇନ୍ ପଡିଆ ପାଖ ଘର ବିକ୍ରି ହୋଇଗଲା । ମୋ ପରି ମୂଲ୍ୟହୀନ ଲୋକ ବିକ୍ରୀର ଅର୍ଥ ବୁଝିନି । ଭାରି ଖରାପ ଲାଗେ କଟକ ଗଲେ । ପ୍ରାୟ ଯାଏନି । ଆଖିରେ ଲୁହ ଆସେ । ସାର୍ ଭୁବନେଶ୍ୱରରେ କେହି କାହାକୁ ପଚାରନ୍ତି ନାହିଁ । ଏଠି ନା ଅଛି ସାହି ନା ଅଛି ବସ୍ତି । କଟକ ଘର ଯେତେ ପୁରୁଣା ହେଲେ ବି ସେଥିରେ ପ୍ରାଣ ଥିଲା । ଆପଣ ଲେଖିଛନ୍ତି ବହୁତ କଥା କଟକ ବିଷୟରେ, ରେଭେନ୍ସା କଲେଜିଏଟ୍, ରେଭେନ୍ସା କଲେଜ ଏସବୁ ମନେ ପଡିଲେ ମନ ଅଥୟ ହୋଇପଡେ । ୧୯୯୯ ମସିହାରେ କଟକ ସହରର ସାହି ବସ୍ତି ତଥା ପୂର୍ବକାଳ ବାସିନ୍ଦା ମାନଙ୍କ ବିଷୟରେ ମୋର ଦୁଇଟି ପ୍ରବନ୍ଧ "ସମାଜ"ରେ ପ୍ରକାଶ ପାଇଥିଲା । ତା'ର କିଛିବର୍ଷ ପରେ ମୋର ଗୋଟିଏ ପ୍ରକାଶକ ଛାତ୍ର ଜିଦ୍ ଲଗାଇ ମୋଠାରୁ କିଛି ପ୍ୟାକ୍‌ସ୍ ନେଇ ତଥା କଥିତ ଆତ୍ମଜୀବନୀ "ମନେପଡ଼େ"

ପ୍ରକାଶ କରିଥିଲା । ସେଥିରେ କଟକ ସହର ବିଷୟରେ ଲେଖାଥିବା ପ୍ରବନ୍ଧ ଦୁଇଟି ମଧ ପ୍ରକାଶ ପାଇଥିଲା । ମତେ ତ ଲେଖି ଆସେନି । ଆପଣଙ୍କ ବହି ପଢି କଟକ ବହୁତ ମନେ ପଡୁଛି ।

ସାର୍, ବହିର ପ୍ରତ୍ୟେକଟି ବାକ୍ୟ ଉପରେ ବହୁତ କିଛି ଲେଖାଯାଇପାରିବ । ଆପଣଙ୍କ ଦୃଷ୍ଟିକୋଣ କେବଳ କବି ବା ଲେଖକର ଦୃଷ୍ଟି କୋଣ ନୁହେଁ । ଏଥିରେ ଭର୍ତ୍ତି ହୋଇଛି ଦାର୍ଶନିକ ତଥ୍ୟମାନ । ଦାର୍ଶନିକଟିଏ ଲେଖିଥିଲେ ହୁଏତ କେହି ବୁଝି ନଥାଆନ୍ତେ । ମୁଁ ମୁର୍ଖ ହେଲେ ବି ଆପଣଙ୍କ ଚିନ୍ତାଧାରା ସାଙ୍ଗରେ ମୋର ଦରିଦ୍ର ଚିନ୍ତାଧାରା ଅନେକଟା ମିଶିଯାଉଛି । କିନ୍ତୁ ମୋ ପାଖରେ ଭାଷା ନାହିଁ କି ଲେଖକର ଚାତୁରୀନାହିଁ । ସାର୍, କେଉଁ ଦାର୍ଶନିକ ବାଖ୍ୟା କରିପାରିବ ଆପଣଙ୍କର ବାକ୍ୟ "ମୃତ୍ୟୁରେ ହିଁ କେବଳ ଥାଏ ଜୀବନ"ଟିକୁ । ପୁଣି ଦେଉଳର ଆଖିରୁ ଅଜସ୍ର ଲୁହ ବୋହି ଚାଲିଲା । ବହି ପଢୁଥାଏ - ମୁଁ କାନ୍ଦୁଥାଏ । କାହିଁକି କାନ୍ଦୁଥାଏ ଯଦିଓ ଜାଣିନାହିଁ, ଜୀବନର ପ୍ରତିସ୍ତରରେ ହୃଦୟର ଅଭାବ ମତେ କଲବଲ କରି ପକାଉଛି ।

ସାର୍, ମୋ ଦେହ ଖରାପ ଥିଲା । ବହିଟି ଆଣ୍ଟିବାଇଓଟିକ୍ ଅଥବା ପେନ୍ କିଲର ପରି କାମ କଲା । ହୃଦୟରେ ଭରପୂର ଆପଣ ନିଜ ଭାଷାକୁ ମଧ ଏପରି କରିଛନ୍ତି ଯେ ମୁଁ ଆପଣଙ୍କୁ ଆଡୋଲେସେଣ୍ଟ ପିରିୟଡକୁ ନେଇଯାଇ ନିଜେ ମଧ ସେଇ ସ୍ତରକୁ ଚାଲିଗଲି । ମନେହେଲା ସତେ ଯେପରି ଆମେ ଦୁହେଁ ସମ୍ବଲପୁର ଜି.ଏମ୍ କଲେଜ୍‌ର କ୍ୱାର୍ଟର୍ସରେ ଅଛେ ।

ସାର୍, ଆପଣଙ୍କ ବହି ବିଷୟରେ କିଛି କହିବାର ଯୋଗ୍ୟତା ବା ଅଧିକାର ମୋର ନାହିଁ, କାରଣ ଜ୍ଞାନର, କବିତ୍ୱର ଅଥବା ହୃଦୟର ସେ ସ୍ତରକୁ ମୁଁ ଯାଇ ପାରିନାହିଁ । କିନ୍ତୁ ନିଜେ ଅନେକଟା ଆନନ୍ଦ ଉପଭୋଗ କରିବାର ଅଧିକାର ତ ମୋର ଅଛି । ଦୁଃଖୀ ଜୀବନରେ ଆପଣଙ୍କ ବହି କେତେ ବଡ ସାନ୍ତ୍ୱନା କଳି ହେବନାହିଁ ।

ସାର୍, ସମ୍ବଲପୁରରେ ଥିଲାବେଳଠାରୁ ଜାଣିଥିଲି ଆପଣ ବହୁତ ବହି ପଢନ୍ତି, କିନ୍ତୁ ସେ ସବୁଥିଲା ଇଂରାଜୀ ବହି । ପରେ ପରେ ଅଥବା ଅନେକ ପରେ ଲାଜକୁଳା ଆପଣ ପଦାକୁ ଆସିଲେ, ଲୋକ ଦେଖିଲେ ଆପଣଙ୍କୁ । ସାରା ପୃଥିବୀ ଦେଖିଲା ଆପଣଙ୍କୁ । ଆପଣ ରବୀନ୍ଦ୍ର ନାଥ ଟାଗୋରଙ୍କ ପରି ବିଶ୍ୱର କବି ବନିଗଲେ କହିଲେ ଅତ୍ୟୁକ୍ତି ହେବନାହିଁ । କିନ୍ତୁ, ସାର୍, ଆପଣ ଓଡ଼ିଆ ଜଗତରେ ଏପରି ବିଚକ୍ଷଣତା ଦେଖାଇବେ ବୋଲି ମୁଁ ଜାଣିପାରିନଥିଲି ।

ସାର୍, ଆଉ ଗୋଟିଏ କଥା - ମୋ ନିଜ ବିଷୟରେ । ତଥାକଥିତ ଆଧୁନିକ କବିତାମାନ (ଇଂରାଜୀ ହେଉ ବା ଓଡ଼ିଆ ହେଉ) ମୁଁ ପଢି ବୁଝିପାରେ ନାହିଁ । ନିଜ ମୁର୍ଖାମୀ ପାଇଁ ନିଜକୁ ଦାୟୀ କରେ । ପରେ ପରେ ଭାବେ କବିତା ହେଉ ବା ନାଟକ ହେଉ ଯଦି ପାଠକମାନଙ୍କ ପାଖରେ ନପହଞ୍ଚିପାରିଲା, ଯଦି ତାହା ଗଣିତ ବା ପଦାର୍ଥ ବିଜ୍ଞାନ ପରି ଜଟିଳ ହୋଇଗଲା, ତେବେ କବିତାର ସରସତାକୁ କିଏ ଉପଲବ୍‌ଧୀ କରିବ ? କିନ୍ତୁ ଆଶ୍ଚର୍ଯ୍ୟ ହୋଇଗଲି ଆପଣଙ୍କର କବିତା (କିଛି କିଛି ପଢିଛି, କିଛିକିଛି ଏଇ ବହିରୁ ପଢିଲି) ସବୁକୁ ପଢି । ମୋ ପରି ମୁର୍ଖ ଖାଲି ଯେ ବୁଝିପାରୁନାହିଁ ତାହା ନୁହେଁ, ବୁଝି କାନ୍ଦିପାରୁଛି । କବିତାର ଅର୍ଥ ମୁଁ ସେହିପରି ବୁଝେ । ଆମେ ସ୍କୁଲ, କଲେଜ୍‌ରେ ପଢିବା ବେଳେ ଯେଉଁ କବିତା ପଢୁଥିଲେ ସେ ସବୁ ଏ ପର୍ଯ୍ୟନ୍ତ ମନେ ରହିଯାଇଛି । ତଥାକଥିତ ବଡ ବଡ କବିଙ୍କ କବିତାମାନଙ୍କୁ ବୁଝିବାର ଶକ୍ତି ମୋର ନଥାଏ । ଆପଣ ନିଆରା ଯୁଗ ସୃଷ୍ଟି କରିଛନ୍ତି । ସାଧାରଣ ମଣିଷକୁ ଆପଣଙ୍କ ସ୍ତରକୁ ନେଇଛନ୍ତି । "ରିଲେସନ୍‌ସିପ୍" ବହିରେ ଥିବା କବିତା ମାନ ମୋ ହୃଦୟ ଭିତରେ ପ୍ରବେଶ କରିଥିଲେ ଯଦିଓ 'ମୋ ହୃଦୟ' ବିଶାଳ ନୁହେଁ । ଏବେ 'ଭୋର ମୋତିର କାନଫୁଲ' ମତେ ପାଗଳ କରି ପକାଇଛି । ମୋର ବୟସ ମୁଁ ଭୁଲିଯାଇଛି । ରୋଗରେ ପଡିଲେ ଅଥବା ଘଣ୍ଟି ସଙ୍ଗେ ମୋ ଜୀବନର ଉତ୍ଥାନ ପତନ ତାଳ ଦେଇ ଚାଲିଲା ସଂପର୍କର ଡୋରିପରି । ବାପାଙ୍କ କାନ୍ଦ ଓ ଜେଜେଙ୍କ ଭୋକ କହିଲାବେଳେ ଆପଣ ନିଜ ଅସ୍ତିତ୍ୱ ହରାଇ ଦେଇଛନ୍ତି - ମିଶିଯାଇଛନ୍ତି ସେମାନଙ୍କର ଅବସ୍ଥାଚକ୍ର ସାଙ୍ଗରେ । ଆପଣ କଳ୍ପନାର ଆଣିପାରିଲେ, ଭୋକର ଶବ କୁ ପିଲାଟି ଦିନରୁ ପବନ ସଙ୍କେତ ଚାଲିଛି ମୋ ଖେଳ... ଈଶ୍ୱର କ'ଣ ଟିକେ ସେମିତି ପବନପରି ?

ମିତାଲୀ ଓ ପଦୀ ଦୁହିଁଙ୍କ ସହିତ ସଂପର୍କ ସ୍ୱର୍ଗୀୟ ହୋଇଉଠିଛି । "ଆମ ଆଖିର ଭାଷା ବୋଧେ କହୁଥିଲା ଯେ ଆମେ ଆମେ, ଆମେ ସବୁ, ଆଉ ଦୁନିଆ ଛିଡା ହେବ ଯଦି ଛିଡା ହୋଇଥାଉ ଖାଲି ହାତରେ" । ବହି ସାରା ପ୍ରତ୍ୟେକଟି ବାକ୍ୟ ହୃଦୟକୁ ସ୍ପର୍ଶ କରୁଛି, 'ଟିକଟ୍ କିଣିଲା ବେଳେ ମୋ ଆଖିରେ ପାଣିଥିଲା । ସେ ପାଣି ମୋ ଅତୀତ, ମୋ ଭବିଷ୍ୟତକୁ ଅସ୍ୱୀକାର କଲାପରି ମନେ ହେଲା' । ଲୋକଙ୍କ ନୀରବ ଜ୍ୟାମିତି ଭିତରେ ରାତି ହୋଇଛି କି ଦିନ, ସେ ପ୍ରଶ୍ନର ଉତ୍ତର ଜାଣିବା ମୋର ଦରକାର ହେଲାନାହିଁ । ସାର୍, ଲେଖିଲେ ସାର୍ ବହିଟାକୁ ଆଉଥରେ ଉତାରି ଦେବି । ତଥାପି, "ଡାଏରୀ ଲାଗେ ମୋର ଅତି

ଆପଣାର ପରି, ମୋର ଲମିଥିବା କାନ୍ଦ, ମୋର ଗର୍ଭବତୀ କବର" "ଦୁଃଖ ବୋଧହୁଏ ଦୁଃଖକୁ ନିଜ ଆଡକୁ ଟାଣେ ପଦାର୍ଥ ବିଜ୍ଞାନର ନିୟମ ବିରୁଦ୍ଧରେ। ଆଉ ଦୁନିଆ ତା'ରି ସୌନ୍ଦର୍ଯ୍ୟ ଲୋଭରେ ରହିଯାଏ"।

ସାର୍, ବଙ୍ଗଳା ଫିଲ୍ମ ଦେବଦାସ ମତେ ବହୁତ ଭଲ ଲାଗୁଥିଲା ଯଦିଓ ମୁଁ ପଛରେ ସେ ଫିଲ୍ମ ଦେଖିଲି। କିସୁନ୍ଦର ଛବି ଆପଣ ଆଙ୍କିଛନ୍ତି ଯେତେବେଳେ କହିଛନ୍ତି "ଯେଉଁଠି ଫିଲ୍ମର ମୁଖ୍ୟ ଅଭିନେତା ଆଉ ତାଙ୍କ ପ୍ରେମିକା ମଧ୍ୟରେ ନଥିଲେ ଆଉ କେହି, କେବଳ ତାଙ୍କ ବାହାରେ ସେଇ ଅହଂକାରୀ ଦୁନିଆ, ଲଜ୍ଜିତ କରିବାକୁ ସେଇ ସଦା ପ୍ରସ୍ତୁତ ଦୁନିଆ ସାଙ୍ଗେ ମୁହାମୁହିଁ ହେବାକୁ। ସେଇ ଦୃଶ୍ୟ ମୁଁ କେବେ ଭୁଲିନାହିଁ ଯେବେ ଏମିତି ଏଇ ପୋଖରୀ କୂଳରେ ବନ୍‌ସି ଧରି ଦେବଦାସ ପାରୁ ଅସମ୍ମାନ ଭାବରେ କହୁଛନ୍ତି। ଚାନ୍ଦରେ ଗାଏ କଳଂକ ଆଛେ ତୋମାର୍ ଗାଏ ନେଇ"।

ସାର୍, ମୁଁ ଭାବିପାରୁନି ଆପଣଙ୍କ ପାଖକୁ ଏ ଲେଖାର ଶୈଳୀ କିପରି ଆସିଲା। ଆପଣ ଗୁନୁ ଅପାଙ୍କୁ ଆଣି ଥୋଇଚନ୍ତି ଗୋଟିଏ ମାତ୍ର କିନ୍ତୁ ସବୁଠାରୁ ଶକ୍ତିଶାଳି ବାକ୍ୟରେ "ରେଭେନ୍ସା କଲେଜ୍‌ରେ କ୍ଲାସ ନେଲି। ଗୋଟିଏ ଦିନ ପରେ ଆଉ ଗୋଟିଏ ଦିନ। ସେଦିନ ଗୁଡ଼ିକ ଉପରେ ଗୋଟିଏ ନାଁ ଲେଖାଥିଲା।

ଜ୍ୟୋତ୍ସ୍ନା ରାଣୀ ଦାସ" ....

ସାର୍, ମୁଁ ଆପଣଙ୍କ ସଙ୍ଗେ ଏକମତ, "ବୋଧେ ଭଲ ପାଇବା କାନ୍ଦଟି ଛଡା କିଛି ନୁହଁ"। ପୁଣି ସାର୍, "କିଏ ଜାଣିଥିଲା ପାଉଁଶ କଥା କହିବ ? ଆଉ ପବନ ଉତ୍ତର ହେବ" ?

ମୁଁ ମୂର୍ଖ ସିନା ସାର୍, ମୋର ବି ଗୋଟିଏ ମନ ଅଛି ଯେ କି ଆପଣଙ୍କ ମନ ସାଙ୍ଗରେ ଖାପ ଖୁଆଇ ଚାଲିବାର ଶକ୍ତି ନଥିଲେ ବି ଆଖି ଲୁହକୁ ସାଥିରେ ରଖି ଆପଣଙ୍କ ଦୁଃଖକୁ ସ୍ୱୀକାର କରିନେଇପାରେ। "ଯୋଉ ମୁହୂର୍ତ୍ତରେ- ଭୋର ମୋତିର କାନଫୁଲ ଦେଖିଥିଲି - ସେବେ ସେଇ ମୁହୂର୍ତ୍ତ ଥିଲା ଈଶ୍ୱରଙ୍କ - ମୋର ନୁହେଁ"।

ସାର୍, ଭୋର ମୋତିର କାନଫୁଲ ଥାଉ କି ନଥାଉ, ଆପଣ ଏମିତି ସବୁଦିନ ସୁସ୍ଥ ରହିଥାନ୍ତୁ, ଏମିତି ଲେଖିବା ପାଇଁ।

ହଁ ସାର୍, ବେଶ୍ କିଛି ବର୍ଷ ତଳେ କମଳା ଦାସ୍‌ଙ୍କର 'ମାଇଁ ଷ୍ଟୋରୀ' ପଢିଥିଲି। ସେ ଆତ୍ମଜୀବନୀ ମତେ ଓ ମୋ ମନକୁ ବେଶ୍ ଛୁଇଁଥିଲା। କିନ୍ତୁ ଏବେ 'ଭୋର ମୋତିର କାନଫୁଲ' ସେ ପସନ୍ଦକୁ ଟପିଗଲା। ଅବଶ୍ୟ ମୋ ପରି ଛାର୍ ଲୋକର ପସନ୍ଦ ନା ଅପସନ୍ଦରେ କ'ଣ ବା ଅଛି ?

ଗୌର ବାବୁ (ମୋର ସହପାଠୀ - ଭାରି ସାଙ୍ଗ ଥିଲୁ - ଏବେ ବି ସାଙ୍ଗ ଅଛୁ) ୫ଟି ମାତ୍ର ବାକ୍ୟରେ ଆପଣଙ୍କ ବହିଟିର ସବୁ କିଛି ବର୍ଣ୍ଣନା କରିଦେଇଛନ୍ତି।

ଆଉ ଅମରେଶ ପଟ୍ଟନାୟକଙ୍କୁ ବ୍ୟକ୍ତିଗତ ଭାବେ ଜାଣିନାହିଁ ସତ, କିନ୍ତୁ ସେ ଆପଣଙ୍କ ବହିଟିକୁ "ହୃଦୟ... କଣିକାଏ"ରେ ଏପରି ସଜାଇ ରଖିଦେଇଛନ୍ତି ଯେ ଆଜିକାଲିର ହୃଦୟ ନ ଥିବା ବ୍ୟକ୍ତିମାନଙ୍କ ମନକୁ ମଧ୍ୟ ଦୋହଲାଇ ଦେବ। ଆପଣଙ୍କ ଠାରୁ ତାଙ୍କ ପରିଚୟ ନେବି।

ସାର୍, ମନ ବହୁତ ବ୍ୟାକୁଳ ହେଉଛି ଆପଣଙ୍କୁ ଦେଖିବା ଲାଗି। ବିରକ୍ତ ଲାଗୁଛି ଦେହ, ରୋଗ, ପରିବାର, ସଂପର୍କ ଇତ୍ୟାଦିକୁ। ମନ ହେଉଛି ଏ ସବୁକୁ ଛାଡି "ଭୋର ମୋତିର କାନଫୁଲ" ଅଛି କି ନାହିଁ ଦେଖିବାକୁ। ସାର୍, ସଂପର୍କ ଆଉ ଏ ଦୁନିଆରେ ତିଷ୍ଠି ନାହିଁ। କେତେଜଣ ଅବା ଅଛନ୍ତି ଆପଣଙ୍କ ପରି କାନ୍ଦିବାକୁ। ତେଲ ଲୁଣ ସଂସାରରେ ଲେଖକ କାନ୍ଦି ଜାଣନ୍ତି ନାହିଁ। ନିଜକୁ ଭୀରୁ, କାପୁରୁଷ କହି ଜାଣିନାହାନ୍ତି।

ହଁ ସାର୍, ସବୁ ନୂଆ ବହିରେ ପ୍ରଥମ ପୃଷ୍ଠାରେ ମୁଁ ମୋ ନାଁ ଲେଖି ପକାଏ କିଛିଟା ଆନନ୍ଦରେ, କିଛିଟା ଭୟରେ। ବହିଟି କାଳେ ଆଉ କାହାର ହୋଇଯିବ। କିନ୍ତୁ ଆପଣଙ୍କର ଏ ବହିରେ ମୁଁ ଲେଖିଲି ଏମିତି - ତାଙ୍କର ସେଇ ମଧୁର ଡାକ 'ଗନା'ର ଏବହି। ଯେଉଁ ଗନା ତା ହୃଦୟରେ ସାଇତି ରଖିବ ବହିରେ ଥିବା କାହାଣୀ ଓ କବିତା ସବୁକୁ।

ରହିଲି ସାର୍, ଇତି

- ଗନା -

## ପଦ୍ମଭୂଷଣ ଡକ୍ଟର ସୀତାକାନ୍ତ ମହାପାତ୍ର (ଅବସରପ୍ରାପ୍ତ ଆଇ.ଏ.ଏସ୍)

(ପାଠପଢ଼ାରେ ଅଶେଷ କୃତିତ୍ୱ ଅର୍ଜନ କରି ଆଇ.ଏ.ଏସ୍ ପରୀକ୍ଷାରେ ଶ୍ରେଷ୍ଠତ୍ୱର ପ୍ରମାଣ ଦେଇ ସରକାରୀ ଚାକିରୀରେ ସର୍ବୋଚ୍ଚ ସ୍ଥାନ ଅଧିକାର କରି ଅବସର ଗ୍ରହଣ କରିଥିବା ପଦ୍ମଭୂଷଣ ଡକ୍ଟର ସୀତାକାନ୍ତ ମହାପାତ୍ର ଗଣେଶ୍ୱର ସାରଙ୍କର ଏତେ ନିକଟତମ ବନ୍ଧୁ ବୋଲି ତାଙ୍କର ଦେଇଥିବା ଚିଠିରୁ ଜାଣିବାକୁ ପାଇ ଚିଠିର ନକଲଟିଏ ସଂଗ୍ରହ କରିବାର ଇଚ୍ଛାକୁ ଦମନ କରିପାରିଲି ନାହିଁ। ଡକ୍ଟର ମହାପାତ୍ରଙ୍କ ଚିଠିରୁ ଜାଣିଲି ଯେ ଦୁଇବନ୍ଧୁ ଏକାଦିନରେ ବିବାହ କରିଥିଲେ ଏବଂ ଦୁହିଁଙ୍କର ପତ୍ନୀ ଘନିଷ୍ଠ ବାନ୍ଧବୀ। ବିବାହର ସୁବର୍ଣ୍ଣ ଜୟନ୍ତୀ ଅବସରରେ ଦୁଇବନ୍ଧୁ ପତ୍ନୀଙ୍କ ସହ ଉଠାଇଥିବା ଫଟଟିଏ ସଂଲଗ୍ନ କରୁଅଛି।

ପଦ୍ମଭୂଷଣ ଡକ୍ଟର ମହାପାତ୍ର ସମସ୍ତ କାର୍ଯ୍ୟ ବ୍ୟସ୍ତତା ମଧ୍ୟରେ ଉଚ୍ଚତର ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ 'Modernisation of Shantal Society - the research for identity ବିଷୟରେ ପି.ଏଚ.ଡି ଡିଗ୍ରୀ ଲାଭ କରିଥିଲେ।

ଡକ୍ଟର ମହାପାତ୍ର ଜଣେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ କବି। କବିତା, ପ୍ରବନ୍ଧ, ସମାଲୋଚନା, ଅନୁବାଦ, ସଂପାଦନା - ଏମିତି ପ୍ରାୟ ପଚାଶରୁ ଊର୍ଦ୍ଧ୍ୱ ପୁସ୍ତକର ସ୍ରଷ୍ଟା ସେ। ସ୍ୱୀୟ ସାହିତ୍ୟକୃତି ପାଇଁ ସେ ଭାରତୀୟ ଜ୍ଞାନପୀଠ ପୁରସ୍କାର, କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର, ମହାକବି କୁମାରନ୍ ଆସାନ୍ ପୁରସ୍କାର, ସାରଳା ପୁରସ୍କାର, ବିଷୁବ ପୁରସ୍କାର, ସୋଭିଏତ୍ ଦେଶ ନେହେରୁ ପୁରସ୍କାର ଓ କବୀର ସମ୍ମାନ ସମେତ ବହୁ ପୁରସ୍କାରରେ ସମ୍ମାନିତ।)

- ସମ୍ପାଦକ

ପ୍ରିୟ ବନ୍ଧୁ, ଆମେ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ପରସ୍ପରର ସାହଚର୍ଯ୍ୟ ଲାଭ କରିଛେ। ଆମରି ପରି ରମେଲି ଓ ବବି (ଆମ ଦୁହିଁଙ୍କର ସ୍ତ୍ରୀଙ୍କ ଡାକନାମ) ବା ବାସନ୍ତୀ ଓ ପଦ୍ମିନୀ ବଂଧୁତାର ନିଗଡ ବନ୍ଧନରେ ବନ୍ଧା ରହିଛନ୍ତି। ଆପଣଙ୍କ ପରିବାରର ସବୁ ପିଲାଙ୍କୁ ବଡ ହୋଇଯିବାର ଦେଖି ଆସିଛୁ। ସେମାନଙ୍କ ପାଠପଢ଼ା, ଚାକିରୀ, ବିବାହ, ଜୀବନର ଯାବତୀୟ ଝଡଝଞ୍ଜା, ସୁଖଦୁଃଖ କଥା ଜାଣିଛୁ। ମିଳିମିଶି ବୈକୁଣ୍ଠ ସମାନ ଘରଟିଏ ଗଢ଼ିବାରେ ସେମାନେ ଆପଣଙ୍କୁ ସାଥୀ ଦେଇଛନ୍ତି।

ସତ କହିବାକୁ ଗଲେ ମୋତେ ତ ବେଳେବେଳେ ଲାଗିଛି ଆପଣ, ପଦ୍ମିନୀ ଓ ପିଲାଙ୍କ (ସୁମନ୍ ସୀମାଙ୍କ ଠୁ ସୁବ୍ରତ ଇତ୍ୟାଦିଙ୍କ ଯାଏ) ବିଷୟରେ ସବୁ ଲେଖି ବସିଲେ ପୋଥିଟିଏ ହେବ। ଆମ ଦୁହିଁଙ୍କ ପାରିବାରିକ ସଂପର୍କ ଆତ୍ମୀୟତା ଓ ସ୍ନେହରେ ଅନୁବନ୍ଧିତ ଆମେ ଦୁହେଁ ନିଜ ନିଜ ଅନ୍ତଃ କରଣରେ ଜାଣିଛେ।

ବୟସରେ ମୋ ଠୁଁ ଆପଣ ଚାରିବର୍ଷ ବଡ। ଦର୍ଶନର ଛାତ୍ର, ଅଧ୍ୟାପକ, ଛାତ୍ର ବତ୍ସଳ ପ୍ରିନ୍ସିପାଲ ଏ ସବୁଠୁଁ ଉଚ୍ଚରେ ମୁଁ ଆପଣଙ୍କୁ ଦାର୍ଶନିକଟିଏ ବୋଲି ସବୁବେଳେ ଭାବି ଆସିଛି। ମୁଁ ଭାବେ ଯିଏ ଦାର୍ଶନିକ ଯାହାର ଦୈନନ୍ଦିନ ଜୀବନଚର୍ଯ୍ୟାରେ ଦର୍ଶନର ମୂଳତତ୍ତ୍ୱ ପ୍ରତିଫଳିତ। ବିଶଦ ବର୍ଣ୍ଣନା କରିବି ନାହିଁ। କିନ୍ତୁ ଗୀତାର ଯାହା "ସ୍ଥିତଧୀ"ର ସଂଜ୍ଞା ଆପଣଙ୍କ ଜୀବନରେ ହିଁ ଘଟି ଚାଲିଛି। ସେଇ ଦୃଷ୍ଟିରୁ ମୁଁ ଦେଖି ଆସିଛି ଆପଣଙ୍କର ଧୃତାତ୍ମା (ଆତ୍ମତତ୍ତ୍ୱଜ୍ଞ) ଓ ଧୃତିମନ (ଧୀର, ଧୈର୍ଯ୍ୟବାନ) ବ୍ୟକ୍ତିତ୍ୱକୁ।

ଆପଣାର କ୍ରମାଗତ ଦୈହିକ ଅସୁସ୍ଥତା, ପଦ୍ମିନୀଙ୍କର ଚରମ ଦେହ ଦୁଃଖ ସବୁକୁ ଆପଣେଇ ନେଇଛନ୍ତି। ଜୀବନ ପ୍ରତି କେବେ ଅଭିଯୋଗ ବାଢ଼ିନାହାନ୍ତି, ଈଶ୍ୱରଙ୍କୁ ଦୋଷାରୋପ କରିନାହାନ୍ତି। ଏଇ ସହନଶୀଳତା ସ୍ନେହରୁ ଉପୁଜିଛି। ବହୁ ଆନନ୍ଦ ମୁହୂର୍ତ୍ତ ଆସିଛି ଜୀବନରେ। ସବୁ କଥା "ଏ ସବୁ ମୋହର ସୁଖ ପସରାରେ" ରଖି ଦେଇଛନ୍ତି। ସେଇ ଈଶ୍ୱରଙ୍କୁ କୃତଜ୍ଞତା ଅର୍ପଣ କରିଛନ୍ତି। ସବୁକଥା ବଖାଣିଛନ୍ତି ନିଜ ବାଗରେ, ଅହେତୁକ ଆନ୍ତରିକତା ସହ "ମନେପଡ଼େ"ରେ। ଆମର ଚଉପାଖର ସମାଜକୁ ନିରେଖିଛନ୍ତି, ଶିକ୍ଷା ଓ ସମାଜ ଚେତନା ବିଷୟରେ। ସମୟର ନୂତନ ଆହ୍ୱାନ ବିଷୟରେ ଦର୍ଶନ ସଂବଳିତ ଚିନ୍ତା ପ୍ରକଟ କରିଛନ୍ତି। ଆମ ଦୁହିଁଙ୍କ ବନ୍ଧୁ ଦର୍ଶନ ଶାସ୍ତ୍ରବିତ୍ ପ୍ରଫେସର ଗୌରାଙ୍ଗ ଚରଣ ନାୟକ ଓ ପ୍ରଫେସର ହୃଦାନନ୍ଦ ରାୟ ଏବଂ ଇଂରାଜୀ ପ୍ରଫେସର ଓ ମୋର ବିଶିଷ୍ଟ ବନ୍ଧୁ ଗୌରକିଶୋର ଦାସ ବହୁତ କିଛି କହି ସାରିଛନ୍ତି। ମୁଁ ସେ ସବୁ ପଢ଼ି ଉପକୃତ ହୋଇଛି।

ଗୋଟିଏ କଥାରେ ଆମେ ସମଦୁଃଖୀ ହୋଇ ରହିବାକୁ ପଡିଲା। କାରଣଟି ଆମ ଦୁହିଁଙ୍କ ବିଭାଘର ସୌଭାଗ୍ୟକୁ ବା

ଦୁର୍ଭାଗ୍ୟକୁ ଏକା ତାରିଖରେ (୮ ମାର୍ଚ୍ଚ ୧୯୬୧) ହେଲା । ଫଳତଃ ପ୍ରବଳ ଇଚ୍ଛାସତ୍ତ୍ୱେ କେହି କାହାର ବରଯାତ୍ରୀ ହୋଇପାରିଲୁନି । ଯୋଗ ଦେଇ ପାରିଲୁନି ।

ଜୀବନର ଚଲାପଥରେ ଆପଣଙ୍କ ପରି ଜଣେ ବନ୍ଧୁ ପାଇଥିବା ଯୋଗୁଁ ମୁଁ ସବୁବେଳଲେ ନିଜକୁ ଭାଗ୍ୟବାନ ମଣି ଆସିଛି । ଇଷ୍ଟଦେବ ଶ୍ରୀଜଗନ୍ନାଥଙ୍କ ଅପାର କରୁଣାରେ ଆପଣ ଓ ପଦ୍ମିନୀଙ୍କ ଅବଶିଷ୍ଟ ଜୀବନ ସର୍ବଶୁଭରେ କଟୁ ଏତିକି କାମନା ।

ଆପଣଙ୍କର ସ୍ନେହାନୁବଦ୍ଧ
ସୀତାକାନ୍ତ ମହାପାତ୍ର



ପଦ୍ମଭୂଷଣ ଡକ୍ଟର ସୀତାକାନ୍ତ ମହାପାତ୍ର ଓ ଶ୍ରୀମତୀ ମହାପାତ୍ରଙ୍କ ଗହଣରେ ସାର୍ ଓ ମାଡାମ୍
ଉଭୟଙ୍କ ବିବାହର ସୁବର୍ଣ୍ଣ ଜୟନ୍ତୀ ଅବସରରେ

## Prof. Prasanta Kumar Pattanaik

Prof. Prasanta Kumar Pattanaik is an internationally renowned economist now retired from teaching at the university of California (USA). After receiving his doctorate from the Delhi School of Economics (D S E) he became a professor at DSE for four years and had since taught in Harvard University, Nuffield college (Oxford, England), and held the President's Chair at the University of California. He has been a visiting Professor to more than 15 countries.

Although Microeconomis is his major area of interest, his research that won many accolades, includes welfare economic, theory of social choice, decision theory, measurement of deprivation and standard of living.

- ସମ୍ପାଦକ

**Prof. Prasanta Kumar Pattanaik**

8704, Maroon Peak Way
Riverside, CA 92508 (U.S.A.)-3277

Dear Ganeswar Babu,

I am writing to express my deep gratitude to you for all the kindness and help that I have received from you and all that I have learned from you over a period of some 50 years. With your total commitment to your students and your single-minded dedication to a life of scholarship, you have been a role model for many students who decided to pursue a career of teaching and research. I know that I am only one of many people whom you have helped and inspired over the years; many of your students have their own stories about your kindness and generosity. I thank you for all that you have done for me.

With warm regards,
Yours sincerely
Prasanta
(Prasanta K. Pattnaik)

## ଡକ୍ଟର ଜଗନ୍ନାଥ ପ୍ରସାଦ ଦାସ

ସାର୍‌ଙ୍କର ଆଉଜଣେ ଅନ୍ତରଙ୍ଗ ବନ୍ଧୁ ଡକ୍ଟର ଜଗନ୍ନାଥ ପ୍ରସାଦ ଦାସଙ୍କର ମଧ୍ୟ ଅନେକ ଚିଠି ଦେଖିଲି । ସେ ଚିଠିରୁ କିଛି ଏଥିରେ ସଂଯୋଗ କରାଗଲେ ମଧ୍ୟ ତାଙ୍କ ବିଷୟରେ ଦୁଇଟି ପ୍ରବନ୍ଧ ସାର୍ ଲେଖିଛନ୍ତି ଯାହା ଏ ବହିରେ ପ୍ରକାଶ ପାଉଅଛି । ଡକ୍ଟର ଦାସ ମଧ୍ୟ ବିଶ୍ୱବିଖ୍ୟାତ ବ୍ୟକ୍ତି । ତାଙ୍କ ରଚିତ କବିତା, କ୍ଷୁଦ୍ରଗଳ୍ପ, ନାଟକ ଭାରତ ବର୍ଷ ତଥା ଭାରତ ବାହାରେ କେତେକ ଦେଶରେ ଅନୁବାଦ କରାହୋଇଛି । ଡକ୍ଟର ଦାସ ଆଇ.ଏ.ଏସ୍ ସେବାରୁ ଇସ୍ତଫା ଦେଇ ଦିଲ୍ଲୀରେ ଅବସ୍ଥାନ କରୁଛନ୍ତି ତଥା ସାହିତ୍ୟ ସେବାରେ ନିଜକୁ ବ୍ୟସ୍ତ ରଖିଛନ୍ତି । ତାଙ୍କ ବିଷୟରେ ବହୁତ କିଛି ଚର୍ଚ୍ଚା କରିଛନ୍ତି ପ୍ରଫେସର ଗଣେଶ୍ୱର ଦାସ ତାଙ୍କ ଲିଖିତ ପ୍ରବନ୍ଧରେ ।

ପୁରୀର ଚିତ୍ରକାରଙ୍କ ଉପରେ ଏବଂ କଳାର ଇତିହାସ ଉପରେ ଗବେଷଣା କରି ସେ ପିଏଚ୍.ଡ଼ି. ଡିଗ୍ରୀ ଲାଭ କରିଥିଲେ ।

- ସମ୍ପାଦକ

**ଜଗନ୍ନାଥ ପ୍ରସାଦ ଦାସ** **ତା୩୦.୮.୨୦୧୨**

ପ୍ରିୟ ଗଣେଶ୍ୱର ବାବୁ,

ପତ୍ରିକା ଓ ପତ୍ର ପାଇଛି । ଆପଣଙ୍କର ଲେଖାଟି ମୋ ପ୍ରତି ଆପଣଙ୍କର ସ୍ନେହର ପ୍ରମାଣ, ମୋର କୌଣସି କୃତିତ୍ୱର ପ୍ରଶଂସା ନୁହେଁ ।

ମୋ ପାଖକୁ ଆସିଥିବା କିଛି ଚିଠିର ଏକ ସଂକଳନ ପ୍ରକାଶ ପାଇଛି । ପ୍ରକାଶକ ହେଉଛନ୍ତି-

Sikshasandhan
ND-7, VIP Area, IRC Village
Bhubanewar - 751003

ଇଚ୍ଛା କଲେ ବହିଟି ଦେଖିପାରନ୍ତି । ଗୌରବାବୁ ଆମେରିକା ଯାଇଛନ୍ତି, ଫେରିବେ କିଛି ମାସ ପରେ । ଆପଣଙ୍କ ପାଖରେ 'ବିଷୁବର ଲେଖକ' ଅଛି କି ? କେଉଁଠାରୁ ମିଳି ପାରିବ ?

ଏ ଭିତରେ ମୋର angioplasty ଓ pacemaker ଲାଗିଛି । ମୁଁ ମୋଟାମୋଟି ଠିକ୍ ଅଛି ।

ନମସ୍କାର ସହ
ଜଗନ୍ନାଥ ପ୍ରସାଦ ଦାସ

**Dr. J.P. Das** **17th Oct, 2010.**

Dear Ganeswar Babu,

Many thanks for so kindly sending me a copy of your latest book "ଶିକ୍ଷା ଦର୍ଶନ ଓ ସମାଜ ଚେତନା" which our good friend Goura Babu gave me yesterday. I have already gone through one of the pieces and have enjoyed them and have been benefited.

I often reminisce about our college days when we used to meet everyday, and also our last meeting at Bhubaneswar.

I hope you are doing well.

With regards

Sincerely
J.P. Das

# ଜଗନ୍ନାଥ ପ୍ରସାଦ - ଏକ ପ୍ରମୁଖ ସ୍ରଷ୍ଟା

**ଗଣେଶ୍ୱର ଦାସ**

କାନାଡାର ମଣ୍ଟ୍ରିଲ ବିଶ୍ୱବିଦ୍ୟାଳୟରେ ଅନୁବାଦ ସାହିତ୍ୟ ର ପ୍ରଫେସର Paul St-Pierre ଙ୍କ ସମ୍ପାଦନାରେ ଅଳ୍ପଦିନ ତଳେ ଲିଖିତ ପୁସ୍ତକ, ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ ଇଂରାଜୀ ପ୍ରଫେସର ଡକ୍ଟର ଗଣେଶ୍ୱର ମିଶ୍ରଙ୍କ ସମ୍ପାଦିତ ପୁସ୍ତକ "Words on Canvas - JP Das and His Work" ଏବଂ ତାଙ୍କ ଦ୍ୱାରା ଲିଖିତ "ଜଗନ୍ନାଥ ପ୍ରସାଦ : ସୃଜନ ଯାତ୍ରା" ଏଇ ତିନୋଟି ପୁସ୍ତକ ପଢିବା ପରେ ମୁଁ ଗୋଟାଏ ରକମର ବିବ୍ରତ ହୋଇପଡିଛି। ଯାହା ସବୁ ଲେଖା ହୋଇଛି ସେ ସବୁ କେବଳ ଜଗନ୍ନାଥ ପ୍ରସାଦଙ୍କ ଉପରେ ନୁହେଁ, ଜଗନ୍ନାଥ ପ୍ରସାଦଙ୍କୁ ଆଲୋକରେ ଝଲସାଉଥିବା ପୃଥିବୀର ବିଶିଷ୍ଟ ବ୍ୟକ୍ତିମାନଙ୍କ ବିଷୟରେ ଯେଉଁ ଟିପ୍ପଣୀ ମାନ ଦିଆହୋଇଛି ଉକ୍ତ ଟିପ୍ପଣୀ ମାନେ ମୋ ମନ ଭିତରେ ପ୍ରବଳ ଇଚ୍ଛା ସୃଷ୍ଟି କରୁଛନ୍ତି କିପରି ଜଗନ୍ନାଥ ପ୍ରସାଦ ଏବଂ ତାଙ୍କ କୃତିମାନଙ୍କୁ ଓଡ଼ିଶାର ଜନସାଧାରଣ ଓ ପାଠକ ମାନଙ୍କ ପାଖରେ କିଛିଟା ପହଞ୍ଚାଇ ହେବ। ଜଗନ୍ନାଥ ପ୍ରସାଦ ଏକାଧାରରେ ବିଶିଷ୍ଟ କବି, ବିଶିଷ୍ଟ ଅନୁବାଦକ, ବିଶିଷ୍ଟ କଳାକାର, ବିଶିଷ୍ଟ ନାଟ୍ୟକାର, ବିଶିଷ୍ଟ ପ୍ରଶାସକ ଏବଂ ଆହୁରି ବହୁତ କିଛି। ତାଙ୍କର ଲେଖାସବୁ ଭାରତୀୟ ଓ ଅଣ ଭାରତୀୟ ଭାଷାମାନଙ୍କୁ ଅନୁବାଦ କରାହୋଇଛି। ତାଙ୍କ ସାହିତ୍ୟକୃତିର ତାଲିକା ଦେବା ମୋର ଉଦ୍ଦେଶ୍ୟ ନୁହେଁ। ତାଙ୍କର କଳାକୃତି ବିଦେଶରେ ଉଚ୍ଚ ପ୍ରଶଂସିତ ହେବା ସାଙ୍ଗକୁ ଅନ୍ୟଭାଷାରେ ଅନୁବାଦ ହୋଇଥିବା ନାଟକ ମାନ ବିଭିନ୍ନ ସ୍ଥାନରେ ମଞ୍ଚସ୍ଥ ହୋଇଛି।

ଜଗନ୍ନାଥ ପ୍ରସାଦଙ୍କର ଅନେକ କବିତା, କ୍ଷୁଦ୍ର ଗଳ୍ପ ପଢିଥିଲେ ବି ଉପରୋକ୍ତ ତିନୋଟି ପୁସ୍ତକ ପଢିବା ସମୟରେ ମୋର ମନ ହେଲା ସତେ ଯେପରି ଜଗନ୍ନାଥ ମତେ ବହୁ ଅତୀତକୁ ନେଇ ଯାଉଛନ୍ତି। ଅତୀତର କଥା ସବୁ - ଅତୀତର ଭାଷା ମାନେ - ଭାଷାରେ ଗଢି ଉଠିଥିବା କାହାଣୀମାନେ, ସମସ୍ତେ ଜୀବନ୍ତ ହୋଇ ଉଠିଲେ। ପିଲାଦିନେ ଯାହାଙ୍କୁ କଳି ପାରୁନଥିଲ ଏବେ ବି ସହଜରେ କଳିପାରିଲି ନାହିଁ। ଜାଣିପାରିଲି ନାହିଁ ମୋ ସାଙ୍ଗରେ କୈଶୋର ଅବସ୍ଥାରେ ଭାବ ପ୍ରବଣତାର ଗଭୀର ସମ୍ପର୍କ ରଖିଥିବା ଜଗନ୍ନାଥ, ପିଲାବେଳୁ ସାମାଜିକ ଅଧୋଗତିରେ ଚିନ୍ତିତ ହୋଇ ପରିବର୍ତ୍ତନର ଆଶାରେ ହୃଦୟରେ ସ୍ପନ୍ଦନ ସୃଷ୍ଟି କରିବା ପରି କବିତା ମାନ ଲେଖିଥିବା ଜଗନ୍ନାଥ, ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ କୃତିତ୍ୱ ହାସଲ କରୁଥିବା ଯୁବକ ଜଗନ୍ନାଥ, ଯୌବନ କାଳର କବିତା ମାନଙ୍କରୁ ସ୍ପଷ୍ଟ ହେଉଥିବା ବସ୍ତୁବାଦ ଢାଞ୍ଚାରେ ଜୀବନ ଶୈଳୀକୁ ଗଢାଇ ତୋଳିବା ପାଇଁ ପ୍ରଶାସନିକ ଦକ୍ଷତାର ଶୀର୍ଷରେ ପହଞ୍ଚିଥିବା ଆଇ.ଏ.ଏସ୍. ଜଗନ୍ନାଥ, ହଜି ଯାଇଥିବା "କବିର କଳ୍ପନା" ଏବଂ "ସୁପ୍ତକଳାର ଚେତନା" କୁ ଜାଗ୍ରତ କରାଇବା ଲାଗି ଲୋଭନୀୟ ପ୍ରଶାସନିକ କ୍ଷେତ୍ରରୁ ନିଜକୁ ମୁକ୍ତ କରି ସାହିତ୍ୟ ଓ କଳାର ସୃଷ୍ଟିରେ ନିଜକୁ ଉତ୍ସର୍ଗ କରିଥିବା ଆଦର୍ଶ ଜଗନ୍ନାଥ, ୧୯୭୧ ମସିହାରେ ଚହଳ ପକାଇଥିବା ଏବଂ କବିତା ଜଗତରେ ନୂତନତ୍ୱ ସୃଷ୍ଟି କରିଥିବା 'ପ୍ରଥମ ପୁରୁଷ' ଏବଂ ୧୯୭୪ ମସିହାରେ ଉକ୍ତ କବିତା ସଂକଳନର ହିନ୍ଦୀ ଅନୁବାଦ ର କୃତିତ୍ୱ ଅର୍ଜନ କରିଥିବା ଜଗନ୍ନାଥ, ୧୯୯୦ରେ ପ୍ରକାଶ ପାଇଥିବା ଏବଂ କେନ୍ଦ୍ରୀୟ ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହେବା ସଙ୍ଗେ ସଙ୍ଗେ ଆସାମୀ, ବଙ୍ଗଳା ଏବଂ ହିନ୍ଦୀରେ ଅନୁବାଦ ହୋଇଥିବା 'ଆହ୍ନିକ୍'କବିତା ପୁସ୍ତକ ରଚନା କରିଥିବା କବି ଜଗନ୍ନାଥ, ୧୯୭୨ ମସିହାରେ ପ୍ରକାଶିତ ଏବଂ ପରେ ପରେ କଲିକତାରେ ବଙ୍ଗଳାରେ ମଞ୍ଚସ୍ଥ ହୋଇଥିବା ଏବଂ ହିନ୍ଦୀରେ ଅନୁବାଦ ହୋଇଥିବା 'ସୂର୍ଯ୍ୟାସ୍ତ ପୂର୍ବରୁ' ନାଟକର ଲେଖକ ଜଗନ୍ନାଥ, ୧୯୮୦ ମସିହାରୁ ଆରମ୍ଭ କରି ପ୍ରକାଶିତ ଏବଂ ପ୍ରଶଂସିତ ୧୦ଟି କ୍ଷୁଦ୍ର ଗଳ୍ପର ଲେଖକ ଜଗନ୍ନାଥ ପୁରୀ ଚିତ୍ରକାରଙ୍କ ଉପରେ ଗବେଷଣା କରି "Puri Painting" ପୁସ୍ତକ ପ୍ରକାଶ କରିଥିବା ଜଗନ୍ନାଥ, କଳାର ଇତିହାସ ଉପରେ ଗବେଷଣା କରି ପି.ଏଚ୍.ଡି. ଡିଗ୍ରୀ ପ୍ରାପ୍ତ ଜଗନ୍ନାଥ, "ଦେଶ, କାଳ, ପାତ୍ର" ପରି ନୂଆ ରକମର ଐତିହାସିକ ଉପନ୍ୟାସ (ଯାହାର ଇଂରାଜୀ ଅନୁବାଦ 'A time else where') ର ଲେଖକ ଜଗନ୍ନାଥ, ବିଶ୍ୱ ବିଖ୍ୟାତ କବି ଡକ୍ଟର ଜୟନ୍ତ ମହାପାତ୍ର, catherine Clement ଗୁଲଜାର,Mulk Raj Anand, Arelene Zide, K. Sachidananda, ତସ୍‌ଲିମା ନାସରିନ୍ ପ୍ରଭୃତିଙ୍କ ସହିତ ଅନୁବାଦ ସାହିତ୍ୟ ଜରିଆରେ ଘନିଷ୍ଠ ସମ୍ପର୍କ ସୃଷ୍ଟି କରିଥିବା ଜଗନ୍ନାଥ, ଛୋଟ ଛୋଟ ପିଲାଙ୍କ ପାଇଁ ନୂଆ ରକମର କବିତାମାନଙ୍କୁ ନେଇ ଗଢି ଉଠିଥିବା ପୁସ୍ତକର କବି ଜଗନ୍ନାଥ ଏବଂ ଜାଣିଥିଲେ ବି ଲେଖି ପାରୁନଥିବା ଆହୁରି ଅସଂଖ୍ୟ ଜଗନ୍ନାଥମାନେ ସମସ୍ତେ ଜଣ ଗୋଟିଏ ଜଗନ୍ନାଥ ନା ଭିନ୍ନ ଭିନ୍ନ ଜଗନ୍ନାଥ ଏହା କଳିବା ମୋ ପକ୍ଷରେ ସମ୍ଭବ ହୋଇପାରିନାହିଁ।

ବହୁତ ଅତୀତକୁ ଯାଇ ମନେ ପଡେ ଡକ୍ଟର ହରେକୃଷ୍ଣ ମହତାବ୍ ଆରମ୍ଭ କରିଥିବା "ବିଷୁବ ମିଳନ" ଏବଂ ମୀନା ବଜାର। ଓଡ଼ିଶା ବାହାରୁ ପ୍ରଖ୍ୟାତ ସାହିତ୍ୟିକମାନଙ୍କୁ ଅତିଥି ଭାବରେ ଅଣା ଯାଇ ସାହିତ୍ୟିକମାନଙ୍କୁ 'ବିଷୁବ ମିଳନ' ପୁରସ୍କାର ପ୍ରଦାନ କରିବାର ପରମ୍ପରା ପ୍ରଥମ କରି ସୃଷ୍ଟି କରା ହୋଇଥିଲା। ବିଶିଷ୍ଟ ସହିତ୍ୟିକମାନଙ୍କ ଭିତରେ ବାଳକ ଜଗନ୍ନାଥ ମଧ ସ୍ଥାନ ପାଉଥିଲେ। ଜଗନ୍ନାଥଙ୍କ ଉପରେ ଲିଖିତ ମୋର କ୍ଷୁଦ୍ରଗଳ୍ପ "ବିଷୁବର ଲେଖକ" ସେତେବେଳର ବିଷୁବ ମିଳନ ବିଶେଷାଙ୍କରେ ପ୍ରକାଶ ପାଇଥିଲା।

୧୪ ବର୍ଷ ବୟସର ବାଳକ ଜଗନ୍ନାଥଙ୍କ 'ସଭ୍ୟତା' କବିତାର ଉଦ୍ଧୃତାଂଶ - 'ହଜିଯାଏ ଯନ୍ତ୍ରର ଚିତ୍କାରେ ହୃଦତଳେ କବିର କଳ୍ପନା ମରିଯାଏ ମରମର ତଳେ ସୁପ୍ତ କେତେ କଳାର ଚେତନା'।

(ଚିର ସଂଧାନ ପତ୍ରିକାରେ ପ୍ରକାଶିତ)

# ମୁଁ ତାଙ୍କୁ ଯେତିକି ଓ ଯେମିତି ଜାଣିଛି

(ଜଗନ୍ନାଥ ପ୍ରସାଦ ଦାସଙ୍କ ବିଷୟରେ କଥା କେଇପଦ)

ଗଣେଶ୍ୱର ଦାସ

ମୋ ଜୀବନର ଅନାବନା କାହାଣୀକୁ ଅତି ଅଭାବଗ୍ରସ୍ତ ଭାଷାରେ ପ୍ରକାଶ କରିବା ପରେ ଏବଂ ଆଙ୍କି ନଜାଣିଥିବା ମୁଁ ଆଙ୍କିଥିବା ମୋ ପରିବାରର ଛବିଟିଏ ତଥାକଥିତ କେତୋଟି କବିତା ମାଧ୍ୟମରେ ସଂକଳିତ କଲାପରେ ହଠାତ୍ ଦିନେ ଦିଲ୍ଲୀରୁ ସେ ଫୋନ୍‌ରେ ଅନୁରୋଧ କଲେ ସେଗୁଡ଼ିକ ତାଙ୍କ ନିକଟକୁ ପଠାଇବା ଲାଗି। ମୁଁ ପଠାଇବାକୁ ବାଧ୍ୟ ହେଲି। ପାଇବା ମାତ୍ରକେ ପୃଥିବୀର ଜଣେ ବିଶିଷ୍ଟ କବି, କଥାକାର, ଶିଳ୍ପୀ, କଳାକାର ହୋଇଥିଲେ ବି ସେ ତାଙ୍କ ମୂଲ୍ୟବାନ ସମୟ ବଦଳରେ ବହି ଦୁଇଟି ପଢିଚାଲିଲେ ଏବଂ ଖୁବ୍ କମ୍ ସମୟ ଭିତରେ ପଢାଶେଷ କରି ଫୋନ୍‌ରେ ମୋ ସାଙ୍ଗରେ କଥା ହେଲେ। ଅତୀତକୁ ତନ୍ନ ତନ୍ନ କରି ବଖାଣି ବସିଲେ ଏବଂ ମତେ ଅତୀତକୁ କିଛି ସମୟ ପାଇଁ ଫେରିଯିବାକୁ ପ୍ରକାରାନ୍ତରେ ବାଧ୍ୟ କଲେ। ଅତୀତର କଥା ସବୁ - ଅତୀତର ଭାଷା ମାନେ - ଭାଷାରେ ଗଢି ଉଠିଥିବା କାହାଣୀମାନେ- ସମସ୍ତେ ଜୀବନ୍ତ ହୋଇ ଉଠିଲେ। ସେ ଦିନ ରାତି ସାରା ମୁଁ ସେଇ ଅତୀତରେ ହିଁ ରହିଗଲି। ବର୍ତ୍ତମାନକୁ ଫେରିବା ସହଜ ହେଲା ନାହିଁ। ପିଲାଦିନେ ଯାହାକୁ କଳି ପାରୁନଥିଲି, ଏବେ ବି ସହଜରେ କଳି ପାରିଲି ନାହିଁ। ମାତ୍ର ୧୫/୧୬ ବର୍ଷ ବୟସରେ ଜଗନ୍ନାଥ ତାଙ୍କ 'ସଭ୍ୟତା' କବିତାରେ ଲେଖିଥିଲେ,

"ହଜିଯାଏ ଯନ୍ତ୍ରର ଚିତ୍କାରେ ହୃଦତଳେ କବିର କଳ୍ପନା
ମରିଯାଏ ମରମର ତଳେ ସୁପ୍ତ କେତେ କଳାର ଚେତନା"

କେମିତି କହିବି ମୋ ସାଙ୍ଗରେ (ମୁଁ ବୟସରେ ବଡ ହେଲେ ବି) କୈଶୋର ଅବସ୍ଥାରେ ଭାବ ପ୍ରବଣତାର ଗଭୀର ସମ୍ପର୍କ ରଖିଥିବା ଜଗନ୍ନାଥ, ପିଲାବେଳୁ ସାମାଜିକ ଅଧୋଗତିରେ ଚିନ୍ତିତ ହୋଇ ପରିବର୍ତ୍ତନ ଆଶାରେ ହୃଦୟରେ ସ୍ପନ୍ଦନ ସୃଷ୍ଟି କରିବା ପରି କବିତାମାନ ରଚିଥିବା ଜଗନ୍ନାଥ, ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ କୃତିତ୍ୱ ହାସଲ କରୁଥିବା ଶାରୀରିକ ସୌନ୍ଦର୍ଯ୍ୟରେ ଭରପୁର ଯୁବକ ଜଗନ୍ନାଥ, ଯୌବନକାଳର କବିତାମାନଙ୍କରୁ ସ୍ପଷ୍ଟ ହେଉଥିବା ବସ୍ତୁବାଦ ବିରୋଧୀ ବାଳକ ବସ୍ତୁବାଦ ଢାଞ୍ଚାରେ ଜୀବନ ଶୈଳୀକୁ ଗଢି ତୋଳିବା ପାଇଁ ପ୍ରଶାସନିକ ଦକ୍ଷତାର ଶୀର୍ଷରେ ପହଞ୍ଚିଥିବା ଆଇ.ଏ.ଏସ୍ ଜଗନ୍ନାଥ, ହଜି ଯାଇଥିବା "କବିର କଳ୍ପନା" ଏବଂ "ସୁପ୍ତ କଳାର ଚେତନା" କୁ ଜାଗ୍ରତ କରାଇବା ଲାଗି ଲୋଭନୀୟ ପ୍ରଶାସନିକ କ୍ଷେତ୍ରରୁ ନିଜକୁ ମୁକ୍ତ କରି ସାହିତ୍ୟ କଳାର ସୃଷ୍ଟିରେ ନିଜକୁ ଉତ୍ସର୍ଗ କରିଥିବା ଆଦର୍ଶ ଜଗନ୍ନାଥ ଏବଂ ଆଗକୁ ଆସୁଥିବା ଆହୁରି କେତେ ରକମର ଜଗନ୍ନାଥମାନେ ସମସ୍ତେ କ'ଣ ଗୋଟିଏ ଜଗନ୍ନାଥ ନା ଭିନ୍ନ ଭିନ୍ନ ଜଗନ୍ନାଥ - ଏହା କଳିବା ମୋ ପକ୍ଷରେ ସହଜ ହେଲା ନାହିଁ ଯଦିଓ ଆମ ଦୁହିଁଙ୍କର ପରିଚୟ ଅତି ଛୋଟ ଦିନରୁ। ସେ ଆମ ଘରେ ନଚେତ୍ ମୁଁ ତାଙ୍କ ଘରେ। ନିଜର କିଛି ପ୍ରତିଭା ନଥିଲେ ବି ପ୍ରତିଭାକୁ ଆଦର କରି ଜାଣିଥିଲି। ତେଣୁ ଦୁହିଁଙ୍କ ବନ୍ଧୁତ୍ୱର ରାସ୍ତାରେ କିଛି ବାଧା ଉପୁଜି ନଥିଲା। ଘର ଏକେବାରେ ପାଖାପାଖି। ମାଟ୍ରିକ୍ ପରୀକ୍ଷାର କୃତିତ୍ୱ ହିଁ ତାଙ୍କର ପ୍ରଥମ ପରିଚୟ ପ୍ରଦାନ କରିଥିଲା ମତେ। କାହିଁକି କେଜାଣି ଗୋଟିଏ ଦୃଷ୍ଟାନ୍ତରୁ ଅବୈଜ୍ଞାନିକ ଆରୋହାନୁମାନର ଆରୋହଲମ୍ଫନ ବଳରେ ତାଙ୍କର ସମସ୍ତ ଗୁଣର ଉତ୍କର୍ଷ ବିଷୟକ ସିଦ୍ଧାନ୍ତରେ ପହଞ୍ଚିଗଲି। ତର୍କ ଶାସ୍ତ୍ରର ନିୟମ ଲଂଘନ କରାଯାଇପାରିଥାଏ, କିନ୍ତୁ ହୃଦୟର ପବିତ୍ର ଅନାବିଳ ନିୟମ ଯେଉଁ ସିଦ୍ଧାନ୍ତରେ ପହଞ୍ଚାଇବ ତାହା ତର୍କଶାସ୍ତ୍ର ନିୟମଠାରୁ ଅଧିକ ଗ୍ରହଣଯୋଗ୍ୟ। ମୁଁ ତାଙ୍କୁ ଖୁବ୍ ଭଲ ପାଇଗଲି। ଛୋଟ ପିଲାଟିର ସବୁ ଗୁଣ ମତେ ଭଲ ଲାଗିଲା। ତାଙ୍କ ବାପା ଥିଲେ ବିଜ୍ଞ, ବିଦ୍ୱାନ୍ ଅଧ୍ୟାପକ ପଣ୍ଡିତ ଶ୍ରୀଧର ଦାସ। ବିଦ୍ୟା ଆହରଣ ଓ ବିଦ୍ୟାଦାନ ପ୍ରତି ଏତେ ଶ୍ରଦ୍ଧା, ଏତେ ଆକର୍ଷଣ - ମତେ ମନ୍ତ୍ରମୁଗ୍ଧ କରି ଦେଇଥିଲା। ଦାଣ୍ଡଘର ସାରା ବହି ଖାତା ବିଛା ହୋଇ ପଡିଥାଏ। ବହିମାନଙ୍କ ସାଙ୍ଗରେ ଅନେକ ସମୟ କାଟନ୍ତି ସାର୍। ଇଚ୍ଛା ହୁଏ ବହିପତ୍ର ସବୁ ସଜାଡି ଦିଅନ୍ତି। କିନ୍ତୁ ଜଗନ୍ନାଥ ବାରଣ କରନ୍ତି। କାରଣ ଥରେ ସଜାଡି ଦେଲେ ବାପାଙ୍କ ତପସ୍ୟାରେ ବିଘ୍ନ ସୃଷ୍ଟି ହେବ। ମୁଁ ଚୁପ୍ ରହି ସାଧକଙ୍କର ସାଧନାରେ ଆସ୍ତେଆସ୍ତେ ଆନନ୍ଦ ଉପଭୋଗ କରିବାକୁ ଲାଗିଲି। ବ୍ୟାକରଣ, ପାଠ୍ୟପୁସ୍ତକ, ଅନେକ ଅନୁବାଦ ପୁସ୍ତକ। କିଛି ସମ୍ପାଦନା ଏବଂ କିଛି ମୂଲ୍ୟବାନ୍ ଜୀବନୀ - ଏପରି ପ୍ରାୟ ୧୫୦ ବହି ରଚନା କରିଛନ୍ତି ସାର୍ ତାଙ୍କ ଜୀବ ଦଶାରେ। ସାଇକଲ୍‌ରେ ଯିବା ଆସିବା କରି, ଘର ଜଞ୍ଜାଳ ବୁଝି, କଲେଜ୍‌ରେ ପାଠପଢା ତଥା ଅନ୍ୟାନ୍ୟ ପ୍ରଶାସନିକ ଦାୟିତ୍ୱ ବହନ କରି ସାର୍ ସେଇ ଅଳିଆଗଦା ଭିତରେ ବସି କେତେ ଯେ ମୂଲ୍ୟବାନ ପୁସ୍ତକ ରଚନା କରି ପାରିଲେ, ଭାବିଲେ ଆଶ୍ଚର୍ଯ୍ୟ ଲାଗେ। ସବୁ ବୟସର ପିଲାମାନଙ୍କ

ପାଇଁ ଅମୂଲ୍ୟ ସମ୍ପଦ ରଖିଦେଇ ଯାଇଛନ୍ତି । ଜଗନ୍ନାଥଙ୍କ ଭଉଣୀ ବିଷ୍ଣୁପ୍ରିୟା ପାଠପଢା ସାଙ୍ଗକୁ ରୋଷେଇ ବାସ ଏବଂ ବାପା ଓ ଭାଇଙ୍କ ଯତ୍ନନେବାରେ ସର୍ବଦା କାର୍ଯ୍ୟବ୍ୟସ୍ତ ଥାଆନ୍ତି । ମନେ ହେଲା, ଧୀରେ ଧୀରେ ମୁଁ ସେ ପରିବାର ସାଙ୍ଗରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ମିଶାଇ ଦେବା ରାସ୍ତାରେ ପାଦ ଦେଉଛି । ସେ ରାସ୍ତାରେ ଏତେ ଫୁଲ ଥିଲା ଯେ ଚାଲିବାର କଷ୍ଟ ଜାଣି ପାରିଲି ନାହିଁ। କିଛି ବର୍ଷ ପରେ ମାଉସୀ (ଜଗନ୍ନାଥଙ୍କ ମା) ଓ ଜଗନ୍ନାଥଙ୍କ ସାନ ଦୁଇଭାଇ ବାଣପୁର ଛାଡି କଟକ ଆସିଲେ । ମାଉସୀ ଅତି ସ୍ନେହୀ, ସ୍ନେହରେ ବନ୍ଧା ହୋଇଗଲି ମୁଁ। ଛୋଟ ଭାଇ ଦୁଇଟି ଭବିଷ୍ୟତରେ ଆଲଏଡ୍ ସର୍ଭିସ୍‌ରେ ଯୋଗ ଦେଇଥିବା ଏବଂ ସେଥିରୁ ଅବସର ଗ୍ରହଣ କରିଥିବା କୃଷ୍ଣ ପ୍ରସାଦ (କୁନ), ଜଳ ସମ୍ପଦ ବିଭାଗର ଇଞ୍ଜିନିୟର-ଇନ୍-ଚିଫ୍ ଭାବରେ ଅବସର ନେଇଥିବା ରଘୁନାଥ ପ୍ରସାଦ (ରଘୁ) । ସାର୍ ସନ୍ଧ୍ୟାରେ ବୁଲି ଗଲାବେଳେ ମତେ ଓ ଜଗନ୍ନାଥଙ୍କୁ ସାଙ୍ଗରେ ନିଅନ୍ତି । ଗପ ଛଳରେ କେତେ ପାଠ ଆଲୋଚନା କରିଯାଆନ୍ତି । ସାର୍‌ଙ୍କୁ ବେଶୀ ବେଶୀ ଜାଣୁଥାଏ। ଜଗନ୍ନାଥଙ୍କୁ ଯେତେ ଜାଣିଲେ ବି ସେତେ ଅଜଣା ରହିଯାଉଥିବା ପରି ମନେ ହେଉଥାଏ। ସେ ଦିନ ତାଙ୍କ ଦାଣ୍ଡ ଝରକା ବାଟେ ଅନାଇ ଦେଖିଲି ସେ କ'ଣ ଲେଖିବାରେ ବ୍ୟସ୍ତ। କ'ଣ ଲେଖୁଛି ଜାଣିପାରିଲି ନାହିଁ। ଘରକୁ ଫେରି ଆସିଲି। କିଛି ସମୟ ପରେ ସେ ମୋ ପାଖକୁ ଆସି ନିଜେ ଲେଖିଥିବା ଗୋଟିଏ କବିତା ଦେଖାଇଲେ। ଅନେକ ଦିନ ପର୍ଯ୍ୟନ୍ତ ସେ କବିତାଟିକୁ ସାଇତି ରଖିଥିଲି, କିନ୍ତୁ ଜୀବନର ଝଡ ଝଞ୍ଜା ଭିତରେ ସେ ମୂଲ୍ୟବାନ ସମ୍ପଦଟିକୁ ହରାଇ ବସିଲି। ପରେ ପରେ ବହୁତ କବିତା ସେ ଲେଖୁଥିଲେ ଏବଂ ମୁଁ ପଢୁଥିଲି। ସେ କବିତା ଗୁଡିକ ପଢିବାରେ ବହୁତ ଆନନ୍ଦ ମିଳୁଥିଲା। ଯେଉଁ କବିତା ଉନ୍ମାଦନା ସୃଷ୍ଟି କରେ, ଯେଉଁ କବିତାକୁ ବଡ ପାଟିରେ ପଢିଲେ ଦେହରେ ଶିହରଣ ଖେଳିଯାଏ, ଅର୍ଥରେ କ୍ଲିଷ୍ଟତା ନଥାଏ, ସେମିତି କବିତାକୁ ମୁଁ ମୂଲ୍ୟ ଦେଉଥିଲି। ତାଙ୍କ ରଚିତ ଚିଲିକା କବିତାଟି ଠିକ୍ ସେହିପରି। ଏବେ ବି ମନେ ପଡିଯାଏ କବିତାର କିଛି କିଛି ଧାଡି

ଧୂସର ମରୁର ବୁକେ ଆଶାମୟୀ ତୁମେ ମରୀଚିକା
ସପନର ରୂପାୟକ - ତୁମେ ଆଗୋ ରୂପସୀ ଚିଲିକା

ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ବାର୍ଷିକ ବିଷୁବ ମିଳନର ଆୟୋଜନ କରୁଥିଲେ ଡକ୍ଟର ହରେକୃଷ୍ଣ ମହତାବ। ଓଡ଼ିଶା ବାହାରୁ ପ୍ରଖ୍ୟାତ ସାହିତ୍ୟିକମାନଙ୍କୁ ଅତିଥି କରି ଆଣା ଯାଉଥିଲା। ସାହିତ୍ୟିକମାନଙ୍କୁ ନିଜ ନିଜର ସାଧନା ପାଇଁ ସମ୍ମାନିତ ଓ ପୁରସ୍କୃତ କରିବାର ପରମ୍ପରା ଓଡ଼ିଶାରେ ପ୍ରଥମ କରି ସୃଷ୍ଟି କରାଗଲା ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ। ବିଶିଷ୍ଟ ବକ୍ତା ମାନଙ୍କ ଭିତରେ ବାଳକ ଜଗନ୍ନାଥ ମଧ ସ୍ଥାନ ପାଉଥିଲେ। ପିଲାଦିନୁ ସେଇ ଅଭ୍ୟାସ - ଅଳ୍ପ କହିବେ, ଭଲ କହିବେ। ତାଙ୍କର ଭାଷଣ, ସ୍ୱରଚିତ କବିତା ଆବୃତ୍ତ। ଯୁଦ୍ର ଗଳ୍ପ ପ୍ରଭୃତି ପାଇଁ ପୁରସ୍କାର ଲାଭ ଇତ୍ୟାଦିରେ ମୁଁ ଆଶ୍ଚର୍ଯ୍ୟ ହୋଇ ପଡୁଥିଲି। କି ଆନନ୍ଦ, କି ଉତ୍ସାହ ସେତେବେଳେ, ପ୍ରସିଦ୍ଧ ସାହିତ୍ୟିକମାନଙ୍କ ଗହଣରେ ସେ ବି ପୁରସ୍କୃତ ହେଉଥିଲେ। ସେ ଥିଲେ ମୋ ପାଇଁ ଉତ୍ସାହର ଉତ୍ସ। ମୁଁ ବି କିଛି କିଛି ଲେଖାଲେଖି କଲି। ଜଗନ୍ନାଥଙ୍କ ଉପରେ ଲିଖିତ ମୋର କ୍ଷୁଦ୍ର ଗଳ୍ପ 'ବିଷୁବର ଲେଖକ' ବିଷୁବ ମିଳନ ବିଶେଷାଙ୍କରେ ପ୍ରକାଶ ପାଇଥିଲା। ମୀନାବଜାରର ବିଶେଷାଙ୍କ ତାଙ୍କର ଓ ମୋର ଲେଖାରେ ପୂର୍ଣ୍ଣ ହୋଇଥାଏ।

ଆମ ଘରକୁ 'ସମାଜ' ନିୟମିତ ଭାବରେ ଆସୁଥିଲେ ବି ଜଗନ୍ନାଥଙ୍କର କବିତାମାନ ପ୍ରକାଶ ପାଉଥିବା 'ପ୍ରଜାତନ୍ତ୍ର' ପ୍ରତି ମୋର ଆଗ୍ରହ ବଢିଲା। ଏପରିକି ୧୯୫୩ ମସିହା ଜୁଲାଇ ମାସ ବେଳକୁ ମୁଁ ଏମ୍.ଏ. ପଢିବା ଲାଗି ବନାରସ୍ ଗଲାବେଳେ ବନାରସ୍‌କୁ ନିୟମିତ ପ୍ରଜାତନ୍ତ୍ର ପଠାଇବା ଲାଗି ବନ୍ଦୋବସ୍ତ କରିଯାଇଥାଏ। ୧୯୫୩ ମସିହାରେ ଜଗନ୍ନାଥଙ୍କର ଅନେକ ଗୁଡିଏ କବିତା ପ୍ରଜାତନ୍ତ୍ରରେ ପ୍ରକାଶ ପାଇଥାଏ।

ଶାରୀରିକ ଅସୁସ୍ଥତା ଏବଂ ତତ୍‌ଜନିତ ପାଠ ପଢାରେ କ୍ଷତି ମୋ ମନବଳକୁ ଭାଙ୍ଗି ଦେଇଥାଏ। ଏମିତି ବି ପ୍ରକୃତି ଗତ ମୁଁ ନୈରାଶ୍ୟବାଦୀ ଥିଲି। ଜଗନ୍ନାଥ ମତେ ବହୁତ ବୁଝାନ୍ତି। ବଞ୍ଚି ରହିବାର ଆଲୋକକୁ ଦେଖାଇବା ପାଇଁ ଚେଷ୍ଟା କରନ୍ତି। ଠିକ୍ ସେତିକିବେଳେ ପ୍ରଜାତନ୍ତ୍ରରେ ପ୍ରକାଶିତ ତାଙ୍କର କବିତା 'କରନାଇଁ ଆଉ ଶୋଚନା' ମୋ ମନରେ କିଛିଟା ଆଶାର ସଞ୍ଚାର କରିପାରିଥିଲା। ମୁଁ ଥର ଥରକରି ସେ କବିତାକୁ ପଢୁଥାଏ। କବିତାର ପ୍ରତ୍ୟେକଟି ଧାଡି ମୋ ପାଇଁ ଶାନ୍ତିର ବାର୍ତ୍ତା ପହଞ୍ଚାଉଥାଏ।

"ମରଣଭୀତ ହେ ଆଖି ଖୋଲି ଦେଖ ଜୀବନ ସେ, ନୁହେଁ ମରଣ
ହତାଶାର ତଳେ ଆଶାର ରହିଛି ସୂଚନା
ବେଦନାସିକ୍ତ ବନ୍ଧୁ ହେ ତେଣୁ କରନାହିଁ ଆଉ ଶୋଚନା"

ସେଇ ୧୯୫୩ ମସିହା ଜୁନ୍ ମାସରେ ପ୍ରଜାତନ୍ତ୍ରରେ ପ୍ରକାଶ ପାଇଲା ତାଙ୍କର କବିତା 'ବାସନା'। ସେତେବେଳେ ମୋର ମନେ ହେଉଥିଲା ସତେ ଯେପରି ତାଙ୍କ କବିତା ସବୁ ମୋ ପାଇଁ ପ୍ରଯୁଜ୍ୟ। ସେ ଉତ୍ସାହଭରା ପଦ ସବୁ ମନେ ପଡିଯାଏ।

"କାନ୍ଦନା ଆଉ ବନ୍ଦୀ ହେ ଅଭିଳାଷ
ପୋଛିଦିଅ ତମେ, ପୋଛିଦିଅ ମନୁ ବ୍ୟଥା
ଭୁଲିଯାଅ ଯେତେ ହୃଦୟର ଆକୁଳତା
ଭୁଲିଯାଆ ତମେ ନିୟତିର ଉପହାସ"

ପକ୍ଷୀଟିର ବ୍ୟାକୁଳ ଦୁଇଟି ଆଖି କାହାର ସନ୍ଧାନରେ ? ଏତେ କମ୍ ବୟସରେ ବି ଜଗନ୍ନାଥ ଗୁଢ ଦର୍ଶନ ତତ୍ତ୍ୱ ବଖାଣି ବସିଛନ୍ତି 'ସଂଧାନ' କବିତାରେ

"ପକ୍ଷୀ ଖୋଜଇ କ୍ଷୁଦ୍ର ତାହାର ନୀଡ଼େ
ଚାହିଁରହେ ଯହିଁ ବ୍ୟାକୁଳ ଦୁଇଟି ଆଖି
ଗର୍ଜୁଛି ଝଡ-ବୃଷ୍ଟି ଝରୁଛି ଧାରେ
ଅତି ଦୂରେ ତାର ଚକ୍ଷୁ ରହିଛି ଲାଖି"।

ଜଗନ୍ନାଥ ଓ ମୁଁ ଧବଳେଶ୍ୱର ପୀଠରେ ଶଶିଭୂଷଣ ରାୟ ( କବିବର ରାଧାନାଥ ରାୟଙ୍କ ସୁଯୋଗ୍ୟ ପୁତ୍ର)ଙ୍କୁ ସାହିତ୍ୟ ସାଧନାରେ ମଗ୍ନଥିବା ଅବସ୍ଥାରେ ଦେଖିଛୁ। ଆମ ଘର ପାଖ ଅନାଥ ଆଶ୍ରମ ବାରଣ୍ଡାରେ ଗୋଟିଏ ସ୍ତ୍ରୀଲୋକ ପାଗଳୀ ଅବସ୍ଥାରେ ବସି ରହୁଥାଏ। ଲୋକେ କହୁଥିଲେ ଏକଦା ସେ ଥିଲା ଶଶିଭୂଷଣଙ୍କ କବିତ୍ୱର ଉତ୍ସ। ମୃତ୍ୟୁକୁ ଅପେକ୍ଷା କରି ଅସହାୟ ଅବସ୍ଥାରେ ଥାଆନ୍ତି ମହାନ୍ କବି ଶଶିଭୂଷଣ। ଏଇ ଅବସ୍ଥାରେ ବାଳକ ଜଗନ୍ନାଥ ଲେଖିଥିଲେ 'ଶଶିଭୂଷଣ' କବିତାଟି ୧୯୫୩ ମସିହାରେ। କବିଙ୍କର ଦେହାନ୍ତ ହୋଇଥିଲା ୪.୯.୧୯୫୩ ତାରିଖରେ। ଠିକ୍ ତା ପୂର୍ବରୁ ଜଗନ୍ନାଥ ଲେଖିଥିଲେ କବିତାଟି।

"ସଭ୍ୟତା ଯାର ଅମର ଦାନରେ ଦେଇନାହିଁ ସମ୍ମାନ
ସମାଜ ଯାହାର ପୂଜା କରିନାହିଁ ସୁବିପୁଳ ଅବଦାନ
ଅସହାୟ କରି ଏ ଜାତି ଯାହାରେ କରିଛି ନିର୍ବାସିତ
ଭୁଲି ଯାଇଅଛି ଯାହାର ନିଳୟ ଶାଶ୍ୱତ ବାଣୀ-ପୀଠ,
ନିର୍ଜନେ ବସି ଆଜି ସେ ଶିଳ୍ପୀ ଦେଖଇ ମରଣ ପଥ
କର୍ମ ବହୁଳ ଜୀବନେ ତାହାର ମରଣର କରାଘାତ
ମହୀୟାନ ସେ ଯେ ତାହାରି ମହାନ୍ ପଦର ପରଶ ବାଜି
ନିଭୃତ ସେଇ ନିଳୟ ଜାତିର ତୀର୍ଥ ହୋଇଛି ଆଜି।"

ଯୁବକ ପ୍ରାଣ ସମାଜର ଅବରୋଧ, ପ୍ରତିବନ୍ଧକ ପ୍ରଭୃତିରେ ବିଦ୍ରୋହୀ ହୋଇଉଠେ। ମୁକ୍ତି ପାଇଁ ବିପ୍ଳବର ଆବଶ୍ୟକ। ଗୋଟିଏ ନୂତନ ପୃଥିବୀ ସୃଷ୍ଟି ହେବା ଲାଗି ସଂଗ୍ରାମ ଲୋଡା, ଧ୍ୱଂସ ଲୋଡା। ଠିକ୍ ବର୍ଟାଣ୍ଡ ରସେଲ୍ ଯେପରି ସବୁ ମତବାଦକୁ ସମାଲୋଚନା କରି ଶେଷରେ ଧ୍ୱଂସର ସ୍ୱପ୍ନ ଦେଖିଥିଲେ ଏବଂ ଆଶା କରିଥିଲେ ଧ୍ୱଂସାବଶେଷରୁ ସୃଷ୍ଟି ହେବ ଏକ ନୂତନ, ଶ୍ରେଷ୍ଠ, ପରିପୂର୍ଣ୍ଣ, ସମୃଦ୍ଧଶାଳୀ ଦୁନିଆ। ଜଗନ୍ନାଥଙ୍କର ସେଇ ୧୯୫୩ ମସିହା (ମାତ୍ର ୧୭ବର୍ଷ ବୟସରେ) ଲେଖିଥିବା 'ଅବରୋଧ' କବିତାରେ ତାଙ୍କ ସ୍ୱପ୍ନର ଆଭାସ ଦେଇଛନ୍ତି।

"ଧ୍ୱଂସର ମୁହିଁ କବିତା ଲେଖଇ ତେଣୁ
ବିପ୍ଳବର ମୁଁ କରେ ଆଜି ଜୟଗାନ
ଜୀବନ ମୋହର ବନ୍ଧନ ସହେ ଯେଣୁ

ସନ୍ଧାନ କରେ ମୁକ୍ତିର ସମ୍ମାନ।"

ଜଗନ୍ନାଥ ପିଲାଦିନୁ ଆଶାବାଦୀ। ଜୀବନ କାରାଗାରରେ ବନ୍ଦୀ ହୋଇ ରହିବାକୁ ଚାହୁଁନଥିଲେ। ଅନ୍ଧାର ରହିବ ନାହିଁ। ଆଲୋକର ସନ୍ଧାନରେ ତାଙ୍କ ମନ ଉତ୍‌ଫୁଲ୍ଲ ହୋଇ ଉଠୁଥିଲା। 'ଆତ୍ମପ୍ରକାଶ' କବିତାରେ ଜଗନ୍ନାଥ ନବ-ଆଲୋକର ଅଭ୍ୟୁଦୟରେ ଏକ ଉଦ୍ଭାସିତ ଧରଣୀର ସ୍ୱପ୍ନ ଦେଖୁଛନ୍ତି।

"କାରାଗାରେ କିଏ ବନ୍ଦୀ କରିବ ମତେ
କିଏ ବାଧା ଦେବ ଧୂମକେତୁ ଗତି ପଥେ
ନବ-ଆଲୋକର ହେଲା ଯେ ଅଭ୍ୟୁଦୟ
ସାରା ଧରଣୀ ସେ ଆଲୋକେ ଉଦ୍ଭାସିତ
କାହିଁକି ମୁଁ ଆଉ ଲୁଚିବି ତେବେରେ କହ"।

ପିଲାଦିନର ଆହୁରି ଅନେକ କବିତା ଜଗନ୍ନାଥଙ୍କର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଥିଲା। ଦୁଃସ୍ଥ ସମାଜ, ଗୁଣ୍ଡା ରାଜନୀତି, ଦାରିଦ୍ର୍ୟ, ତଥାକଥିତ ଶିକ୍ଷା ଓ ସଭ୍ୟତା - ଏ ସବୁଥିରେ ବାଳକ ଜଗନ୍ନାଥଙ୍କର ହୃଦୟ ବ୍ୟଥିତ ହୋଇ ଉଠୁଥିଲା। ସଭ୍ୟତା, ରାଜନୀତି, ମହାଜାତୀୟତା ଏବଂ ରାଜନୈତିକ ମତବାଦ ସବୁର ତୀବ୍ର ସମାଲୋଚନା କରି ଜନତାର କଣ୍ଠସ୍ୱର ପ୍ରକାଶ କରିବାରେ ବ୍ୟଗ୍ର ହୋଇପଡ଼ି ସେ ଲେଖିଛନ୍ତି ତାଙ୍କ 'ଛୋଟକଥା' କବିତାଟିରେ,

ନିଃସ୍ୱ ବୁଝେ ନା ମତବାଦ କଥା
ଲୋଡା ତାର ଖାଲି ଲୁଣ ଭାତ
ଦୁନିଆର ତାର ଦାବୀ ଅଛି ଯେତେ
ଯେତେ ଅଭିଯୋଗ
ଜଣାଏ ସେ କରି ଯୋଡ଼ ହାତ।

"ଆଜି ତାକୁ ବଞ୍ଚିବାକୁ ଦିଅ" କବିତାରେ ନବଜାତ ଶିଶୁର ଭବିଷ୍ୟତ ଜୀବନ ପାଇଁ ବ୍ୟାକୁଳ ହୋଇ ଯୁବକ ଜଗନ୍ନାଥ ଲେଖିଥିଲେ

"ଆଜି ତାର ନଗ୍ନ ସରଳତା
ଦୂରକରେ ଶତାବ୍ଦୀର ଯେତେ ଭ୍ରାନ୍ତି, ଯେତେକ ବ୍ୟର୍ଥତା
ଅତୀତର କୁସଂସ୍କାର ଲିଭିଯାଏ ବିସ୍ମୃତିର ଗଭୀର ଛାୟାରେ
ସେ ଶିଶୁର ଦରୋଟି କଥାରେ"।

ଯୁବକ ଜଗନ୍ନାଥଙ୍କର ଅସୀମ ଆତ୍ମବିଶ୍ୱାସ ତାଙ୍କୁ କଠିନ ପରିଶ୍ରମ କରିବାକୁ ସାହାସ ଓ ଶକ୍ତି ଯୋଗାଇଛି। ତାଙ୍କର 'ମୋର ଦୁଇ ହାତରେ' କବିତା ଜରିଆରେ ବ୍ୟକ୍ତି ବିଶେଷଙ୍କୁ ଆହ୍ୱାନ ଦେଇଛନ୍ତି ନିଜ ଦୁଇ ହାତରେ ଶକ୍ତି ଉପରେ ଭରସା ରଖିବା ଲାଗି। ଏହି କବିତାଟିରେ ଧ୍ୱନିର ଅନୁସରଣରେ ପଦ ଗଠନ କରାହୋଇଛି ବୋଧ ହୁଏ। ସେ ବୟସରେ ବି ଜଗନ୍ନାଥ Onomatopoeia (Sound giving the sense) ର ପ୍ରୟୋଗ କରି ପାରୁଥିଲେ।

"ପଥର ପିଠିରେ ବୋହି ହୋଇଚି ମୁଁ କୂର୍ମ
ତମ ଲାଗି ଗଢ଼ିଛି ମୁଁ ବିଳାସର ହର୍ମ୍ୟ
ମୁଁ ହୋଇଛି ଯନ୍ତ୍ର
ମତେ ତମେ ଶିଖାଇଚ କର୍ମର ମନ୍ତ୍ର
ଏ ଦେହ ହୋଇଚି ମୋର ଲୌହର ବର୍ମ।"

ରେଭେନ୍ସା କଲେଜ୍‌ରେ ବି.ଏ ପଢ଼ିବା ସମୟରେ ମୁଁ ଦୀର୍ଘ ୪/୫ ମାସ ଶଯ୍ୟାଶାୟୀ ହୋଇଗଲି। ସେତେବେଳେ ଉନ୍ନତ ମାନର ଚିକିତ୍ସା ସୁବିଧା ନଥିଲା। ପାଠରେ ମୋର ବହୁତ କ୍ଷତି ହେଲା। ମୋର ଏ ଦୁର୍ଦ୍ଦିନରେ ଦୁଇଟି ଅନ୍ତରଙ୍ଗ ବନ୍ଧୁ ମୋର ସହାୟ ହୋଇଥିଲେ। ମୋର ସହପାଠୀ ଗୌରକିଶୋର ଦାସ (ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ପ୍ରଫେସର ଓ ପୂର୍ବତନ କୁଳପତି) ଏବଂ ଅନୁଜ ପ୍ରାୟ ଜଗନ୍ନାଥ ପ୍ରସାଦ ଦାସ। ଦର୍ଶନ ଶାସ୍ତ୍ରରେ ଏମ୍.ଏ. ପଢ଼ିବା ଲାଗି ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ

ଯିବା ସମୟରେ ଜଗନ୍ନାଥ ସାନ ହେଲେ ବି ବହୁତ ଉତ୍ସାହ ଦେଉଥାଆନ୍ତି। ଷ୍ଟେସନ୍ ପର୍ଯ୍ୟନ୍ତ ଯାଇ ମତେ ବିଦାୟ ଦେଉଥିଲେ। ଟ୍ରେନ୍ ଛାଡିବା ସମୟରେ ପରିବାର ଲୋକଙ୍କୁ ଛାଡି ଯାଉଥାଏ ବୋଲି ଯେତେ ଦୁଃଖ ନଥାଏ, ଜଗନ୍ନାଥଙ୍କୁ ଛାଡିଯାଉଥାଏ ବୋଲି ବେଶୀ ଦୁଃଖ ଲାଗୁଥାଏ। ବନାରସରେପଢୁଥିବା ସମୟରେ ବହୁତ ଚିଠି ତାଙ୍କଠାରୁ ପାଏ, କିନ୍ତୁ ସେ ଲେଖା ଭିତରେ ତାଙ୍କର ସ୍ନେହ ଭରପୁର ଥାଏ। ଛୁଟିରେ ଘରକୁ ଆସିଲେ ଆଗ ତାଙ୍କ ଘରକୁ ଯାଇ ସେ ଲେଖିଥିବା କବିତା ବା କ୍ଷୁଦ୍ରଗଳ୍ପ ପଢ଼େ। ମୁଁ ବନାରସରୁ ପାଠ ସାରି ଫେରିଲି। ସେ ଏମ୍.ଏ. ପଢିବା ଲାଗି ଆହ୍ଲାବାଦ ଗଲେ। ମୁଁ ତାଙ୍କ ସାଙ୍ଗରେ ଭାବପ୍ରବଣତାରେ ଏତେ ଯୋଡ଼ି ହୋଇଯାଇଥିଲି ଯେ ସେ ନଥିବାରୁ ମତେ ଲେଖାଲେଖି କରିବାକୁ ବିଶେଷ ଇଚ୍ଛା ହେଉନଥାଏ। ତଥାପି ଅନେକ ଗୁଡିଏ ମନସ୍ତାତ୍ତ୍ୱିକ ଏବଂ ସମାଜତାତ୍ତ୍ୱିକ ପ୍ରବନ୍ଧ ଏବଂ କିଛି କ୍ଷୁଦ୍ର ଗଳ୍ପ ପ୍ରକାଶ ପାଉଥାଏ ପ୍ରଜାତନ୍ତ୍ର ଓ ସମାଜରେ। ଉକ୍ତ ପ୍ରବନ୍ଧ ସବୁ ପାଇଁ ପରବର୍ଷ ବିଷୁବ ମିଳନରେ ମତେ ପୁରସ୍କୃତ କରାଯାଇଥିଲା କିନ୍ତୁ ମୁଁ ମଣିଲି ଯେ କେବଳ ଜଗନ୍ନାଥଙ୍କ ଉତ୍ସାହ ପାଇଁ ମୁଁ ଲେଖିଲି ଏବଂ ପୁରସ୍କୃତ ହେଲି। ଯେତେବେଳେ ଦେଖାହୁଏ ସେ ତାଙ୍କ ଆଲ୍‌ହାବାଦ୍ ଅଭିଜ୍ଞତା (କିଛିଟା ଗୋପନୀୟ ଥିଲେ ବି) ମୋ ଆଗରେ ବଖାଣନ୍ତି। ମତେ ବହୁତ ଖୁସିଲାଗେ ଶୁଣିବା ଲାଗି।

ଜଗନ୍ନାଥଙ୍କର ଆଇ.ଏ.ଏସ୍. ପାଇବା ସମୟରେ ବହୁତ ଆନନ୍ଦିତ ହୋଇଥିଲି ମୁଁ। ତାଙ୍କର ପ୍ରଶାସନିକ ସଫଳତାରେ ସମସ୍ତେ ସନ୍ତୁଷ୍ଟ ଥାଆନ୍ତି। କିଛି ସେକ୍ରେଟାରୀ ଏବଂ ମନ୍ତ୍ରୀଙ୍କ ଠାରୁ ତାଙ୍କର ବିଚକ୍ଷଣତା ତଥା ପ୍ରତ୍ୟୁତ୍ପନ୍ନ ମତି ବିଷୟରେ ଶୁଣି ବହୁତ ଆତ୍ମସନ୍ତୋଷ ଲାଭ କରୁଥାଏ। କିନ୍ତୁ ଏତେ ସରକାରୀ ଦାୟିତ୍ୱ ତୁଲାଇବା ଭିତରେ ସାହିତ୍ୟ ଓ କଳାକୃତି ଦିଗରେ ବିଶେଷ ଅବହେଳା କରୁନଥାନ୍ତି। ସମାଜଠାରୁ ସାହିତ୍ୟ ବିଚ୍ଛିନ୍ନ ହୋଇ ରହିପାରିବ ନାହିଁ। ସେଇ ଦୃଷ୍ଟିରୁ ତାଙ୍କର କବିତାର ଢାଞ୍ଚା ବଦଳିଗଲା। ସୀତାକାନ୍ତ ମହାପାତ୍ର, ରମାକାନ୍ତ ରଥ ପ୍ରଭୃତିଙ୍କ ସମକକ୍ଷ ହୋଇ ଲେଖିଲେ ଆଧୁନିକ କବିତା। ବହୁତ ପ୍ରଶଂସିତ ହେଲେ। 'ପ୍ରଥମ ପୁରୁଷ' ପ୍ରକାଶ ପାଇଲା। ସାହିତ୍ୟ ଆକାଶରେ ଚହଳ ସୃଷ୍ଟି ହେଲା। ୨୦ ବର୍ଷ ବ୍ୟବଧାନରେ 'ଆହ୍ନିକ' କବିତା ସଂକଳନ ତାଙ୍କୁ ସାହିତ୍ୟ ଏକାଡେମୀ ପୁରସ୍କାର ଆଣି ଦେଇଥିଲା ଯଦିଓ ତାହା ସେ ଗ୍ରହଣ କରିନଥିଲେ। କିନ୍ତୁ ମୋର ମନେ ହେଲା ମୁଁ ଯେପରି ତାଙ୍କୁ କବିତା ଦୁନିଆରୁ ହରାଇ ବସିଲି। ଏ ସମୟର କବିତାମାନଙ୍କୁ ମୁଁ ବୁଝିପାରିଲି ନାହିଁ ନିଜ ଜ୍ଞାନ ଓ ଅଭିଜ୍ଞତାର ଅଭାବରୁ। ଠିକ୍ ସେହିପରି ତାଙ୍କ ପରି ପୃଥିବୀର ଜଣେ ବିଶିଷ୍ଟ କଳାକାରଙ୍କୁ ବୁଝିବା ମୋ ପକ୍ଷରେ ଏତେ ସହଜ ନଥିଲା କିନ୍ତୁ କ୍ଷୁଦ୍ରଗଳ୍ପ ଏବଂ ନାଟକ ଜଗତରେ ମୁଁ ତାଙ୍କୁ ମୋ ସୀମିତ ଜ୍ଞାନ ଓ ବୁଦ୍ଧି ପ୍ରୟୋଗରେ ପାଖରେ ରଖି ପାରିଥିଲି। ପଢିଲି, କିଛିଟା ବୁଝିଲି।

ପ୍ରାୟ ୫ବର୍ଷ ତଳେ ତାଙ୍କର 'ଶେଷ ପର୍ଯ୍ୟନ୍ତ' ବହିର ଗୋଟିଏ ଗଳ୍ପ 'ସ୍ୱାତୀ ଆସିବ' ନବଲିପି ପତ୍ରିକାରେ ପ୍ରକାଶ ପାଇଥିଲା। ଗପଟି ମତେ ବହୁତ ଭଲ ଲାଗିଥିଲା। ସମୀକ୍ଷା କରିବାର ଯୋଗ୍ୟତା ମୋର ନାହିଁ। ଗପଟି ପଢି ମନେ ହେଲା ସତେ ଯେପରି ତାଙ୍କ ଜୀବନର କିଛି ଘଟଣାର ପ୍ରଭାବରେ ପ୍ରଭାବିତ ହୋଇଛି ଗଳ୍ପଟି। ଆହୁରି ବି ମନେ ହେଲା ସତେ ଯେପରି ସେ ଘଟଣା ସାଙ୍ଗରେ ମୁଁ ପରିଚିତ। ଗଳ୍ପରେ କେତୋଟି ବିଷୟ ଲକ୍ଷ୍ୟକଲି। ସହପାଠିନୀ ସ୍ୱାତୀ - ବହୁ ବର୍ଷପରେ ଟ୍ରେନ୍‌ରେ ଅକସ୍ମାତ୍ ସ୍ୱାତୀ ସାଙ୍ଗରେ ଦେଖା - ସ୍ୱାତୀର ଚିଠି - ଚିଠିର ବିଷୟବସ୍ତୁ ସୃଷ୍ଟି କରିଥିବା ଆଶାର ବିଭିନ୍ନ ସ୍ତର - ଆଶାମାନେ ସୃଷ୍ଟି କରୁଥିବା ଆଶଙ୍କା। ("ପୁଣି ଭାବୁଥିଲା, ସ୍ୱାତୀ ନୁହେଁ, ସ୍ୱାତୀର ଚିଠି ଆସି ପହଞ୍ଚିବ ସେ ଆସୁନାହିଁ ବୋଲି")। .... ଏକା ଘରଟିରେ ବସି ରହି ସ୍ୱାତୀ ଆସିବାର ସତ୍ୟକୁ ଅପେକ୍ଷା କରିବାକୁ ତାର ସାହାସ ହେଉନଥିଲା। ଶେଷରେ ଆଶା ଓ ଆଶଙ୍କା ଉଭୟଙ୍କୁ ଆଡେଇ ଦେଇ ଭାସ୍କର ନିଜେ ନେଇଥିବା ପଦକ୍ଷେପ - ସବୁ ଦ୍ୱନ୍ଦ୍ୱର ଏକ ସରଳ ସମାଧାନ। (ସେ ଚିଠି ଲେଖିଲେ, "ମୁଁ ଦୁଃଖିତ ଯେ ମତେ ଜରୁରୀ କାମରେ ବାହାରକୁ ଯିବାକୁ ପଡୁଛି"। କାଗଜଟିକୁ ଆଣି ସେ ବାହାର କବାଟରେ ଲଗାଇଲା ଏବଂ ତାଲା ପକାଇ ଚଞ୍ଚଳ ପାଦରେ ରାସ୍ତା ଉପରକୁ ଓହ୍ଲାଇଲା।)

ଜଗନ୍ନାଥଙ୍କୁ ୫୦ବର୍ଷ ପାଖାପାଖି ହେଲାବେଳକୁ କ୍ଷୁଦ୍ର ଗଳ୍ପ ସଂକଳନ "ଆମେ ଯେଉଁମାନେ" ପ୍ରକାଶ ପାଇଥିଲା। 'ବେଶ୍ୟା' ଗଳ୍ପଟିରେ (ଯାହାର ଇଂରାଜୀ ଅନୁବାଦ ୧୯୯୫ରେ ପ୍ରକାଶ ପାଇଛି) ପ୍ରମୋଦ ଚରିତ୍ରର କେତେ ରକମ ଗୁଣ ପାଠକମାନଙ୍କ ପାଖରେ ପ୍ରକାଶ କରିବା ପରେ ଶେଷକୁ ତାରି ମୁହଁରେ ବେଶ୍ୟାଟିର ଭଲ ଗୁଣ ଦର୍ଶାଇବାକୁ ଯାଉ ଯାଉ ସଂଶୋଧିତ ମନ୍ତବ୍ୟରେ ତାକୁ ଆକ୍ଷେପ କରି କୁହାଇଛନ୍ତି, "ଯାହାର ଚରିତ୍ର ଠିକ୍ ନାହିଁ ତାର ଭଲ ସଭାବ ହେବ ବା କିପରି ?" ଅନେକ ସମସ୍ୟା ସାଙ୍ଗରେ ଜଡିତ ବିରାଟ ଉକ୍ତିଟିଏ। ଏହାର ବିଭିନ୍ନ ଦିଗ ଆଲୋଚନା କଲେ ଅନେକ ମତବାଦ ସ୍ଥାନ ପାଇବ। ଗପଟି ପଢିଲା ବେଳେ ଜଗନ୍ନାଥ ଓ ମୁଁ ପିଲାଦିନେ କଥା ହେଉଥିବା କେତେ ଲୋକଙ୍କର କେତେ କାହାଣୀ ମନେ

ପଡିଯାଉଛି । ସେ କୁହନ୍ତି ମୁଁ ଶୁଣେ, ମୁଁ କହେ ସେ ଶୁଣନ୍ତି । ସେ ସବୁ କଥା ଆମ ଦୁହିଁଙ୍କ ଭିତରେ ସୀମିତ ରହିଆସିଛି ।

ଜଗନ୍ନାଥଙ୍କର ଲେଖକ ଗଳ୍ପଟି ମତେ ଗଭୀର ଭାବରେ ସ୍ପର୍ଶ କରିଥିଲା, ଜଗନ୍ନାଥଙ୍କ ଗପ ସବୁରୁ ଗୋଟିଏ ବିଶେଷ ତଥ୍ୟ ମୁଁ ପାଇଛି - ଗପ ଯେତେ ଛୋଟ ଭାବର ଗଭୀରତା ସେତେ ବେଶୀ । ପିଲାଦିନୁ ଜଗନ୍ନାଥ ଅଳ୍ପରେ ବିଶ୍ୱାସ କରନ୍ତି । ଅଳ୍ପ କୁହନ୍ତି, ଅଳ୍ପ ଲେଖନ୍ତି । ପରୀକ୍ଷା ଖାତାରେ ସେ ବହୁତ କମ୍ ଲେଖନ୍ତି, କିନ୍ତୁ ବହୁତ ଭଲ ନମ୍ବର ପାଆନ୍ତି । ଠିକ୍ ସେମିତି ଅଫିସ୍ ଫାଇଲ୍‌ମାନଙ୍କରେ । ତାଙ୍କ ପାଖରେ ଚାକିରୀ କରିଥିବା ଲୋକମାନେ କୁହନ୍ତି ସେ କିପରି ଫାଇଲ୍‌ରେ ଗୋଟିଏ ଶବ୍ଦ, ଗୋଟିଏ ଲାଇନ୍ ଅଥବା ଗୋଟିଏ ବାକ୍ୟରେ ତାଙ୍କର ମତାମତ ଦିଅନ୍ତି । କେଉଁ ଏକ ମୁହୂର୍ତ୍ତରେ ନିଜର ଆତ୍ମ ସମୀକ୍ଷା କରିବା ସମୟରେ ଯାହା ସବୁ ମନକୁ ଆସିଛି, ଯଥା କାଳ୍ପନିକ ସମାଲୋଚକଙ୍କର ଗୋଟିଏ ଧାଡି ବିଶିଷ୍ଟ ସମାଲୋଚନା - ନିଜର ଅସାଧାରଣ ସାହିତ୍ୟକୃତିକୁ ଗଳ୍ପର ମୁଖ୍ୟ ତଥା ଏକମାତ୍ର ଚରିତ୍ର ପାଖକୁ ନେଇଯିବା - ସମାଲୋଚକ ଏବଂ ପାଠକମାନଙ୍କ ଦ୍ୱାରା ସେଇ ଅସାଧାରଣ କୃତି ସମ୍ପନ୍ନ ଲେଖକ ପାଇଁ ସୃଷ୍ଟି ହୋଇଥିବା ପ୍ରଶସ୍ତି - ଗୋଟିଏ ଦିଗରୁ ଅସଂଖ୍ୟ ପାଠକଙ୍କର ପ୍ରଶସ୍ତିଗାନ ଏବଂ ଅନ୍ୟ ଦିଗରୁ ଗୋଟିଏ ସମାଲୋଚକଙ୍କର ଗୋଟିଏ ଧାଡିର ସମୀକ୍ଷା - ତାପରେ ପ୍ରଶ୍ନ ଉଠୁଛି ଲେଖକ ଲେଖୁଛି କାହା ପାଇଁ, ପାଠକ ନା ସମାଲୋଚକ - ଏତଦ୍ୱାରା ସୃଷ୍ଟି ହୋଇଥିବା ବିରାଟ ଦ୍ୱନ୍ଦ୍ୱ - ଶେଷରେ ସବୁ ଅସହାୟତା ଭିତରେ ଲେଖକ ନିର୍ଭର କରୁଛି ତା ଗଢୁଥିବା ଚରିତ୍ର ଉପରେ ଯେହିଁ ତା କଲମକୁ ଆଗେଇ ନେଇ ଉପସଂହାର ଆଡକୁ । ଗୋଟିଏ ଲେଖକର ମନସ୍ତାତ୍ତ୍ୱିକ ବିଶ୍ଳେଷଣର ଚମତ୍କାରିତା ମତେ ବହୁତ ଭଲ ଲାଗିଥିଲା ।

ଜଗନ୍ନାଥ ତ ଲେଖିଛନ୍ତି କେତେ ଗପ, କେତେ କବିତା, କେତେ ଛବି ଆଙ୍କିଛନ୍ତି । ଓଡ଼ିଶାର କଳା ଉପରେ କେତେ ଗବେଷଣା କରିଛନ୍ତି । ପୃଥିବୀର ଜଣେ ବିଶିଷ୍ଟ କଥାକାର, କବି, ନାଟ୍ୟକାର, ମଞ୍ଚଅଭିନେତା, ଚିତ୍ରକର, ପ୍ରାବନ୍ଧିକ । ତାଙ୍କର ଲେଖାମାନ ଇଂରାଜୀ ତଥା ଅନେକ ଭାରତୀୟ ଭାଷାରେ ଅନୁବାଦ ହୋଇଛି । Words on canvas - JP Das and His Work ବହିଟି ଜଗନ୍ନାଥଙ୍କୁ ଏତେ ସୁନ୍ଦର ସଜାଇ ରଖିଛି ଯେ ଯୁଗଯୁଗ ଧରି ପୃଥିବୀର ଲୋକମାନେ ସେଇ ସୁସଜ୍ଜିତ ଜଗନ୍ନାଥଙ୍କୁ ଦେଖୁଥିବେ । ତାଙ୍କର ସାହିତ୍ୟକୃତି ମାନଙ୍କର ସମୀକ୍ଷା କରାଯାଇଛି ପୃଥିବୀର ବିଶିଷ୍ଟ ସାହିତ୍ୟିକମାନଙ୍କ ଦ୍ୱାରା ସର୍ବଭାରତୀୟ ପତ୍ରିକାମାନଙ୍କରେ । ଯେଉଁମାନେ ଉକ୍ତ ବହିଟିରେ ତାଙ୍କ ବିଷୟରେ ଲେଖିଛନ୍ତି, ଯେଉଁମାନଙ୍କର ତାଙ୍କ ନିକଟ ଲିଖିତ ଚିଠି ସବୁ ପ୍ରକାଶ ପାଇଛି, ଯେଉଁମାନେ ତାଙ୍କ ଗହଣରେ ଫଟ ଉଠାଇ ନିଜକୁ ସମ୍ମାନିତ କରିଛନ୍ତି ସେମାନେ ପୃଥିବୀର ବିଶିଷ୍ଟ ବ୍ୟକ୍ତିବୃନ୍ଦ ଜଗନ୍ନାଥ ଯେତେବେଳେ ମୋ ସାଙ୍ଗରେ କଥା ହୁଅନ୍ତି, ସେ ତାଙ୍କ ଉଚ୍ଚତାରୁ ମୋ ସ୍ତରକୁ ଏତେ ସୁନ୍ଦର ଭାବରେ ଓହ୍ଲାଇ ଆସନ୍ତି ଯେ ମୁଁ ତାଙ୍କ ଉଚ୍ଚତାକୁ ମାପିବାକୁ ବା ମୋ ସ୍ତରରେ ନିମ୍ନତା ବିଷୟରେ ସଚେତନ ହେବାକୁ ଇଚ୍ଛା କରି ମଧ ପାରେ ନାହିଁ ।

ଯାହା ସବୁ ତଥ୍ୟ ସଂଗ୍ରହ କରି 'ଦେଶ, କାଳ, ପାତ୍ର' ପରି ବିରାଟ ଗ୍ରନ୍ଥ ଲେଖି ପାରିଛନ୍ତି । ସେ ବିରଳ ଇତିହାସ ଓଡ଼ିଆ ଜାତି ତଥା ସମାଜ ପାଇଁ ଜଗନ୍ନାଥଙ୍କର ଏକ ମହତ୍ ଅବଦାନ । ଏପରି ଧରଣର ପୁସ୍ତକ ଓଡ଼ିଆ ସାହିତ୍ୟରେ ବୋଧହୁଏ ଏ ପର୍ଯ୍ୟନ୍ତ କେହି ଲେଖି ନାହାନ୍ତି । ଯାହା ଜଗନ୍ନାଥ ଯୋଗାଇଛନ୍ତି ସେ ସବୁ ନାଁ କେଉଁ ଓଡ଼ିଶାର ଇତିହାସ କହିବ ନାଁ କେଉଁ ସାହିତ୍ୟ କହିବ । ଉଦାହରଣ ସ୍ୱରୂପ - ଆମ୍ଭେମାନେ କବିବର ରାଧାନାଥ ରାୟଙ୍କର କବିତା ସାଙ୍ଗରେ ସହଜରେ ପରିଚୟ ସୃଷ୍ଟି କରିପାରୁ । କିନ୍ତୁ ତାଙ୍କ କବିତା ଲେଖା ପଛରେ ଥିବା ଦୁର୍ଲଭ କାହାଣୀ ତଥା ଇତିହାସକୁ ସଂଯୋଜିତ କରିଛନ୍ତି ଜଗନ୍ନାଥ ବାବୁ ଅତି ସରଳ କଥା କୁହା ଭାଷାରେ । ନଗେନ୍ଦ୍ର ବାଳାଙ୍କ ସାଙ୍ଗରେ ରାଧାନାଥଙ୍କର ପରିଚୟ, ତାପରେ ଗଢି ଉଠିଥିବା ସମ୍ପର୍କ, ମଧୁବାବୁଙ୍କ ଝିଅ ଶୈଳବାଳାଙ୍କର ଜଗନ୍ନାଥ ମନ୍ଦିର ପ୍ରବେଶ ଏବଂ ତତ୍‌ଜନିତ ସମାଲୋଚନା - ଏହିପରି କେତେ କାହାଣୀ, କେତେ ଇତିହାସ ସଂଗ୍ରହ କରିଛନ୍ତି ଜଗନ୍ନାଥ । ମୂଲ୍ୟବାନ୍ ଚିଠି ସବୁର ନକଲ ପ୍ରକାଶ କରିଛନ୍ତି ଦୁର୍ଲଭ ପୁସ୍ତକଟିରେ । ଏପରି ପୁସ୍ତକ ଅଦ୍ୱିତୀୟ । ଏହା ଇତିହାସ ନୁହେଁ, ଉପନ୍ୟାସ ନୁହେଁ, କ୍ଷୁଦ୍ର ଗଳ୍ପମାନଙ୍କର ସଂକଳନ ନୁହେଁ, ତେବେ ବି ଏହା ସବୁକିଛି । ମନେ ହେଉଛି ସତେ ଯେପରି ରାଧାନାଥ ରାୟ, ଗୌରୀଶଙ୍କର ରାୟ, ମଧୁସୂଦନ ଦାସ, ଫକୀରମୋହନ ସେନାପତି, ବିଚିତ୍ରାନନ୍ଦ ଦାସ, ରେଭେନ୍ସା ସାହେବ ସମସ୍ତେ ଓଡ଼ିଶା ମାଟିରେ ଏବେ ବି ବଞ୍ଚିଛନ୍ତି, ଜଗନ୍ନାଥ ସେମାନଙ୍କୁ ଜୀବଦାନ କରିଛନ୍ତି ।



## ପ୍ରଫେସର ଡକ୍ଟର ଗୌର କିଶୋର ଦାସ

'ମନେ ପଡ଼େ' ଆତ୍ମଜୀବନୀର ସମୀକ୍ଷା କରିଥିବା (ଚିରସଂଧାନ ପତ୍ରିକାରେ ପ୍ରକାଶିତ) ଏବଂ 'ନୂତନ ଆହ୍ୱାନ' ପୁସ୍ତକ ପାଇଁ ମୁଖବନ୍ଧ ଲେଖିଥିବା ଦିଲ୍ଲୀ ବିଶ୍ୱ ବିଦ୍ୟାଳୟର ପୂର୍ବତନ ଇଂରାଜୀ ପ୍ରଫେସର ତଥା ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ପ୍ରଫେସର ଡକ୍ଟର ଗୌରକିଶୋର ଦାସ ଗଣେଶ୍ୱର ସାର୍‌ଙ୍କର ସହପାଠୀ ଥିଲେ। ଦୁହିଁଙ୍କର ବନ୍ଧୁତା ବିଷୟରେ 'ମନେପଡ଼େ' ପୁସ୍ତକରେ ବହୁତ କିଛି ଲେଖା ହୋଇଛି। 'ମନେପଡ଼େ'ର ସମୀକ୍ଷା କରିବାକୁ ଯାଇ ପ୍ରଫେସର ଗୌରକିଶୋର ଦାସ ଯେପରି ଏକ ଭାବବିହ୍ୱଳ ଚିଠି ଲେଖିଛନ୍ତି ସେଥିରୁ ଦୁହିଁଙ୍କର ବନ୍ଧୁତ୍ୱ ବିଷୟରେ ବହୁତ କିଛି ଜାଣିହୁଏ। Researchers' Association, Orissa ର ସଭାରେ Three short of half century Story of a Born Teacher ଶୀର୍ଷକ ଭାଷଣରେ ପ୍ରଫେସର ଗୌରକିଶୋର ଦାସ ଗଣେଶ୍ୱର ସାରଙ୍କ ବିଷୟରେ ଯାହା ଅଳ୍ପ କହିଥିଲେ ତାକୁ ଏଥି ସହିତ ସଂଲଗ୍ନ କରିବା ଉଚିତ ମନେ କରୁଛି।

ଗୌରକିଶୋର ଦାସଙ୍କର ଗଣେଶ୍ୱର ସାର୍‌ଙ୍କ ନିକଟକୁ ପଠାଇଥିବା ଅସଂଖ୍ୟ ଚିଠି, ଆଲୋଚନା ଏବଂ ବିଦେଶ ପତ୍ରିକା ମାନଙ୍କରେ ପ୍ରକାଶିତ ପ୍ରବନ୍ଧମାନ ଦେଖିବାକୁ ପାଇଲି ସେଗୁଡ଼ିକୁ ଏକତ୍ରକଲେ କେତୋଟି ପୁସ୍ତକରେ ପରିଣତ ହୋଇପାରିବ।

- ସମ୍ପାଦକ

# THREE SHORT OF HALF CENTURY STORY OF A BORN TEACHER

AN ADDRESS
by

**G.K. DAS**

**Former of Professor of English**
**Delhi University, Delhi**
**and**
**Former Vice-Chancellor**
**Utkal University, Bhubanewar**

THE RESEARCHERS' ASSOCIATION, ORISSA.

**"MEET THE TEACHER PROGRAMME"**

13 June 2010

HOTEL AKBARI, CUTTACK

A close mutual friend of ours was Ganeswar Das. He read Philosophy and used to write exceptionally moving poems. He was a much-admired teacher and retired as a highly successful Principal, writer and educationist. Ganeswar babu - as to this date I call him also wrote beautiful poem in English. He and I enjoyed each other's poems and found inspiration from each other's work.

ପ୍ରିୟ ଗଣେଶ୍ୱର ବାବୁ ଦିଲ୍ଲୀ, ୨୨ମେ ୨୦୧୧

ଆପଣଙ୍କର ସମାଜରେ ପ୍ରକାଶିତ ୨ ଟି ଯାକ ଆଲୋଚନା/ସମାଲୋଚନା ମତେ ପଢିବାର ସୁଯୋଗ ଦେଇଥିବାରୁ ମୁଁ ଆପଣଙ୍କଠାରେ କୃତଜ୍ଞ।

"ପରିବାର ଭିତରେ ନୀରବ ନିର୍ଯ୍ୟାତନା" ପ୍ରବନ୍ଧଟି ଅତି ଭାବନାଶୀଳ ହୋଇଛି। ପରର ଓ ବର୍ତ୍ତମାନର ପାରିବାରିକ ପରିସ୍ଥିତିକୁ ଆପଣ ଅତି ସଂକ୍ଷେପରେ ତୁଳନା କରି ଉଭୟରେ ଗୁଣ ଏବଂ ଦୋଷ ତ୍ରୁଟି ପ୍ରତି ପାଠକଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି। ୧୯୮୨ ମସିହାରେ ଶିକ୍ଷା କମିଶନ୍‌ଙ୍କ ସୁପାରିଶ ଆସିବା ପରେ ଦୀର୍ଘ ୩ ଦଶକରେ ବର୍ତ୍ତମାନ ଆମେ ପହଞ୍ଚିଛେ। ଯେପରି ଧରଣର ଶିକ୍ଷା (ବିଶେଷ କରି ନାରୀଶିକ୍ଷା) କ୍ଷେତ୍ରରେ ପରିବର୍ତ୍ତନ ଆସିବା କଥା - ତା ଆସିପାରିନାହିଁ। ତେଣୁ ଏଇ ବର୍ଷର 'ସ୍ଲୋଗାନ' ହେଲା "ମହିଳା ଅଧିକାର ସାବ୍ୟସ୍ତ"(Empowerment)। କିଛି ଯେ କରାଯାଇ ନାହିଁ ବା ହେଉନାହିଁ ତା ଆପଣ କହୁନାହାନ୍ତି, ମୁଁ ବି କହୁନାହିଁ। ମାତ୍ର ଶିକ୍ଷାକୁ ଯେଉଁପ୍ରକାର ଗୁରୁତ୍ୱ ଦେବାକଥା ତା ଆମ ଦେଶରେ ଦିଆଯାଇନାହିଁ - ଏଥିରେ ସନ୍ଦେହ ନାହିଁ। ଏଇଠି ରହୁଛି ମୌଳିକ ତ୍ରୁଟି।

ଏଇ କଥାକୁ ଯୋଡି ହୋଇଥିବା 'ସମାନ ବେତନ ହାର' ଶୀର୍ଷକ ଆପଣଙ୍କର ପତ୍ର ପଢିଲି। ମୋର 'ହିନ୍ଦୁ' ପତ୍ରିକାରେ ପ୍ରକାଶିତ ହୋଇଥିବା ପତ୍ର ପ୍ରତି ଆପଣ ଦୃଷ୍ଟି ଆକର୍ଷଣ କରିବା ମତେ ବହୁତ ଆନନ୍ଦ ଦେଇଛି। ଓଡ଼ିଶାରେ, ବା ଭାରତରେ **'Public opinion'** କୁ କିଏ ଧ୍ୟାନ ଦିଏ ? ସରକାରୀ କଳ ଗତାନୁଗତିକ ଭାବରେ ଚାଲିଛି - ତା କ୍ଷୋଭର କଥା, ତେବେ ଆମେ ଆଶାବାଦୀ। ପରିବର୍ତ୍ତନ ନିଶ୍ଚୟ ଆସିବ। ସମାଜ ଗତିଶୀଳ ହେବ।

ଆମର କର୍ତ୍ତବ୍ୟ ହେଲା କିଛି ସାଧୀନ ମତାମତ ପ୍ରକାଶ କରିବା। ତା'ର ପରିଣାମ ବିଷୟ ଚିନ୍ତା ନକରି। ଆପଣ ସେଇ କର୍ତ୍ତବ୍ୟରେ ରତ ରହିଛନ୍ତି - ତା ବଡ ସୁନ୍ଦର କଥା, ମୋର ଅଭିବାଦନ ଜାଣିବେ ସେଥିପାଇଁ।

ଦିଲ୍ଲୀର ପ୍ରଚଣ୍ଡ ଗରମ ଭିତରେ ଦେହ ଭଲରହୁନାହିଁ। ବର୍ଷାକୁ ଅପେକ୍ଷା।

ଆପଣ ଏବଂ ମିସେସ୍ ଦାସ ବୁଲ୍‌ବୁଲ୍‌ଙ୍କର ଓ ମୋର ଶୁଭ କାମନା ଜାଣିବେ। ପିଲାମାନଙ୍କୁ ଆଶୀର୍ବାଦ ଦେବେ।

ଇତି ଆପଣଙ୍କର ସ୍ନେହର ବନ୍ଧୁ

ଗୌର

(Delhi)
23/12/[illegible]

My dear Ganeswar Babu:

Hope this finds you in good health & in a better frame of mind. I was very sorry to see you indisposed when I was in Bhubaneswar in October last! Do take good care of yourself!

My short trip to the Open University & Cambridge was intensely & intrinsically a happy one – perhaps the last one in my life! Meeting some old friends & visiting my college & several old "spots of time" was a sheer joy! The talk at the Open Univ., Milton Keynes, was received well I imagine. Enclosed is a brief synopsis for you to look at.

On January 3-5, there is going to be an international seminar on Fakir Mohan Senapati, for which I've been asked to give a paper on "Evolving New Canons". What I'll be speaking about is in a summary form in the enclosed sheet. P.T.O.

The Global Convention on 16-17 Dec. was an (unexpectedly) unusual success! I missed your presence. The Souvenir for which you so kindly contributed a piece was released on the first day by the Central Minister of Foreign Affairs (India). I'm sending a copy for you with our thanks for your intellectual cooperation in it.

With the best [illegible] from me to Mrs. Patnaik & you & all the family for the days ahead.

Yours ever,

Gour

(The "two tiny stories" on p.45 of the Souvenir were sent by our grandson - Cecil's son - from USA. He is 7+.)

ଶ୍ରଦ୍ଧେୟ ଗୌର ବାବୁ, ୨୯, ଫରେଷ୍ଟପାର୍କ, ଭୁବନେଶ୍ୱର

କିଛି ଦିନ ତଳେ ମୁଁ ଚିଠିଟିଏ ଲେଖିଥିଲି ଆପଣଙ୍କ ନିକଟକୁ ଫୋନ୍ କଥାବାର୍ତ୍ତା ସମ୍ଭବ ନହେବାରୁ। ଏବେ ଗତ ଜୁନ୍ ୧୩ ତାରିଖରେ ଆପଣ ଦେଇଥିବା ଭାଷଣ (ଓଡ଼ିଶା ଗବେଷଣା ପରିଷଦରେ ଦେଇଥିବା ଉଦ୍‌ବୋଧନ)ଟି ପଢ଼ିବାର ସୁଯୋଗ ପାଇ ବହୁତ ଆନନ୍ଦ ଲଭିଲି। ମୋ ଭିତରର ଆନନ୍ଦକୁ ପ୍ରକାଶ କରିବା ଲାଗି ଭାଷା ପାଉନି। ଗୋଟିଏ ଭାଷଣ ଜରିଆରେ ଏକ ବିରାଟ ଆତ୍ମ ଜୀବନୀକୁ ସୀମିତ ସମୟ ଭିତରେ ପ୍ରକାଶ କରାଯାଇପାରେ। ଏପରି ଅଭିଜ୍ଞତା ମୋ ପାଇଁ ଏକେବାରେ ନୂଆ। ବିରାଟ ଆତ୍ମଜୀବନୀରେ ଆଉ କ'ଣ ଅଧିକ ଥାଏ ମୁଁ ଜାଣି ପାରୁନି।

କେମ୍ବ୍ରିଜ୍ ରହଣି, ରହଣି ସମୟର ଉଚ୍ଚତର ଗବେଷଣା ଏବଂ ବିଜ୍ଞ, ବିଦ୍ୱାନମାନଙ୍କ ସଂସ୍ପର୍ଶରେ ଆସିଥିବାର ଅଭିଜ୍ଞତାକୁ ବର୍ଣ୍ଣନା କରିବାକୁ ଯାଇ ଭିତରର ଆବେଗ ପୂର୍ଣ୍ଣ ଆନ୍ତରିକତାକୁ ଯେପରି ସରଳ ମନ ଓ ଭଷାରେ ପ୍ରକାଶ କରିପାରିଛନ୍ତି ତାହା ବାସ୍ତବିକ ଅନନ୍ୟ। ଆପଣଙ୍କର ଭାଷଣ ପଢ଼ିବା ପରେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଏବଂ ସେଠାରେ ସୁନାମଧନ୍ୟ ପ୍ରଫେସରମାନଙ୍କ ପାଖରେ ଯେତିକି ମୁଣ୍ଡ ନଇଁ ଯାଉଛି ଆପଣ ସେମାନଙ୍କୁ ମନ ଭିତରେ ଯେପରି ଆଗ୍ରହ ଓ ଯତ୍ନର ସହିତ ସଜାଡି ରଖିଛନ୍ତି ତାହା ଜାଣି ଆପଣଙ୍କୁ ଉଚ୍ଚତାର କେଉଁ ଶୀର୍ଷ ବିନ୍ଦୁରେ ରଖିବି ଜାଣି ପାରୁନି। E.M. Forster ଙ୍କୁ କୃତଜ୍ଞତା ଜଣାଇବାକୁ ଯାଇ କେତେ ସରଳ ଭାଷାରେ ଆପଣ ଲେଖିଛନ୍ତି, "Getting to talk with E.M. Forster was perhaps the greatest boon that Cambridge offered to me and to my family. Forster ଙ୍କର comment, 'Did they indeed... how good for the sea. ତାଙ୍କ କବିତାର ପରିଚୟ ଦେଉଛି। Prof. John Beer ଏବଂ Gillian Beer ଙ୍କର ଜ୍ଞାନ ଏବଂ ସଂପର୍କକୁ ମଧ୍ୟ ଆପଣ ସରଳତାର ଆବରଣ ଭିତରେ କି ସୁନ୍ଦର ଭାବରେ ସଜାଇ ରଖିଛନ୍ତି। ଅପଣଙ୍କଠାରୁ Forster ଙ୍କ ବିଷୟ ଶୁଣିବା ପରେ Forster ଙ୍କୁ ଯେଉଁ height ରେ ରଖିଲେ ଆପଣଙ୍କୁ ପ୍ରାୟ ସେଇ ଉଚ୍ଚତାକୁ ନେବା ବିଷୟ ଶୁଣି ଆପଣଙ୍କ ପାଇଁ ମୋ ମନରେ ଗୋଟିଏ ରକମର ଗର୍ବ ସୃଷ୍ଟି ହେଲା।

ଗବେଷଣା ବିଷୟରେ ଆପଣଙ୍କର ସୁଚିନ୍ତିତ ମତ ବିଶ୍ୱବିଦ୍ୟାଳୟ ମାନ ଗ୍ରହଣ କରି ଚିନ୍ତାଧାରାରେ ପରିବର୍ତ୍ତନ ଆଣିବା ନିତାନ୍ତ ଆବଶ୍ୟକ।

କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଏବଂ ସେଠାରେ ଅଧ୍ୟାପକମାନଙ୍କ ବିଷୟରେ ବହୁତ କଥା ଜାଣିଲି। ଆମେ ସ୍କୁଲରେ ପଢ଼ିବା ବେଳେ ଡକ୍ଟର ପରିଜାଙ୍କର କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଉପରେ ଲିଖିତ ପ୍ରବନ୍ଧ ସାହିତ୍ୟ ବହିରେ ପଢ଼ିଥିଲୁ। ସେବେଠାରୁ ସେ ବିଶ୍ୱ ବିଦ୍ୟାଳୟ ପ୍ରତି ମୋର ଆକର୍ଷଣ ଥିଲା। ପରେ ପରେ ମୋର ବଡ ଭାଇ ସେଇ ବିଶ୍ୱ ବିଦ୍ୟାଳୟରେ ପଢ଼ିଲେ ଏବଂ ଡକ୍ଟର ପରିଜା କେମ୍ବ୍ରିଜରେ ଥିବା ତାଙ୍କ ବନ୍ଧୁମାନଙ୍କ ନିକଟକୁ ଚିଠି ଲେଖିଥିଲେ।

କେମ୍ବିଜ୍ ବିଶ୍ୱ ବିଦ୍ୟାଳୟ ବିଷୟରେ ଲେଖିବା ସମୟରେ ଆପଣ ଜୟନ୍ତ ବାବୁଙ୍କର relationship ପାଖରେ ମଧ୍ୟ ପହଞ୍ଚିଛନ୍ତି। ଜୟନ୍ତବାବୁ ସେ ବହିଟି ଛପା ହେବା ପରେ ପରେ ମତେ ଗୋଟିଏ କପି ଉପହାର ଦେଇଥିଲେ। ସେଥିରେ ଆପଣଙ୍କୁ କୃତଜ୍ଞତା ଜଣାଇବା ଦେଖି ବହୁତ ଖୁସି ଲାଗିଥିଲା। ତାଙ୍କର ପତ୍ନୀ ରୁନୁଅପାଙ୍କର ମୃତ୍ୟୁ ପରେ ବଡ ହତାଶ୍ ହୋଇ ସେ ଗୋଟିଏ ଚିଠି ମୋ ନିକଟକୁ ଲେଖିଥିଲେ। ଓଡ଼ିଆରେ ମୁଁ ତାଙ୍କ ଚିଠିର ଉତ୍ତରରେ ତାଙ୍କରି relationship କୁ quote କରିଥିଲି। ମୁଁ ଯାହା ଲେଖିଥିଲି ତା'ର ଗୋଟିଏ କପି କେମିତି କେଜାଣି ମୋ ପାଖରେ ଥିଲା। ସେ କପିଟି ଏଥି ସହ ପଠାଉଛି।

ବାପା, ମା, ଘର (Head master's house) ଏବଂ ପାରିପାର୍ଶ୍ୱିକ ଅବସ୍ଥା ସବୁକୁ ମାତ୍ର ଗୋଟିଏ ପୃଷ୍ଠାରେ ଏପରି ଭାବରେ ଲେଖିଛନ୍ତି ପଢ଼ି ମନେ ହୁଏ ଯେପରି ୧୦୦ ପୃଷ୍ଠାର ବିବରଣୀ ପଢ଼ି ହୋଇଗଲା। ତା ପରେ ରେଭେନ୍ସା କଲେଜ୍‌ରେ ପାଠ ପଢ଼ା, ସେତେବେଳର ଅଧ୍ୟାପକ, ସହପାଠୀ ସିନିୟର ଓ ଜୁନିୟର ସାଙ୍ଗ, ଛାତ୍ର ସଂସଦ ନିର୍ବାଚନ, କିଛି ତ ଛାଡି ନାହାନ୍ତି। ମୁଁ ଏବେ ଭାବୁଛି କାହିଁକି ଆତ୍ମଜୀବନୀ ସବୁ ବିରାଟ ଗ୍ରନ୍ଥରେ ପରିଣତ ହୋଇଥାଏ। ହୃଦାନନ୍ଦ ରାୟଙ୍କର "ଜାଣେ ଅନୁଭାବୀ ଅନୁଭବରେ" (ପ୍ରାୟ ୧୦୦୦ପୃଷ୍ଠା) ଏବଂ ✓ ସର୍ବେଶ୍ୱର ଦାଶଙ୍କର "ମୋ କାହାଣୀ" - ପ୍ରଥମ ଭାଗ (ପ୍ରାୟ ୬୫୦ପୃଷ୍ଠା)ରେ ମୁଁ ଯାହା ପାଇଥିଲି ସେ ସବୁର କିଛି ଊଣା ନଥିଲା ଆପଣଙ୍କର ମାତ୍ର ୧୪ ପୃଷ୍ଠାର ଭାଷଣରେ। ରେଭେନ୍ସାରେ ପ୍ରକାଶ ପାଇଥିବା "Om Ravenshaw College" କବିତାଟି ପଢ଼ିଥିଲି। ପାଖରେ ନଥିଲେ ବି କବିତାଟିର

କିଛି ଅଂଶ ମନେ ପଡିଯାଉଛି, ନିଜ ରଚିତ କବିତା ସବୁକୁ ସ୍ଥାନ ଦେଇ ମଧ କମଳା ଦାସ 'My Story' କୁ ୨୦୦ ପୃଷ୍ଠାରୁ କମ୍ କରିପାରିନାହାନ୍ତି। ଆପଣଙ୍କ ଭାଷଣରେ ସାଙ୍ଗମାନଙ୍କୁ ଭେଟିଲି, ସାର୍‌ମାନଙ୍କୁ ଭେଟିଲି, ସାର୍‌ମାନଙ୍କର ପଢାଇବା ସବୁ ମନେ ପଡିଗଲା, ଆଖିରେ ଲୁହ ଆସିଗଲା ବିଧୂବାବୁଙ୍କ କଥା ମନେ ପଡ଼ି। English Hons. ନ ନେଲେ ଅନ୍ତତଃ Economics Hons ନେବା ପାଇଁ ମତେ କେତେ ବୁଝାଉଥିଲେ। କି ସ୍ୱାର୍ଥ ଥିଲା ତାଙ୍କର ? ଓଡ଼ିଆ ପିଲା ଆଇ.ଏସ୍. ପାଆନ୍ତୁ - ଏତିକିରେ ତାଙ୍କର ଆନନ୍ଦ, ମୃତ୍ୟୁର କିଛିବର୍ଷ ଆଗରୁ କାହିଁକି କେଜାଣି ବରାବର ଫୋନ୍ କରୁଥିଲେ। ସମାଜରେ ମୋର ପ୍ରବନ୍ଧଟିଏ ପ୍ରକାଶ ପାଇଲେ ସାଙ୍ଗେସାଙ୍ଗେ ଫୋନ୍ କରିବେ। ହଁ, ଆପଣଙ୍କ ଭାଷାରେ ମୁଁ ମୋ କଥା ବି କହୁଛି ମାୟାଧର ମାନସିଂହଙ୍କ ବିଷୟରେ, "I had very high regards and fond feelings for him".

ଆପଣଙ୍କ ବିନି ଅପାଙ୍କ ମୃତ୍ୟୁରେ ଓ ହେରମ୍ବବାବୁଙ୍କ ମୃତ୍ୟୁରେ ଆପଣ ଲେଖିଥିବା କବିତା ଦୁଇଟି ସଯତ୍ନେ ସାଇତି ରଖିଛି। ଅନେକ ସମୟରେ ପଢ଼େ। ବହୁତ ଆନନ୍ଦ ଲାଗେ ଯେତେବେଳେ ଦେଖେ ଆପଣ କବିତାକୁ ଦୁର୍ବୋଧ କରିନାହାନ୍ତି। ଆଧୁନିକ କବିତାମାନଙ୍କୁ ମୋ ନିର୍ବୋଧତା ହେତୁ ମୁଁ ବୁଝିପାରେ ନି। ଆପଣଙ୍କ କବିତା ଆଧୁନିକ, କିନ୍ତୁ ଦୁର୍ବୋଧ ନୁହେଁ। ଜେ.ପି. ଦାସଙ୍କ ଉପରେ ମଧ ଯେଉଁ କବିତାଟି ଲେଖିଥିଲେ କେତେ ଆନ୍ତରିକତା ପ୍ରକାଶ ପାଇଛି ଯାହାକି ଯେ କୌଣସି ପଢିବା ଲୋକ ବୁଝି ପାରିବ। ବେଳେବେଳେ ମନେହୁଏ, ଆପଣଙ୍କ ପାଖରେ Adolescent period ର ମୂଲ୍ୟବାନ ଜିନିଷ ସବୁ ଏ ପର୍ଯ୍ୟନ୍ତ ମୂଲ୍ୟ ସହିତ ସାଇତା ହୋଇ ରହିଛନ୍ତି।

ଗତ ଚିଠିରେ ପଦ୍ମିନୀର ଅସୁସ୍ଥତା ବିଷୟ ଲେଖିଥିଲି। ମୃତ୍ୟୁ ମୁଖରୁ ବଞ୍ଚି ଫେରିଆସିଲେ। ଏବେ ବି ବହୁତ ଯତ୍ନରେ ରହିବାକୁ ପଡୁଛି। ଉପରକୁ କିଛି ଜଣା ନପଡିଲେ ବି ଭିତରେ ନଷ୍ଟ ହୋଇଯାଇଥିବା ଜିନିଷ ସବୁ ସଜଡା ହେବାରେ ସମୟ ଲାଗିବ। ୩/୪ଦିନ ତଳେ ହଠାତ୍ B.P. 220/110 ହୋଇଗଲା। Diabetic complication leading to aute infenction of pancrea ଆସ୍ତେଆସ୍ତେ ସଜଡା ହେଲା ବେଳକୁ ଏମିତି alarning situation ପହଞ୍ଚି ଯାଉଛି। ଡାକ୍ତରଖାନା ଯିବା, ଡାକ୍ତରଙ୍କୁ ଦେଖା କରିବା ଏ ସବୁରେ ଆମ ଦେଶରେ ଅଯଥା ଟେନ୍‌ସନ୍‌ରେ ରହିବାକୁ ପଡେ। Pancrea ଡାକ୍ତର ଜଣେ, Diabetes ଡାକ୍ତର ଆଉ ଜଣେ ଏବଂ Neurologist ଆଉ ଜଣେ। ଦିନକୁ ୪ଥର insulin ମତେ ଦେବାକୁ ପଡୁଛି। ଖାଦ୍ୟ ଓ ଔଷଧ ମତେ monitor କରିବାକୁ ପଡୁଛି। ତଥାପି ଅନେକଟା ଭଲ ଅଛନ୍ତି। ଉପରକୁ ନରମାଲ୍ ମନେ ହେଉଛି। କିଏ ଆଗ, କିଏ ପଛ ଯିବୁ ଭଗବାନ୍‌ଙ୍କୁ ଜଣା। ହେଲେ ବି ସ୍ୱାର୍ଥପର ପରି ମୁଁ ଚାହେଁ ଆଗ ଯିବା ପାଇଁ।

ଆଶାକରେ ଆପଣ ଓ ବୁଲ୍‌ବୁଲ୍ ଭଲ ଥିବେ। ଝିଅ ମାନେ ସେମାନଙ୍କ ପରିବାର ସହ ଭଲରେ ଥିବେ। ଆପଣ ଏ ବୟସ ପର୍ଯ୍ୟନ୍ତ କେତେ ପଢାପଢି ଓ ଲେଖାଲେଖି କରି ପାରୁଛନ୍ତି। ଭଗବାନ୍ ଆହୁରି ଅନେକ ବର୍ଷ ଆପଣ ଦୁହିଁଙ୍କୁ ଏମିତି active ରଖିଥାଆନ୍ତୁ। ଆନ୍ତରିକ ଶୁଭେଚ୍ଛା ସହ ରହିଲି।

ଶୁଭାକାଂକ୍ଷୀ
ଗଣେଶ୍ୱର।

**ଦିଲ୍ଲୀ, ବୈଶାଖୀ, ୨୦୧୦**

ପ୍ରିୟ ଗଣେଶ୍ୱର ବାବୁ,

ଆପଣଙ୍କ ଲେଖା ବହିଟି ପାଇଲି। ଶିକ୍ଷା, ଦର୍ଶନ ଓ ସମାଜ-ଚେତନା ସମ୍ବନ୍ଧରେ ଲେଖା ହୋଇଥିବା ଉପାଦେୟ ପ୍ରବନ୍ଧ ଗୁଡ଼ିକର ଏକାଠି ସମାବେଶ ଏକ ବଡ଼ ଆନନ୍ଦର କଥା। ବର୍ତ୍ତମାନ ଅନେକ ଚିନ୍ତାଧାରା। ଥିଓରୀ ମାଧ୍ୟମରେ ପରିବେଶ ହେଉଥିବା ଏକ ଗତାନୁଗତିକ ପନ୍ଥା ହୋଇଯାଇଛି। ସେଥିରେ ନୂଆ କଥା ବିଶେଷ କିଛି ଦେଖିବାକୁ ମିଳେନାହିଁ। ତେଣୁ ଯୁବ ସମାଜକୁ ପ୍ରଭାବିତ କରିବା ସମ୍ଭବ ହୁଏ ନାହିଁ। ମାତ୍ର ଏଇ ସଂକଳନରେ ଥିବା କେତେକ ପ୍ରବନ୍ଧରେ ଆପଣଙ୍କର ବ୍ୟକ୍ତିଗତ ଚିନ୍ତାଧାରାର ପ୍ରବାହର ଅନୁଭବ ହୁଏ। "ଭାରତୀୟ ପ୍ରତିଭା" ଶିକ୍ଷାବିତ୍ ମାନସିଂହଙ୍କ ଶେଷ ଉଇଲ, ଶଙ୍କରଙ୍କର ଧର୍ମ-ଦର୍ଶନର ସାମାଜିକ ପ୍ରାସଙ୍ଗିକତା ପରି ଲେଖା ପଢ଼ିଲେ ମନ ଭିତରେ ଆନ୍ଦୋଳନ ସୃଷ୍ଟି ହୋଇଥାଏ। ସେ ଆନ୍ଦୋଳନ ନୂତନ ସୃଷ୍ଟିରୁ ନୂଆ ଆଶାର ସଂଚାର ହୁଏ। ଏହାର ଅନୁପସ୍ଥିତିରେ କୌଣସି ସାହିତ୍ୟ ବା ସାମାଜିକ ରଚନାର ମୂଲ୍ୟ ନଥାଏ।

ସେଦିନ ସନ୍ଧ୍ୟାରେ ଫୋନ୍ କରିଥିଲି ଏଇପରି କିଛି କଥା କହିବାକୁ। ମାତ୍ର ଆପଣ ପତ୍ନୀଙ୍କ ଅଚାନକ ଅସୁସ୍ଥତା ନେଇ ଚିନ୍ତିତ ଥିଲେ। ଆଶା, ସେ ବର୍ତ୍ତମାନ ସୁସ୍ଥ ଅଛନ୍ତି ଓ ଆପଣଙ୍କର ମନ ଭଲ ଅଛି।

ବହିଟି ପାଇଁ ଅନେକ ଧନ୍ୟବାଦ। ଆପଣଙ୍କ ପରି ଭାଇଠୁ ବଳି ବଂଧୁଙ୍କ ଲେଖା ଉପରେ ମତାମତ ଦେବା ଅସଙ୍ଗତ କଥା, ମୋ ମତରେ। ତେବେ ଦୁଇ ତିନିଧାଡି ଲେଖିଲି।

ଜଗନ୍ନାଥ ବାବୁଙ୍କୁ ବହିଟି ଦେବି, ମାତ୍ର ଶୋଭନ ବାବୁ ଦିଲ୍ଲୀରେ ନାହାନ୍ତି ସେ ଆସିଲେ ତାଙ୍କ ବହିଟି ତାଙ୍କୁ ଦେବି।

**ଇତି ଆପଣଙ୍କର ଗୁଣମୁଗ୍ଧ**

**ଗୌର**

## ଶ୍ରୀ ହର ପ୍ରସାଦ ଦାସ

ବିଜ୍ଞ ଓ ବିଦ୍ୱାନ ହରପ୍ରସାଦ ଦାସ ପ୍ରଶାସନରେ ଥାଇ ଯେପରି ଉଚ୍ଚକୋଟିର ସାହିତ୍ୟ ରଚନା କରି ଆସିଛନ୍ତି, ରବୀନ୍ଦ୍ରନାଥ ଟାଗୋରଙ୍କ 'ଗୀତାଞ୍ଜଳି'ର ଓଡ଼ିଆ ଅନୁବାଦ ଏବଂ ଓମରଖୟାମ୍ 'ରୁବାୟତ'କୁ ଓଡ଼ିଆ ପାଠକମାନଙ୍କ ପାଖରେ ପହଞ୍ଚାଇ ପାରିଛନ୍ତି ତାହା ସାହିତ୍ୟକୁ ତଥା ପାଠକମାନଙ୍କୁ ବିରାଟ ଅବଦାନ। ପ୍ରଫେସର ଯତୀନ୍ଦ୍ରମୋହନ ମହାନ୍ତିଙ୍କ ପରଲୋକ ଅବସରରେ ତାଙ୍କର ପ୍ରକାଶିତ ଲେଖା ପଢି ପ୍ରଫେସର ଗଣେଶ୍ୱର ଦାସ ତାଙ୍କ ନିକଟକୁ ଯେଉଁ ଚିଠିଟିଏ ଲେଖିଥିଲେ ତାକୁ ଏଥି ସହିତ ସଂଲଗ୍ନ କରିବା ଉଚିତ ମନେ କରୁଅଛି। ରେଭେନ୍ସା ବିଶ୍ୱବିଦ୍ୟାଳୟର ବାର୍ଷିକ ପତ୍ରିକା 'ଦ ରେଭେନ୍ସାଭିଆନ୍' ବିଷୟରେ ଶ୍ରୀଯୁକ୍ତ ଦାସ 'ସମାଜ'ରେ ଯାହା ପ୍ରକାଶ କରିଥିଲେ ତାହା ପାଠକରି ପ୍ରଫେସର ଗଣେଶ୍ୱର ଦାସ ଭାବବିହ୍ୱଳ ହୋଇ ତାଙ୍କ ନିକଟକୁ ଯେଉଁ ଚିଠି ଲେଖିଥିଲେ ସେ ଚିଠିର ନକଲ ମଧ୍ୟ ଏଥି ସହିତ ସଂଲଗ୍ନ କରୁଛି।

ବିଜ୍ଞ ହରପ୍ରସାଦ ଦାସ ଗଣେଶ୍ୱର ସାର୍‌ଙ୍କ ନିକଟକୁ ଲେଖିଥିବା ଗୋଟିଏ ଚିଠି ପ୍ରଥମରୁ ସଂଲଗ୍ନ କରୁଅଛି।

- ସମ୍ପାଦକ

**ଏନ୍୨/୨୬, ଆଇ.ଆର.ସି. ଭିଲେଜ୍, ଭୁବନେଶ୍ୱର-୧୫** **୨୫ ନଭେମ୍ବର ୨୦୧୪**

ମାନନୀୟେଷୁ

ଭଲ ମଣିଷମାନଙ୍କର ଉପସ୍ଥିତି ସଂସାରକୁ ସୁନ୍ଦର କରେ। ଭଲମଣିଷଟିଏ ଦେଖିଲେ ପ୍ରକୃତି କେମିତି ନିଜକୁ ସଜାଏ। ଆମ ଆଖିରେ ହୁଏତ ଧରା ପଡ଼େନାହିଁ। କିନ୍ତୁ ମୁଁ ବିଶ୍ୱାସ କରେ ଭଲ ମଣିଷମାନଙ୍କ ଯୋଗୁଁ ହିଁ ଆମର ଏ ସଂସାର ରହିଛି। ଶେଷ ପର୍ଯ୍ୟନ୍ତ ସମସ୍ତ ପାଶଣ୍ଡତା ସତ୍ତ୍ୱେ ପ୍ରକୃତି ସୁନ୍ଦର ହୋଇ ରହିଛି ଓ ରହିବ। ଆପଣଙ୍କୁ ଦେଖିଲେ ମୋର ଏ ବିଶ୍ୱାସ ଆହୁରି ଦୃଢ଼ ହୁଏ। ଆପଣ ମୋର କିଛି କିଛି ରଚନା ପଢି ଖୁସି ହୋଇଛନ୍ତି, ମୋର ସୌଭାଗ୍ୟ। ଜଣେ ଭଲମଣିଷର ଶୁଭକାମନା, ସହସ୍ର ଛଳୀ-ବଳୀଙ୍କ ମୁକୁଟଠାରୁ ବଡ। ମୁଁ ଆପଣଙ୍କର ଶ୍ରଦ୍ଧାର ପାତ୍ର ହୋଇ ରହିଥାଏଁ।

ଆପଣ ମୋ ଗୁରୁମାନଙ୍କର ଗୁରୁ। ଯେଉଁମାନେ ଆପଣଙ୍କର ଛାତ୍ର ବା ଯେଉଁମାନେ ଆପଣଙ୍କୁ ବ୍ୟକ୍ତିଗତ ସଂସ୍ପର୍ଶରୁ ଜାଣନ୍ତି। ସେମାନଙ୍କ ଠାରୁ ଶୁଣି ଶୁଣି ମୋ ଭଳି ଅନେକ ଲୋକ ଆପଣଙ୍କର ଛାତ୍ର ହେବାର ଗୌରବରୁ ବଞ୍ଚିତ ହୋଇ ଦୁଃଖ କରନ୍ତି। ଏମିତି କେହି ନାହିଁ ଯାହା ମନରେ ଆପଣଙ୍କୁ ନେଇ କୌଣସି ଅସନ୍ତୋଷ ଅଛି। ଯଦି କିଛି ଥାଏ ତେବେ ତାହା ଆପଣଙ୍କ ଠାରୁ ଶିକ୍ଷା ପାଇନଥିବାର ଅସନ୍ତୋଷ। ଏଭଳି ଶିକ୍ଷକ କାହାନ୍ତି ? ଆପଣ ଜଣେ ସ୍ନେହୀ, ବିଜୟୀ ଓ ସ୍ୱାଭିମାନୀ ମଣିଷ ଭାବରେ ନିଜପାଇଁ କି ମାନଦଣ୍ଡ ସ୍ଥିର କରିଛନ୍ତି ମୁଁ ଜାଣେ ନାହିଁ, କିନ୍ତୁ ମୋର ମନେ ହୁଏ, ଆପଣଙ୍କର ସମଗ୍ର ଜୀବନକାଳ ଏଯାବତ୍ ତାର ନିଜ ମାନଦଣ୍ଡ ହୋଇ ରହିଛି। ଜଣେ ଭଲ ମଣିଷର ସଜ୍ଞା ଆଉ କଣ ବା ହୋଇପାରେ ?

ଆପଣଙ୍କର ଆତ୍ମଜୀବନୀ ପଢିଲି। ଶିକ୍ଷା ଓ ଦାର୍ଶନିକ ପ୍ରସଙ୍ଗକୁ ନେଇ ଅନେକ ରଚନା ବି ପଢିଲି। କହିବାରେ ଦ୍ୱିଧା ନାହିଁ ଯେ ଜୀବନଧାରା ଓ ଜୀବନଦୃଷ୍ଟିକୁ ଏତେ ସରଳ ଭାବରେ ପାଖରୁ ଦେଖିଥିବା ମଣିଷ କ୍ୱଚିତ୍ ମିଳନ୍ତି। ଆପଣଙ୍କ ସହିତ ଅମତ ହେବାର ଅବକାଶ ନାହିଁ କାରଣ ଆପଣ ଜ୍ଞାନର ତାର୍କିକତା ବାହାରେ ସରଳ ସ୍ୱୀକାରର ଗୋଟିଏ ମାନବୀୟ ଆବେଦନକୁ ନେଇ ଚାଲିଛନ୍ତି। କିନ୍ତୁ ଏ କଥାବି କହିବାକୁ ହେବ ଯେ ଆପଣଙ୍କ ସରଳ ବିଶ୍ୱାସ ପ୍ରଜ୍ଞାର କଷଟିରେ ବ୍ୟର୍ଥ ଯାଇନାହିଁ।

ଦିନେ କେବେ ଆପଣଙ୍କ ପାଖରେ ବସି ଦିପଦ କଥା ହେବାର ବାସନା ମନରେ ରହିଲା। ଏ ଯାଏଁ କ୍ଷୁଦ୍ରାଦପିକ୍ଷୁଦ୍ର ବ୍ୟସ୍ତତା ଆଳରେ ଆପଣଙ୍କୁ ଯାଇ ସଂଖୋଳି ପାରିନାହିଁ; ଏ ଭିତରେ କେବେ ଦିନେ ଆସିବି।

ଆପଣଙ୍କର ପ୍ରସସ୍ତ ମାନସଲୋକରେ ପୃଥିବୀ ଓ ସମାଜ ପ୍ରତି କରୁଣା ସବୁବେଳେ ଭରପୂର ହୋଇ ରହିଥାଉ।

ଆପଣ ଅସୁସ୍ଥ ରହୁଛନ୍ତି ବୋଲି ଚିନ୍ତା କରିବେ ନାହିଁ। ଭଲ ଲୋକମାନେ ଈଶ୍ୱରଙ୍କ ସଂସାର କ୍ଲେଶରୁ କିଛି କିଛି ବହନ କରନ୍ତି। ଆପଣ ଅବଶ୍ୟ ସୁସ୍ଥ ହୋଇଯିବେ ଓ ପୀଡାମୁକ୍ତ ହୋଇ ପଢ଼ାଲେଖାରେ ମନୋନିବେଶ କରିବେ।

ସଶ୍ରଦ୍ଧ ପ୍ରଣାମ

ଆପଣଙ୍କର

ହରପ୍ରସାଦ ଦାସ

ଗଣେଶ୍ୱର ଦାସ

୨୯ ଫରେଷ୍ଟପାର୍କ, ଭୁବନେଶ୍ୱର - ୭୫୧୦୦୯

ଶ୍ରଦ୍ଧେୟ ହରପ୍ରସାଦ ବାବୁ

ମୁଁ ମୂର୍ଖଟିଏ ହେଲେ ବି ଆପଣଙ୍କୁ ଧନ୍ୟବାଦ ଦେବାର ପ୍ରବଳ ଇଚ୍ଛାକୁ ରୋକିପାରୁନାହିଁ। ଧନ୍ୟବାଦ ଏଇଥି ପାଇଁ ଯେ ପ୍ରଥମ ଥର ପାଇଁ ମୋ ଜୀବନକାଳ ଭିତରେ ଗୋଟିଏ ଲେଖା ପଢ଼ିଲି ଯେଉଁଥିରେ ଜଣେ ମୃତବ୍ୟକ୍ତିଙ୍କୁ ତାଙ୍କ ଜୀବନ ଫେରାଇ ଦିଆ ହୋଇଛି। ପ୍ରଥମ ଥର ପାଇଁ ଜାଣିଲି ଯେ ଆପଣଙ୍କ ପରି ମହାନ୍ ବ୍ୟକ୍ତି ଥିଲେ ଜ୍ଞାନରେ ଭରପୁର ବ୍ୟକ୍ତିଟି ମରି ମଧ ମରିପାରେନି। ଆପଣଙ୍କର 'ବିଦାୟ କ୍ଷେତ୍ରପାଳ', 'ସ୍ୱାଗତମ୍ କ୍ଷେତ୍ରପାଳ'ରେ ପରିଣତ ହୋଇଯାଇଛି।

ଆପଣଙ୍କ ଲେଖାର କେତୋଟି ଧାଡ଼ିକୁ ନିଜ ଅକ୍ଷରରେ ଲେଖିବାର ଆଗ୍ରହକୁ ହରାଇ ପାରୁନି। 'ଯେତେବେଳେ ବହୁ ମୂଲ୍ୟ ଗ୍ରନ୍ଥ ଗୁଡ଼ିକ ମିଳିବେ ନାହିଁ, ଲେଖକମାନେ ନଥିବେ ଓ କାଳର ଇଜ୍‌ଲାସ୍‌ରେ ସାକ୍ଷ୍ୟ ଦେବାପାଇଁ ସାକ୍ଷ୍ୟ ଲୋଡ଼ା ହେବ, ସେତେବେଳେ ଅଭ୍ରାନ୍ତ ସାକ୍ଷ୍ୟ ପ୍ରମାଣ ଧରି ଠିଆ ହେବେ ଯତୀନ୍ଦ୍ର ମୋହନ ମହାନ୍ତି, ତାଙ୍କ ସଂକଳିତ ସାର ପାଠଗୁଡ଼ିକ ଅମୂଲ୍ୟ ହୋଇ ଉଠିବେ ଜାତିପାଇଁ'। ଯୁଗଯୁଗ ଧରି ବଞ୍ଚାଇ ଦେଲେ ମୋର ପରମ ବନ୍ଧୁ ଯତୀନ୍ ବାବୁଙ୍କୁ।

ହଁ, ଆପଣ ପ୍ରଶାନ୍ତ ବାବୁଙ୍କୁ ଅମର କରିଦେବାର ପ୍ରୟାସ କରିଛନ୍ତି। ଦୀର୍ଘ ୪୦ବର୍ଷ ଆମେରିକାରେ ସେ ଖାଲି ଓଡ଼ିଆ ସାହିତ୍ୟ ପଢ଼ିଚାଲି ନାହାନ୍ତି, ପ୍ରତ୍ୟେକଟି ଚିଠି ମଧ ସେ ଲେଖନ୍ତି ଓଡ଼ିଆରେ। ଯତୀନ୍ଦ୍ର ବାବୁଙ୍କର ଓଡ଼ିଆ ସାହିତ୍ୟର ଇତିହାସ ପ୍ରକାଶ ପାଇବା ପରେ ସେ ତାଙ୍କର ଆନନ୍ଦ ପ୍ରକାଶ କରିଥିଲେ ମୋ ପାଖରେ। ତାଙ୍କ (ପ୍ରଶାନ୍ତ ବାବୁ) ବିଷୟରେ ଲେଖିଲେ ଲେଖିବାର ସୀମା ରହିବ ନାହିଁ। ମୋର ଅତି ନିକଟ ସଂପର୍କୀୟ ବନ୍ଧୁ। ମୋ ପାଖରେ ରହି ବି.ଏ. ପରୀକ୍ଷା ଦେଇଥିଲେ। ଅର୍ଥନୀତିରେ ତ ସାରା ପୃଥିବୀରେ ତାଙ୍କର ଜ୍ଞାନ ଚହଳ ପକାଇ ଦେଇଛି; ଆପଣ ତାଙ୍କ ଓଡ଼ିଆ ପ୍ରୀତି ଜରିଆରେ ତାଙ୍କୁ ଅନ୍ତତଃ ଓଡ଼ିଶାରେ ଚିରଜୀବି କରାଇ ଦେଇଛନ୍ତି। ବ୍ୟକ୍ତି ହିସାବରେ ସେ କାଳ କାଳ ପାଇଁ ଅମର ରହିଯିବେ।

ନିଜ ଜ୍ଞାନର ଅଭାବରୁ ଆପଣମାନଙ୍କ ପରି ବିଜ୍ଞ ବ୍ୟକ୍ତିମାନଙ୍କ ପାଖକୁ ଚିଠି ଖଣ୍ଡେ ଲେଖିବାକୁ ମଧ ସାହସ ହୁଏ ନାହିଁ। ସମାଜରେ ବି ଶୋକ ପ୍ରକାଶ ଜନିତ ଲେଖା ସବୁ ପ୍ରକାଶ ପାଇଛି। କେହି କିନ୍ତୁ ତାଙ୍କୁ ଆପଣଙ୍କ ପରି ଅମର କରି ଦେଇପାରିନାହାନ୍ତି। ସେମାନଙ୍କର ଲେଖା ଇତିହାସ ଯତୀନବାବୁଙ୍କ ଜୀବନ ଓ ଜ୍ଞାନର, କିନ୍ତୁ ଆପଣଙ୍କ ଲେଖାଟି ପଢ଼ିଲେ କାହିଁକି କେଜାଣି ଆଖିରୁ ଲୁହ ଝରି ପଡୁଛି।

ଅଧିକ ଲେଖିଲେ ନିଜର ନିର୍ବୋଧତା ପ୍ରକାଶ ପାଇଯିବାର ଭୟ ଆସୁଛି। ତେଣୁ ରହୁଛି ପୁଣିଥରେ ଆପଣଙ୍କୁ ଓ ଆପଣ ଜୀବନ ଦାନ କରିଥିବା 'କ୍ଷେତ୍ରପାଳ' ଙ୍କୁ ଆନ୍ତରିକ ଅଭିନନ୍ଦନ ଜଣାଇ। // ଇତି //

ଶୁଭାକାଂକ୍ଷୀ

ଗଣେଶ୍ୱର ଦାସ

ଗଣେଶ୍ୱର ଦାସ

୨୯ ଫରେଷ୍ଟପାର୍କ
ଭୁବନେଶ୍ୱର - ୭୫୧୦୦୯

ଶ୍ରଦ୍ଧେୟ ହରପ୍ରସାଦ ବାବୁ

ସାହିତ୍ୟର ଲାଳିତ୍ୟ ଏବଂ ପ୍ରଶାସନ ଓ ନ୍ୟାୟପ୍ରଦାନର ଦାୟିତ୍ୱ, ଅଭିଳାଷ ଓ ଅଙ୍ଗୀକାର ଭିତରେ ମୋର ଏ ନଗଣ୍ୟ ଚିଠିଟି ଆପଣଙ୍କ ନଜରକୁ ନ ଆସିପାରେ, ତଥାପି ଆତ୍ମ ସନ୍ତୋଷ ପାଇଁ ମୂର୍ଖ ହେଲେ ବି କିଛିଟା ନଲେଖି ରହିପାରୁନାହିଁ।

୧୫ ଜୁଲାଇ, ୨୦୦୯ 'ସମାଜ'ରେ ପଢିଲି ଆପଣଙ୍କର ରେଭେନ୍ସାଭିଆନ୍। ଆପଣଙ୍କର ଲେଖାର ପ୍ରତିଟି ବାକ୍ୟରେ ଭରି ରହିଥିବା ଆଇଡ଼ିଆ ଅଫ୍ ରେଭେନ୍ସା। ମୋ ମନ ଭିତରକୁ ଅତୀତର ଆହ୍ୱାନରେ ଚହଲାଇ ଦେଲା। ମନ ଭିତରେ କଣ ସୃଷ୍ଟି ହେଲା ତାହା ପ୍ରକାଶ କରିବାର ସାମର୍ଥ୍ୟ ମୋର ନାହିଁ। ଆଇଡ଼ିଆର ଅଭାବରେ ନିଃସ୍ୱ, ଅସହାୟ ମୁଁ କ'ଣ ବା କହିପାରିବି ଜଣେ ଆଇଡ଼ିଆ ଭରପୁର ଧନୀ ବ୍ୟକ୍ତିଙ୍କୁ ? କେତେ କେତେ କ'ଣ ମନେ ପକାଇ ଦେଲେ ଆପଣ। ଆମେ ବେଶ୍ ସିନିୟର ଯଥା ରବି ରାୟ, ପ୍ରବୀର ପାଲିତ୍, ଗୋବିନ୍ଦ ଦାସ (ପରବର୍ତ୍ତୀ କାଳର ଆଡ୍‌ଭୋକେଟ୍ ଜେନେରାଲ ବାରିଷ୍ଟର ଗୋବିନ୍ଦ ଦାସ), ରାଜେନ୍ଦ୍ର ପ୍ରସାଦ ଦାସ ପ୍ରଭୃତିଙ୍କର ମାସିକ କଲେଜ ଦରମା ବୃଦ୍ଧିର ପ୍ରତିବାଦରେ ବିରାଟ ଆନ୍ଦୋଳନର ଆହ୍ୱାନ - ଗୋବିନ୍ଦ ବାବୁ ଏବଂ ରାଜେନ୍ଦ୍ର ବାବୁଙ୍କର ହୃଦୟସ୍ପର୍ଶୀ ଭାଷଣ - ଦୀର୍ଘ ଦୁଇମାସ ଧରି ଦୁଇଟି ଫେଜ୍‌ରେ ଧର୍ମଘଟ - ସୁନୀଲ୍ ନାମକ ଛାତ୍ରର ମୃତ୍ୟୁ - ସ୍ଲୋଗାନ୍, 'ସହୀଦ୍ ସୁନୀଲ୍ କରେ ପୁକାର୍, ଚୌଧୁରୀ ସରକାର ହୁସିୟାର'-ଇତ୍ୟାଦି। ସେତେବେଳର ରେଭେନ୍ସାଭିଆନ୍ ଏପରି ଏକ ପ୍ରଭାବ ସୃଷ୍ଟି କରିଥିଲା ଯାହା ଫଳରେ ରେଭେନ୍ସାର ସବୁ ଛାତ୍ର (ସିନିୟର ବା ଜୁନିଅର) ପରସ୍ପରକୁ ଚିହ୍ନୁଥିଲେ ଓ ଜାଣୁଥିଲେ। ଟାଉନବସ୍‌ରେ ବେଶ୍ ଭିଡ଼ରେ ଯିବା ଆସିବା ଅଥବା ଇଷ୍ଟ ବା ୱେଷ୍ଟ ହଷ୍ଟେଲରେ ରହଣୀ କିମ୍ବା କଟକର ଏକାସାହି ବସ୍ତିର ବାସିନ୍ଦା ଭାବେ ରହିବା ରେଭେନ୍ସାର ଆତ୍ମୀୟତା ସୃଷ୍ଟି କରିବାର ଗୋଟାଏ ଗୋଟାଏ ମାର୍ଗଥିଲା। ମୋ ପରି କିଛି କୃତିତ୍ୱ ନଥିବା କିମ୍ବା କୌଣସି ବାଟେ ନିଜର ନିଜତ୍ୱକୁ ପ୍ରକାଶ କରିପାରିନଥିବା ବ୍ୟକ୍ତିର ବଞ୍ଚିବାର ପ୍ରୟୋଜନ ନଥିଲେ ବି ଜୀବନ ଯାହା ପାଇଁ ବିରାଟ ବୋଝ ପରି ରହିଥାଏ ତା ପାଇଁ ରେଭେନ୍ସାର ସ୍ମୃତି ବହୁତ କିଛି। ଅନ୍ତରଙ୍ଗ ବନ୍ଧୁ ଗୌରକିଶୋର ଦାସ (ପୂର୍ବତନ କୁଳପତି) ଏବଂ ତାଙ୍କର ହଷ୍ଟେଲ ରହଣୀ ସବୁ ଯେମିତି ଏବେକାର କଥା। ମନେ ହୁଏ ମୃତ୍ୟୁ ପରେ ବି ସତେ ଯେମିତି ପଢ଼ାଉଥିବା ସାର୍‌ମାନେ ଆଇଡ଼ିଆ ଅଫ୍ ରେଭେନ୍ସା ଭିତରେ ଅମର ହୋଇ ରହିଥିବେ। ମୋର ଅଧାପକ ଭାବରେ ପ୍ରଥମ ଚାକିରୀ ସେଇ ରେଭେନ୍ସାରେ। ଯେଉଁ ରୁମ୍‌ରେ ପଢୁଥିଲି ସେଇ ରୁମ୍‌ରେ ପଢ଼ାଇଲି। ବହୁ ବର୍ଷ ଅଧାପନା ପରେ ବହୁ ବର୍ଷର ଅବସର ଜୀବନ ବିତାଇଲିଣି। ଏତେ ବର୍ଷ କାଳ ଅଗଣିତ ଛାତ୍ର ଛାତ୍ରୀଙ୍କର ସାର୍ ହୋଇଥିଲେ ବି ମୋ ସାର୍‌ଙ୍କ ପରି ସାର୍ ମିଳିବେ ନାହିଁ।

ଆପଣଙ୍କ ଲେଖାଟି ପଢିବା ପରେ ପରେ ରେଭେନ୍ସାରେ କାର୍ଯ୍ୟରତ ଜଣେ ବରିଷ୍ଠ ଅଧାପକ (ମୋର ପୂର୍ବତନ ଛାତ୍ର)ଙ୍କୁ ଫୋନ୍‌ରେ ଅନୁରୋଧ କଲି ସଦ୍ୟ ପ୍ରକାଶିତ ରେଭେନ୍ସାଭିଆନ୍‌ର ଗୋଟିଏ କପି ପଠାଇବା ଲାଗି। ପାଇବା ମାତ୍ରକେ ପଢିଚାଲିଲି ଏବଂ ପରେ ପରେ ଏ ଚିଠି ଲେଖୁଛି। ନୂଆ କଥା ଦେଖି ଆଶ୍ଚର୍ଯ୍ୟ ହେଲି। କୁଳପତି ନିଜେ ରେଭେନ୍ସାଭିଆନ୍‌ର ଏଡିଟର। କାହିଁକି କେଜାଣି ଟିକେ ଅଡୁଆ ଲାଗିଲା। କିନ୍ତୁ ସେ ଏଡିଟର ନ ହୋଇଥିଲେ (କୁଳପତି ନୁହନ୍ତି, ଦେବଦାସ ଛୋଟରାୟ) ରେଭେନ୍ସାଭିଆନ୍‌କୁ ଏମିତି ସୁନ୍ଦର ସଜାଇଥାନ୍ତା କିଏ ? Victor Hugo ଙ୍କ ସୁନ୍ଦର ବାକ୍ୟ (ଧାଡି ଦୁଇଟି)କୁ ମନେ ପକାଇ ଥାଆନ୍ତା କିଏ ? ପରେ ପରେ ଦେଖିଲି ମୁଁ ଭଲ ପାଉଥିବା ଏବଂ ମତେ ଭଲ ପାଉଥିବା ବ୍ୟକ୍ତି ଜଣଙ୍କୁ - When the heart Burn at Noon ଶେଷ ଧାଡି ଦୁଇଟି a place where the foot steps of my youth trembled on its verge, then took gres wings and leapt into the skies ମୋ ମନ ଭିତରେ ଆଇଡ଼ିଆ ଅଫ୍ ରେଭେନ୍ସା ଆଜାଡ଼ି ଦେଲ। ଆପଣଙ୍କର ପିଲାଦିନର କବିତାଟି ସୂଚାଇ ଦେଉଛି ପିଲାଟି ଦିନରୁ ଆପଣ ଆଇଡ଼ିଆର ଅଶେଷ ସମ୍ପତ୍ତିର ଅଧିକାରୀ ହୋଇଛନ୍ତି। ଆପଣଙ୍କର ଗୀତାଞ୍ଜଳିର ଓଡ଼ିଆ ଅନୁବାଦ ପାଖେପାଖେ ରଖିଥାଏ - ମନ ଦୁଃଖ ଥିଲାବେଳେ ପଢିଲେ ସାନ୍ତ୍ୱନା ମିଳେ। ବୟସରେ ସାନ ହେଲେ ବି ପିଲା ଦିନରୁ ଅନ୍ତରଙ୍ଗ ମୁହୂର୍ତ୍ତମାନ କଟିଥିବା ବ୍ୟକ୍ତି ଥିଲେ ଜେ.ପି.ଦା। ଶେଷ ଧାଡ଼ିରେ ତାଙ୍କର ବୌଦ୍ଧିକ ଆହ୍ୱାନ, "Let us all be witnesses to poety and

society". ଲଳିତ ମାନସିଂହ କିଛିଦିନ ଅଧ୍ୟାପନା କରିଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟରେ, କିନ୍ତୁ ଉ.ବି.ର କ୍ଲାସ ହେଉଥିଲା ରେଭେନ୍ସା କଲେଜରେ। ତେଣୁ ତାଙ୍କର ସହକର୍ମୀ ହେବାର ସୁଯୋଗ ମିଳିଗଲା। ତାଙ୍କ ବାପା ମତେ ବହୁତ ଭଲ ପାଉଥିଲେ। ସେ କରିଯାଇଥିବା ଉଇଲ ବିଷୟରେ ମୋର ଗୋଟିଏ ପ୍ରବନ୍ଧ 'ସମ୍ବାଦ'ରେ ପ୍ରକାଶ ପାଇଥିଲା। ସୀତାକାନ୍ତ ମହାପାତ୍ର ଓ ରମାକାନ୍ତ ରଥଙ୍କୁ ଭଲ ଭାବରେ ଜାଣିଥିଲେ ମଧ୍ୟ ସେମାନଙ୍କର କବିତା ବିଷୟରେ କିଛି କହିବାର ସାମାନ୍ୟତମ ଯୋଗ୍ୟତା ମୋର ନାହିଁ। ଖାଲି ଏତିକି ଯେ ମତେ ବହୁତ ଭଲ ଲାଗିଲା ଦୁଇଟିଯାକ କବିତା।

୨୦୦୫ ମସିହାରେ ଜଣେ ପ୍ରକାଶକ ବନ୍ଧୁ ବହୁତ ଅନୁରୋଧ କଲେ ଜୀବନର ଅଭିଜ୍ଞତା ବିଷୟ ଲେଖିବା ପାଇ। ମୋ ତୁଚ୍ଛ ଜୀବନର କି ବା ଅଭିଜ୍ଞତା। ୬/୭ ଦିନରେ କଣ ଟିକେ ଲେଖିଥିଲି ତାକୁ ସେ ବହି ଆକାରରେ ଛପାଇ ଥିଲେ। ରେଭେନ୍ସାରେ ପଢିବା ବିଷୟ ସେଥିରେ ଲେଖିଛି। ସଂକୋଚର ସହିତ ବହିଟି ପଠାଉଛି। ଖାଲି ରେଭେନ୍ସା କଲେଜ ବିଷୟକ ୨/୩ ପୃଷ୍ଠା ଦୟାପୂର୍ବକ ପଢିବେ ସମୟ ଓ ସୁବିଧା ହେଲେ।

ଆନ୍ତରିକ ଶୁଭେଚ୍ଛା ସହ - ରହିଲି। ଇତି

ଶୁଭାକାଂକ୍ଷୀ

ଗଣେଶ୍ୱର ଦାସ

# ପ୍ରଫେସର ହୃଦାନନ୍ଦ ରାୟ

ବିଶିଷ୍ଟ ଦାର୍ଶନିକ ତଥା ଓଡ଼ିଶା ଓ ଓଡ଼ିଶା ବାହାରେ ଜଣେ ବିଚକ୍ଷଣ ବକ୍ତା ଭାବରେ ପରିଚିତ ପ୍ରଫେସର ହୃଦାନନ୍ଦ ରାୟଙ୍କ ସହିତ ଅତି ଛୋଟ ଦିନୁ ଗଣେଶ୍ୱର ଦାସ ଆନ୍ତରିକତା ଓ ସ୍ନେହ ବନ୍ଧନରେ ବାନ୍ଧି ହୋଇ ରହିଯାଇଛନ୍ତି । 'ମନେପଡ଼େ' ଆତ୍ମ ଜୀବନୀରେ ପ୍ରଫେସର ରାୟଙ୍କ ସମ୍ବନ୍ଧରେ ଯାହା ଲେଖିଛନ୍ତି, ସେ ସବୁକୁ ଏଥିସହ ପୁଣି ଥରେ ସଂଲଗ୍ନ କରିବାକୁ ଉଚିତ ମନେ କରୁଛି । ତାଙ୍କର ପତ୍ରମାନଙ୍କରେ ପ୍ରକାଶ କରିଥିବା ସ୍ନେହ ଓ ଆନ୍ତରିକତାକୁ ଗଣେଶ୍ୱର ସାର୍ 'ମନେପଡ଼େ' ରେ ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି ।

- ସମ୍ପାଦକ

## ପ୍ରଫେସର ହୃଦାନନ୍ଦ ରାୟ

ଅଧ୍ୟାପକ ପାର୍ଥସାରଥିଙ୍କ ନିମନ୍ତ୍ରଣ ପାଇ ସେ ଦିନ 'ଚିରସନ୍ଧାନ' ପକ୍ଷରୁ ଆୟୋଜିତ ଭଞ୍ଜଜୟନ୍ତୀ ସମାରୋହରେ ଯୋଗ ଦେବାଲାଗି ସୂଚନା ଭବନକୁ ଯାଇଥାଏ । ସଭାରେ ପୌରୋହିତ୍ୟ କରିଥାନ୍ତି ପ୍ରଫେସର ହୃଦାନନ୍ଦ ରାୟ । ଅତି ଛୋଟ ଦିନରୁ ହୃଦାନନ୍ଦ ବାବୁଙ୍କ ଭାଷଣ ଶୁଣି ଶୁଣି ଆସିଥିବା ମୁଁ ପରିଣତ ବୟସରେ ମଧ ତାଙ୍କ ଭାଷଣ ଶୁଣିବାର ଲୋଭ ସମ୍ଭାଳି ନପାରି ସେ ଦିନ ସଭାକୁ ଯାଇଥିଲି ତାଙ୍କୁ ଦେଖିବା ଲାଗି ଏବଂ ଶୁଣିବା ଲାଗି । ସେ ମହାନ୍ ବ୍ୟକ୍ତିଙ୍କୁ ଦେଖିଲି, ଶୁଣିଲି, କଥାହେଲି ଏବଂ ଚାଲି ଆସିଲି । କିନ୍ତୁ ଘରେ ସେ ଦିନ ରାତିସାରା ମୁ ମନେ ପକାଉଥାଏ ତାଙ୍କୁ, ତାଙ୍କ ସମ୍ପର୍କକୁ, ତାଙ୍କ ଅଗାଧ ବିଦ୍ୟାକୁ, ତାଙ୍କର ଦମ୍ଭ, ସାହସ ଓ ଧୈର୍ଯ୍ୟକୁ ଏବଂ ତାଙ୍କ ସାମୟିକ ଭାଙ୍ଗି ପଡ଼ିବାକୁ । କେତେ ରକମ ଭାବନା ମତେ ବ୍ୟତିବ୍ୟସ୍ତ କରି ପକାଉଥାନ୍ତି । ଭାବୁଥାଏ, ତାଙ୍କର ବିଦ୍ୟା, ବୁଦ୍ଧି, ଜ୍ଞାନ ପ୍ରତି ଯଥେଷ୍ଟ ସମ୍ମାନ ଦିଆଯାଇପାରି ନାହିଁ । ପୁଣି ଭାବୁଥାଏ ଭଗବାନ୍ କାହିଁକି ତାଙ୍କୁ ଏ କୃତଘ୍ନ ସଂସାରରେ ଜନ୍ମ ଦେଲେ । ଅନେକ ତାଙ୍କ ଭାଷଣକୁ ଚିହ୍ନିଲେ ମଧ ତାଙ୍କୁ ଚିହ୍ନି ପାରିଲେ ନାହିଁ । ତା ପରେ ମନକୁ ବୁଝାଇଲି । ସେ ସିନା ଆମ ସଭିଙ୍କ ପାଖରେ ସହଜ ହୋଇ ଅବତାର ରୂପରେ ଅବତୀର୍ଣ୍ଣ ହେଲେ, କିନ୍ତୁ ତାଙ୍କ ପରି ଜ୍ଞାନୀ ବ୍ୟକ୍ତିଙ୍କୁ ଜାଣିବା କ'ଣ ଏତେ ସହଜ ? ଏମିତି ଭାବୁ ଭାବୁ ହଠାତ୍ ମନେ ପଡିଗଲା ହୃଦାନନ୍ଦ ବାବୁ ତାଙ୍କ ସହଧର୍ମିଣୀ ସର୍ଗୀୟା ରାୟ ପ୍ରଭାତ ନଳିନୀଙ୍କ ସ୍ମୃତି ଉଦ୍ଦେଶ୍ୟରେ ସଙ୍କଳନ କରିଥିବା ସ୍ମାରକୀ ବିଷୟ । ସ୍ମରଣିକାର ପ୍ରଥମ ଦ୍ୱିତୀୟ ଭାଗ ଦୁଇଟିଯାକ ପୁସ୍ତକ କାଢ଼ି ପଢ଼ିଲି । ସହଧର୍ମିଣୀଙ୍କ ମୃତ୍ୟୁ ଜନିତ ଦୁଃଖରେ ସମଦୁଃଖୀ ହୋଇ ହୃଦାନନ୍ଦ ବାବୁଙ୍କ ନିକଟ ସମାଜର ସବୁ ସ୍ତରର ବ୍ୟକ୍ତିଙ୍କର ଲେଖିଥିବା ଚିଠି ସବୁ ପଢ଼ିଚାଲିଲି । ଉଭୟ ହୃଦାନନ୍ଦ ବାବୁ ଏବଂ ସର୍ଗୀୟା ପ୍ରଭାତ ନଳିନୀ ଦେବୀଙ୍କ ପ୍ରତି ଏତେ ବନ୍ଧୁ ଓ ଆତ୍ମୀୟଙ୍କର ଏତେ ସ୍ନେହ, ଏତେ ଶ୍ରଦ୍ଧା, ଏତେ ଭକ୍ତି ଦେଖି ମୋ ନିଷ୍ପ୍ରଭ ଆଖି ଓ ନିସ୍ତେଜ ମନରେ ସେ ଦୁହିଁଙ୍କ ମହନୀୟତା କଳି ପାରୁନଥାଏ ।

ହୃଦାନନ୍ଦ ରାୟଙ୍କୁ ନ ଜାଣିଥିବା ବା ନ ଶୁଣିଥିବା ବ୍ୟକ୍ତି ସଂଖ୍ୟା ବୋଧହୁଏ ଅତିକମ୍ । କିନ୍ତୁ ମୋ ମନ ଭିତରେ ମୁଁ ତାଙ୍କୁ ଯେମିତି ଓ ଯେପରି ଜାଣିଛି ସେ ବିଷୟ ସମସ୍ତଙ୍କ ପାଖରେ ପ୍ରକାଶ କରି କିଛିଟା ଆନନ୍ଦ ଲାଭ କରିବାର ଇଚ୍ଛାକୁ ରୋକି ପାରୁନାହିଁ । ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱ ମୋ ପାଇଁ ତାଙ୍କ ପ୍ରତି ସୃଷ୍ଟି କରିଥିଲା ଆନ୍ତରିକ ଶ୍ରଦ୍ଧା, ଭକ୍ତି, ଭଲପାଇବା ଏବଂ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହେବାର ଗଭୀର ପ୍ରୟାସ - ଏସବୁର ଗୋଟିଏ ବିଚିତ୍ର ସମ୍ମିଶ୍ରଣ । ରେଭେନ୍ସା କଲିଜିଏଟ୍ ସ୍କୁଲରେ ଷଷ୍ଠ ଶ୍ରେଣୀ ପଢୁଥିବା ବେଳଠାରୁ ତାଙ୍କ ବକ୍ତୃତା ଏବଂ ବ୍ୟକ୍ତିତ୍ୱ ମୋ ଉପରେ ପ୍ରଭାବ ପକାଇଥିଲା । ଶନିବାର ସକାଳୁଆ ସ୍କୁଲର ଶେଷ ପିରିଅଡ୍‌ରେ କ୍ଲବ କ୍ଲାସ ହୁଏ । ଅର୍ଥାତ୍; ସ୍କୁଲର ପିଲାମାନେ ଇଚ୍ଛା ଅନୁସାରେ ଯେ କୌଣସି କ୍ଲବ୍‌ର ସଭ୍ୟ ହୋଇ ନିୟମିତ ଭାବରେ କ୍ଲବ୍ କ୍ଲାସ୍‌ରେ ଯୋଗ ଦେବେ । ସେତେବେଳର ଛୋଟପିଲା ମୁଁ story telling କ୍ଲବରେ ଯୋଗ ଦେଇଥାଏ । କିନ୍ତୁ ମୋ ଠାରୁ ମାତ୍ର ୨ଟି ଶ୍ରେଣୀ ଉପରେ ପଢୁଥିବା ସେତେବେଳର ହୃଦାନନ୍ଦ ରାୟ ମୋ ଉପରେ କି ପ୍ରଭାବ ପକାଇଲେ କେଜାଣି story telling କ୍ଲବ ଛଡି 'ଡିବେଟିଂ' କ୍ଲବ୍‌ରେ ଯୋଗଦେଲି । ସେତେବେଳର ବାଳକ ହୃଦାନନ୍ଦ ବାବୁଙ୍କୁ ଶୁଣିବା ଏବଂ ତାଙ୍କ କଥା ମାନି ବକ୍ତୃତା ଦେବାରେ ଆନନ୍ଦ ମିଳୁଥିଲା । ଆମ ଘର ପାଖରେ ଥାଏ ୬ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ଘର । କିଶୋର ଅବସ୍ଥାରେ ହୃଦାନନ୍ଦ ବାବୁ, ଗୋପବନ୍ଧୁ ରଥ (ପରବର୍ତ୍ତୀ କାଳର ଚିଫ୍ ଇଞ୍ଜିନିୟର), ରଜତ କର ପ୍ରଭୃତି ବିଚ୍ଛନ୍ଦ ବାବୁଙ୍କ ପ୍ରେରଣାରେ ବିଚ୍ଛନ୍ଦ ବାବୁଙ୍କ ଘରେ ହିଁ ଭଞ୍ଜ ଜୟନ୍ତୀ ଆରମ୍ଭ କରିଥିଲେ । କି ଉତ୍ସାହ, କି ଉଦ୍ଦୀପନା

ବାଳକ ହୃଦାନନ୍ଦଙ୍କ ଠାରେ । ସେ ସମୟରୁ ତାଙ୍କର କଣ୍ଠସ୍ଥ ଥିଲା ଉପେନ୍ଦ୍ର ଭଞ୍ଜଙ୍କର ଅଧିକାଂଶ ଛାନ୍ଦ ଓ କବିତା । ପାଲାଗାୟକର ପୋଷାକ ପିନ୍ଧି ଭଞ୍ଜ କବିତା ଗାନ କରି ପାଲା କରୁଥାନ୍ତି ସେ ସେଇ ବିଛନ୍ଦ ବାବୁଙ୍କ ଘର ବାରଣ୍ଡାରେ । ତାଙ୍କର ଉତ୍ସାହ ଅନେକ ପରିମାଣରେ ମତେ ଉତ୍ସାହିତ କରୁଥାଏ । ରୁଗ୍‌ଣ ସ୍ୱାସ୍ଥ୍ୟ ହେତୁ ଭାଙ୍ଗି ପଡୁଥିବା ମୁଁ ହୃଦାନନ୍ଦ ବାବୁଙ୍କ ପିଲାବେଳର ମାନସିକ ଦୃଢ଼ତା ଦ୍ୱାରା ଆକର୍ଷିତ ହୋଇ ପଡୁଥାଏ ।

ହୃଦାନନ୍ଦ ବାବୁ ପବିତ୍ର କାଶୀର ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଦର୍ଶନ ଶାସ୍ତ୍ରରେ ଏମ୍.ଏ. ପଢୁଥାନ୍ତି । କାଶୀରେ ଥାଇ ମଧ୍ୟ ତାଙ୍କର ପ୍ରଭାବ ଓ ପ୍ରେରଣା ମୋ ପାଖକୁ ପଠାଉଥାନ୍ତି ଯାହା ଫଳରେ କି ମୁଁ ଦର୍ଶନ ଶାସ୍ତ୍ରରେ ଅନର୍ସ ପଢିଲି । ଏମ୍.ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହେବାର କୃତିତ୍ୱ ଅର୍ଜନ କରିଥିବା ହୃଦାନନ୍ଦ ବାବୁ ମୋ ପାଇଁ ବେଶୀ ବେଶୀ ଆଦର୍ଶ ହୋଇ ପଡିଲେ । ଓଡ଼ିଶାରେ ଦର୍ଶନ ଶାସ୍ତ୍ରରେ ଏମ୍.ଏ. ପଢିବାର ସୁବିଧା ନଥିବାରୁ ଏବଂ ମୋର ଦୁର୍ବଳ ସ୍ୱାସ୍ଥ୍ୟ କାରଣରୁ ମତେ ବାହାରକୁ ଛାଡିବା ଲାଗି ରାଜି ନଥିବା ମୋର ବାପା ମତେ ରେଭେନ୍ସା କଲେଜ୍‌ରେ ଇଂରାଜୀରେ ଏମ୍.ଏ. ପଢିବାକୁ ଏକରକମ ବାଧ କଲେ । ଏ ଖବର ପାଇ ହୃଦାନନ୍ଦ ବାବୁ ବନାରସ୍‌ରୁ ଆସିଲେ ମୋ ବାପାଙ୍କୁ ଭେଟିବା ଲାଗି । ତାଙ୍କର ଦୃଢୋକ୍ତି ମୋର ଏବେ ବି ମନେ ପଡ଼ିଯାଉଛି । "ମଉସା, ଗଣେଶ୍ୱରର ସ୍ୱାସ୍ଥ୍ୟର ଦାୟିତ୍ୱ ମୁଁ ବହନ କରିବି, ତାଙ୍କୁ ମୋ ସାଙ୍ଗରେ କାଶୀ ଛାଡନ୍ତୁ । ଆପଣଙ୍କ ପାଖରୁ ଯାଇ ସେ ସମ୍ପୂର୍ଣ୍ଣ ଭାବରେ ମୋ ଦାୟିତ୍ୱରେ ରହିବ" । ମୋ ପାଇଁ ଅଯଥା ବ୍ୟସ୍ତ ହେଉଥବା ମୋର ବାପା ଏଇମାତ୍ର କେତୋଟି କଥାରେ ମତେ ପାଖରୁ ଛାଡ଼ିବା ଲାଗି ରାଜି ହୋଇଗଲେ । ବିଦ୍ୟାଅଧ୍ୟୟନ ଲାଗି କାଶୀ ଗଲି । ସେଇଦିନଠାରୁ ହୃଦାନନ୍ଦ ବାବୁଙ୍କୁ ନିଜ ଅଗ୍ରଜ ଠାରୁ ଅଧିକ ମନେ କରି ମୋର ବିଦ୍ୟା, ସ୍ୱାସ୍ଥ୍ୟ ଏବଂ ସବୁ କିଛି ସମସ୍ୟା ତାଙ୍କଠାରେ ସମର୍ପି ଦେଲି ।

ସେତେବେଳେ ଡ଼ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କ ସମ୍ପର୍କରେ ଆସିଥିବା ହୃଦାନନ୍ଦ ବାବୁ ବନାରସ୍ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଦର୍ଶନ ଶାସ୍ତ୍ରରେ ଗବେଷଣା କରୁଥାନ୍ତି ବିଶ୍ୱବିଖ୍ୟାତ ଦାର୍ଶନିକ ଡକ୍ଟର ଟି.ଆର.ଭି. ମୂର୍ତ୍ତିଙ୍କ ତତ୍ତ୍ୱାବଧାନରେ । ଡକ୍ଟର ମୂର୍ତ୍ତି ଏବଂ ଅନ୍ୟାନ୍ୟ ଦର୍ଶନ ଅଧ୍ୟାପକ ବୃନ୍ଦ ହୃଦାନନ୍ଦ ବାବୁଙ୍କ ବିଦ୍ୟା ଓ ବିଜ୍ଞତାର ପରିଚୟ ପାଇ ସାରିଥାନ୍ତି । ତାଙ୍କର ଇଂରାଜୀରେ ଭାଷଣ ସାରା ବିଶ୍ୱବିଦ୍ୟାଳୟରେ ଚହଳ ପକାଇଥାଏ । ଚାକିରୀର ମୋହ ଛାଡି ସେ ଦୀର୍ଘ ଛ' ବର୍ଷ ଗବେଷଣାରେ ନିଜକୁ ହଜାଇଦେଲେ । ଡକ୍ଟର ମୂର୍ତ୍ତିଙ୍କର ଏକାନ୍ତ ଇଚ୍ଛା, ହୃଦାନନ୍ଦ ବାବୁ ଆହୁରି ପଢନ୍ତୁ ଏବଂ ଆହୁରି ଜାଣନ୍ତୁ । ସେ ଶୀଘ୍ର ପିଏଚ.ଡି. ଡିଗ୍ରୀ ଲାଭ କରନ୍ତୁ, ଏଥିପାଇଁ ଡକ୍ଟର ମୂର୍ତ୍ତି ଟିକେ ବି ତତ୍ପର ନଥିଲେ । ବିଭାଗୀୟ ମୁଖ୍ୟ ବିଖ୍ୟାତ ଦାର୍ଶନିକ ଡକ୍ଟର ବି.ଏଲ୍. ଆତ୍ରେୟ ଏବଂ ଅଧ୍ୟାପକ ସ୍ୱାମୀ ଅଗେହାନନ୍ଦଙ୍କ ଅନୁରୋଧରେ ଗବେଷଣାରତ ହୃଦାନନ୍ଦ ବାବୁ ଆମର କେତୋଟି କ୍ଲାସ ନେଲେ । କାଶୀରେ ଜଣେ ଓଡ଼ିଆ ଆମକୁ ପଢାଉଛନ୍ତି - ଏଥିରେ ବହୁତ ଗର୍ବ ଅନୁଭବ କରୁଥାଉ ମୁଁ ଏବଂ ମୋର ଓଡ଼ିଆ ସହପାଠୀମାନେ । ହଷ୍ଟେଲର ତାଙ୍କ ରୁମ୍‌ରେ 'ଶଙ୍କର'ଙ୍କର ଫଟ ଟଙ୍ଗା ହୋଇଥାଏ । ସେଇ ରୁମ୍‌କୁ ଡକାଇ ମୋ ସାଙ୍ଗରେ ବହୁତ ଗପ କରନ୍ତି । ଗପ ଭିତରେ କେତେ କଠିନ ଦର୍ଶନର ବିଷୟବସ୍ତୁ ସବୁ ସରଳ ହୋଇଯାଉଥାଏ ।

କାଶୀରେ ଗବେଷଣା କରୁଥିବା ସମୟରେ ହୃଦାନନ୍ଦ ବାବୁଙ୍କର ଶୁଭବିବାହ କାର୍ଯ୍ୟ ସମ୍ପନ୍ନ ହୋଇଥିଲା । ନୂଆ ଭାଉଜଙ୍କ ବିଷୟରେ ଆମେ ପଚାରୁ ଏବଂ ସେ କହନ୍ତି । ତାଙ୍କର ଭାଷା, ତାଙ୍କର ବର୍ଣ୍ଣନା, ତାଙ୍କର ଆନନ୍ଦ ଏବଂ ତାଙ୍କର ଆଖି ଲୁହରେ ଭାଉଜଙ୍କ ପରିଚୟ ସାଙ୍ଗକୁ ଆମକୁ ମିଳୁଥିଲା ଗୋଟିଏ ସୁନ୍ଦର, ଆଦର୍ଶ ଏବଂ ଅନ୍ତର ଦେଇ ଭଲ ପାଉଥିବା ସ୍ୱାମୀଟିର ପରିଚୟ । ଅନେକ ଥର ହୃଦାନନ୍ଦ ବାବୁ ଭାଙ୍ଗି ପଡ଼ିଥିବାର ବି ମୁଁ ଦେଖିଛି । ନବ ବିବାହିତ ସ୍ୱାମୀ ପକ୍ଷରେ ପତ୍ନୀଙ୍କୁ ଦୂରରେ ଛାଡ଼ି ଏକାକୀ କାଶୀରେ ରହିବା ବେଶ୍ କଷ୍ଟ ଦାୟକ ଥିଲା । କିନ୍ତୁ ଭାଙ୍ଗିପଡ଼ିଲେ ମୁଁ ଟିକେ ବି ବିଚଳିତ ହୁଏ ନାହିଁ । ବରଂ ଖୁସି ହୁଏ, କାରଣ ଭାଙ୍ଗିପଡ଼ିଲେ ହିଁ ପର ମୁହୂର୍ତ୍ତରେ ସେ ଲାଇବ୍ରେରୀ ଯାଇ ନିଜର ଗବେଷଣା, ଅଧ୍ୟୟନ ଭିତରେ ଶକ୍ତି ରୂପିଣୀ 'ଭାଉଜ'ଙ୍କୁ ଦର୍ଶନ କରିବେ ଏବଂ ନୂତନ ଉତ୍ସାହରେ ମାତି ଉଠିବେ । ତାହା ହିଁ ହୁଏ ।

ଗବେଷଣା ସରିଲା, କି ବିରାଟ ସନ୍ଦର୍ଭ । ଟାଇପ୍ କାମ, ବନ୍ଧାଇ କାମ ସବୁ ସରିଲା । ବିଶ୍ୱବିଦ୍ୟାଳୟ ଅଫିସ୍‌ରେ ଦାଖଲ୍ ହେଲା । ୨ଜଣ ଯାକ ପରୀକ୍ଷକ ଆମେରିକାର । ସନ୍ଦର୍ଭଟିର ଉଚ୍ଚ ପ୍ରଶଂସା କରିବା ସଙ୍ଗେସଙ୍ଗେ ଜଣେକ ପରୀକ୍ଷକ ଗୋଟିଏ ଦୁଇଟି ସ୍ଥାନରେ ସାମାନ୍ୟ ପରିବର୍ତ୍ତନ ପାଇଁ ପରାମର୍ଶ ଦେଲେ । ଏହା ଏକ ସାଧାରଣ କଥା । କିନ୍ତୁ ହୃଦାନନ୍ଦ ବାବୁଙ୍କୁ ଏହା ସାଧାରଣ ମନେହେଲା ନାହିଁ । ମୋର ଜ୍ଞାନ ସୀମିତ ଥିଲେ ମଧ୍ୟ ମୁ ଦେଖିଛି ଏବଂ ଜାଣିଛି ସେ ଯାହା ପଢିଛନ୍ତି, ସନ୍ଦର୍ଭଟିରେ

ଯାହା ଲେଖା ହୋଇଛି । କେତେ ଦିନର କେତେ ପରିଶ୍ରମ । ସନ୍ଦର୍ଭଟି ଯେପରି ଜ୍ଞାନର ଗୋଟିଏ ଭଣ୍ଡାର । ଦର୍ଶନ ବିଭାଗ ଅଧ୍ୟାପକମାନଙ୍କର ଉଚ୍ଚ ପ୍ରଶଂସା । ତାହା ହିଁ ଥିଲା ତାଙ୍କ ସାଧନାର ମୂଲ୍ୟ । ସେ ପିଏଚ.ଡି. ଡିଗ୍ରୀ ପାଇଁ ବ୍ୟାକୁଳ ନଥିଲେ ।

ଫୁଲବ୍ରାଇଟ୍ ସ୍କଲାରସିପ୍ ପାଇ ଦର୍ଶନ ଶାସ୍ତ୍ରରେ ଉଚ୍ଚଶିକ୍ଷା ଲାଗି ଆମେରିକା ଯିବାର ସ୍ଥିର ହେଲା । ଏ ବୃତ୍ତି କ୍ୱଚିତ୍ ଛାତ୍ରଙ୍କୁ ମିଳିଥାଏ । କିନ୍ତୁ ଯେତେବେଳେ ଜାଣିବାକୁ ପାଇଲେ ଆମେରିକା ବିଶ୍ୱବିଦ୍ୟାଳୟ ନିୟମାନୁଯାୟୀ ଗବେଷଣା କରିବା ପୂର୍ବରୁ ଆମେରିକାରେ ଆଗ ତାଙ୍କୁ ଏ.ଏମ. ଡିଗ୍ରୀ ପାଇଁ ପଢିବାକୁ ହେବ, ଦୀର୍ଘକାଳ ଗବେଷଣାରତ ହୃଦାନନ୍ଦ ବାବୁ ଏଥିରେ ରାଜି ହେଲେ ନାହିଁ । ସେ ଆମେରିକାର ବିଶ୍ୱବିଦ୍ୟାଳୟକୁ ସିଧାସଳଖ ଲେଖିଲେ, "Either Ph.D or no degree" ଏ ବିଷୟ ଫୁଲବ୍ରାଇଟ୍‌ର କର୍ମକର୍ତ୍ତାଙ୍କୁ ମଧ୍ୟ ଜଣାଇଲେ । ନିକଟ ଅତୀତରେ ହୃଦାନନ୍ଦ ବାବୁ ଆମେରିକା ଯାଇ ବିଭିନ୍ନ ବିଶ୍ୱ ବିଦ୍ୟାଳୟମାନଙ୍କରେ ଭାଷଣ ଦେବା ବିଷୟ ଶୁଣିବା ବେଳେ ମୋର ମନେ ପଡୁଥାଏ ତାଙ୍କ ଚିଠି, "Either Ph.D. or no degree" ଦୃଢ଼ ମନବଳ ସାଙ୍ଗକୁ ଅଦ୍ଭୁତ ଖିଆଲ୍ ତାଙ୍କର ।

ରେଭେନ୍ସା କଲେଜରେ ଅଧ୍ୟାପନ କାର୍ଯ୍ୟରେ ଯୋଗ ଦେଲେ । ସ୍ପଷ୍ଟବାଦୀ ହୃଦାନନ୍ଦ ବାବୁଙ୍କୁ ସେତେବେଳର ସରକାରୀ ମହଲ ସହି ପାରିଲେ ନି । ବଦଳି କଲେ ସୁଦୂର ଜୟପୁରକୁ । ସରକାର ଭାବିଥିଲେ ହୃଦାନନ୍ଦ ବାବୁ ବଦଳି ରଦ୍ଦ ଲାଗି ସରକାରଙ୍କ ଦ୍ୱାରସ୍ଥ ହେବେ । କିନ୍ତୁ ଯେ 'ବଦଳି'କୁ ବଦଳି ପରି ଗ୍ରହଣ ନକରିବ, ତା ପାଇଁ ବଦଳିର କିଛି ଅର୍ଥ ନଥାଏ । ହସି ହସି ସେ ଯାଇଥିଲେ ଜୟପୁର । ତାଙ୍କର ବିଦ୍ୟା ଅଧ୍ୟୟନ, ଅଧ୍ୟାପନା ଓ ଭାଷଣ ସବୁ କିଛି ପୂର୍ବପରି ଚାଲିଲା । କଟକ ଓ ଜୟପୁର ଭିତରେ ସେ କିଛି ଫରକ୍ ଦେଖିଲେ ନାହିଁ । ବରଂ ଜୟପୁର ଛାଡ଼ିଲା ବେଳକୁ ଜୟପୁର ବାସୀଙ୍କ ଆଖିରେ ଲୁହ । ସେମାନେ ତାଙ୍କୁ ଛାଡ଼ିବା ପାଇଁ ରାଜି ନଥିଲେ ।

ପୁରୀ ଏସ୍.ସି.ଏସ୍. କଲେଜରେ ମୁଁ ଓ ହୃଦାନନ୍ଦ ବାବୁ କିଛି ବର୍ଷ ରହିଥିଲୁ ତାଙ୍କର ଓ ଭାଉଜଙ୍କ ସ୍ନେହ ମତେ ତାଙ୍କର ଆହୁରି ନିକଟକୁ ଟାଣିନେଲା । ମତେ ସାଙ୍ଗରେ ନେଇ ସେ ଦୁଇଟି ଜାଗାକୁ ଯାଆନ୍ତି । ସମୁଦ୍ର ଏବଂ ଜଗନ୍ନାଥ ମନ୍ଦିର । ସମୁଦ୍ର ଢେଉର ଗର୍ଜନ ସାଙ୍ଗରେ ତାଳ ଦେଇ ଦାର୍ଶନିକ ହୃଦାନନ୍ଦ ବାବୁ ଉଚ୍ଚ ସ୍ୱରରେ କେତେ ଦର୍ଶନ ବଖାଣି ଯାଆନ୍ତି । ତାଙ୍କ ପାଇଁ ସମୁଦ୍ର ଥିଲା "Liquified Jagannath" କିନ୍ତୁ ଶ୍ରୀମନ୍ଦିରରେ solid ଜଗନ୍ନାଥଙ୍କୁ ଦର୍ଶନ କଲାବେଳେ ସେ ସମ୍ପୂର୍ଣ୍ଣ ନୀରବ ଥାଆନ୍ତି । ଆଖିରୁ ଲୁହ ଝରାନ୍ତି । ମହାପ୍ରସାଦ ସେବନରେ ତାଙ୍କର କି ଆନନ୍ଦ । ସେଇ ଜଗନ୍ନାଥଙ୍କ ପାଖରେ ଦୁହେଁଯାକ ଶପଥ ନେଲୁ ସରକାର ଦେଇଥିବା ଦାୟିତ୍ୱ ସମ୍ପାଦନା କରି ପାଶ୍ଚାତ୍ୟ ଦର୍ଶନର ଇତିହାସ ଉପରେ ଏକ ପୁସ୍ତକ ଲେଖିବା ପାଇଁ । ଲେଖା ଆରମ୍ଭ ହେଲା । କିନ୍ତୁ ହୃଦାନନ୍ଦ ବାବୁଙ୍କର କଟକ ବଦଳି ହୋଇଗଲା । ମୁଁ କିନ୍ତୁ ସମୟ ଓ ସୁବିଧା ଦେଖି ଟାଣି ନିଏ ଶ୍ରୀକ୍ଷେତ୍ରକୁ । ହୃଦାନନ୍ଦ ରାୟଙ୍କୁ ବକ୍ତା ଭାବରେ ପାଇବା ଲାଗି କେତେ ଅନୁଷ୍ଠାନ ବ୍ୟାକୁଳ ହୁଅନ୍ତି । ତେଣୁ ତାଙ୍କ କାର୍ଯ୍ୟକ୍ଷେତ୍ରରୁ ତାଙ୍କୁ ନେଇଯିବା ଦାୟିତ୍ୱ ଥାଏ ମୋର । ତାଙ୍କୁ ଧୀରସ୍ଥିର ଭାବରେ ବସାଇବା ଦୟିତ୍ୱ ମୋର । ତାପରେ ତାଙ୍କ କଣ୍ଠରୁ ମୂଲ୍ୟବାନ୍ ବିଷୟବସ୍ତୁ ନିସୃତ ହୁଏ । ମନ ଭିତରେ ସବୁ ପୁସ୍ତକକୁ ସଜାଡି ରଖିଥିବା ହୃଦାନନ୍ଦ ବାବୁଙ୍କ ପାଇଁ କୌଣସି ପୁସ୍ତକର ଆବଶ୍ୟକତା ନଥାଏ ସେ ଯାହା କହନ୍ତି ମୁଁ ଲେଖି ଚାଲେ । ଏମିତି ଭାବରେ ୪୫୨ ପୃଷ୍ଠାର ପୁସ୍ତକଟିଏ ପ୍ରସ୍ତୁତ କରି ପାରିଲୁ । ପୁସ୍ତକଟିର ପ୍ରାକ୍‌କଥନରେ ଯଦିଓ ଲେଖାଅଛି, "ଏ ଗ୍ରନ୍ଥର ପ୍ରତ୍ୟେକ ଅଂଶ ପାଇଁ ଉଭୟ ଲେଖକ ସମଭାବରେ ଦାୟୀ", ମୁଁ କହିବି ମୋର ଦାୟିତ୍ୱ କେବଳ ଥିଲା ହୃଦାନନ୍ଦ ବାବୁଙ୍କୁ ବକ୍ତା ରୂପେ ପାଇବା ଲାଗି ବ୍ୟକ୍ତି ଓ ଅନୁଷ୍ଠାନ ମାନଙ୍କରେ ସସ୍ନେହ ଓ ସଭକ୍ତି ନିମନ୍ତ୍ରଣରୁ ଦୂରେଇ ନେଇ ତାଙ୍କ ଭିତରେ ଥିବା ଦାର୍ଶନିକ ଚିନ୍ତାଧାରାର ଭାଷା ମାଧ୍ୟମରେ ଏକ ଶୃଙ୍ଖଳିତ ରୂପରେଖ ତାଙ୍କ ଦ୍ୱାରା ହିଁ ଗଢାଇନେବା । ପୁସ୍ତକଟିରେ ପାଶ୍ଚାତ୍ୟ ଦାର୍ଶନିକମାନଙ୍କ ବିଷୟରେ ଏତେ କଥା କୁହାଯାଇଛି ଯେ ମୋର ମନେ ହେଉଥିଲା ଏହାଠାରୁ ଅଧିକ କିଛି କୁହାଯାଇ ପାରିନଥାନ୍ତା । କିନ୍ତୁ ହୃଦାନନ୍ଦ ବାବୁ ଇଂରାଜୀ କବି ବାଇରନ୍‌ଙ୍କର ବାକ୍ୟ ଦୁଇଟି ମାଧ୍ୟମରେ ନିଜର ସୀମିତ ଜ୍ଞାନ ବିଷୟରେ ସଚେତନତା ପାଠକମାନଙ୍କୁ ଜଣାଇ ଦେବାକୁ ଚାହିଁଲେ । "What is writ is writ, would it been worthier". ଅର୍ଥାତ୍ ଯାହା ଲେଖି ହୋଇଗଲା, ଲେଖି ହୋଇଗଲା ହୁଏତ ଏହା ଆହୁରି ଭଲ ହୋଇପାରିଥାନ୍ତା ।

ପ୍ରବୀଣ ବକ୍ତା, ଜ୍ଞାନୀ, ବିଦ୍ୱାନ ଓ ଦାର୍ଶନିକ ହୃଦାନନ୍ଦ ବାବୁଙ୍କ ପାଖରେ ପ୍ରଶାସନିକ ଦକ୍ଷତା କିଛି କମ୍ ନଥିଲା। ସମସ୍ୟାବହୁଳ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜ୍‌ର ଅଧକ୍ଷ ଥିଲାବେଳେ ସେ ଚକାଡୋଳାଙ୍କ ନାମ ନେଇ ନେଇ, ସମୁଦ୍ରର ଗର୍ଜନ ବିଷୟ ବର୍ଣ୍ଣନା କରି ସଫଳତାରେ ଶୀର୍ଷକୁ ଯାଇ ପ୍ରଶାସନିକ ଦକ୍ଷତାର ପରିଚୟ ଦେଇଥିଲେ। ପର୍ଯ୍ୟଟନ ବିଭାଗର ଡେପୁଟି ଡାଇରେକ୍ଟର ଭାବରେ ପର୍ଯ୍ୟଟକମାନଙ୍କୁ ଆକର୍ଷଣ କରିବା ଏବଂ ସେମାନଙ୍କର ସୁବିଧା ଦିଗରେ ନୂତନ ଉନ୍ନତି ମୂଳକ ପଦକ୍ଷେପ ମାନ ଗ୍ରହଣ କରିଥିଲେ।

ବନାରସ୍‌ରେ ଥିବାବେଳେ ପତ୍ନୀଙ୍କର ବିରହକୁ ହୃଦାନନ୍ଦବାବୁ ଦାର୍ଶନିକ ଚିନ୍ତାଧାରା ଭିତରେ ଯେପରି ଭାବରେ ଅତିକ୍ରମ କରିପାରିଥିଲେ, ତା ଠାରୁ ଅଧିକ ସଫଳତାର ସହିତ ସେ ଅତିକ୍ରମ କଲେ ପତ୍ନୀଙ୍କର ମୃତ୍ୟୁକୁ। ଆହୁରି ପଢିଲେ, ଆହୁରି ଭାଷଣ ଦେଲେ। Imanuel Kant, Dialectic, Sankara as a romantic philosophy ପ୍ରଭୃତି ଉଚ୍ଚକୋଟୀର ପୁସ୍ତକମାନ ପ୍ରକାଶ କଲେ ପୃଥିବୀର ଦର୍ଶନ ଛାତ୍ରମାନଙ୍କ ପାଇଁ।

ଶ୍ରୀମତୀ ରାୟ ପ୍ରଭାତ ନଳିନୀ ସ୍ମାରକୀ ଗ୍ରନ୍ଥ ଦୁଇଟିରେ ଶୁଭେଚ୍ଛୁମାନଙ୍କର ଶ୍ରଦ୍ଧାଞ୍ଜଳିଗୁଡ଼ିକ ଆଦର ଓ ଯତ୍ନର ସହିତ ଯେପରି ଲିପିବଦ୍ଧ କରିଛନ୍ତି ମନେ ହୁଏ ସତେ ଯେପରି ଭାଉଜ ବଞ୍ଚିଛନ୍ତି ଏବଂ ଆଦର ଓ ଯତ୍ନର ସହିତ ତାଙ୍କୁ ନାନାଦି ଅଳଙ୍କାରରେ ସଜାଇ ଅଧିକ ଜୀବନ୍ତ କରାଯାଇଛି। ମନେ ହୁଏ ଦାର୍ଶନିକ ହୃଦାନନ୍ଦ ବାବୁ ଭାଉଜଙ୍କ ମୃତ୍ୟୁକୁ ସ୍ୱୀକାର କରୁନାହାନ୍ତି। ଶାହାଜହାନ୍ ସିନା ତାଙ୍କ ପତ୍ନୀଙ୍କ ସ୍ମୃତି ପାଇଁ ତାଜ୍‌ମହଲ ଗଢିଥିଲେ। କିନ୍ତୁ ହୃଦାନନ୍ଦ ବାବୁ ତ ତାଙ୍କ ପତ୍ନୀଙ୍କ ମୃତ୍ୟୁପରେ ବି ବଞ୍ଚାଇ ରଖିଛନ୍ତି। ତାଙ୍କ ପାଇଁ ସ୍ମୃତିର ଆବଶ୍ୟକତା ନାହିଁ, ତାଜମହଲ ତାଙ୍କ ପାଇଁ ତୁଚ୍ଛ। ଏ ଚିନ୍ତାଧାରା ଏ ମନୋବୃତ୍ତି ପାଇଁ କେତେ ସାଧନା, କେତେ ତ୍ୟାଗ ଯେ ଲୋଡ଼ା କଳି ହୁଏ ନାହିଁ।



# ପ୍ରଫେସର ଡକ୍ଟର ଗୌରାଙ୍ଗ ଚରଣ ନାୟକ

ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ତଥା ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ ଦର୍ଶନ ଶାସ୍ତ୍ର ପ୍ରଫେସର ଏବଂ ପୂର୍ବତନ ସିଣ୍ଡିକେଟ ମେମ୍ବର ପ୍ରଫେସର ଡଃ ଗୌରାଙ୍ଗ ଚରଣ ନାୟକଙ୍କର ଅନେକ ଚିଠି ଓ ପ୍ରବନ୍ଧ ସାରଙ୍କ ବହି ଆଲ୍ମାରୀରେ ଦେଖିଲି । ଡଃ ନାୟକ ତିନି ବର୍ଷ ପାଇଁ Indian Council of Philosophycal Research Executive Member ରେ All Orissa Philosophy Association ଥିଲେ । ୨ବର୍ଷ ପାଇଁ ଭାରତୀୟ ଦର୍ଶନ ପରିଷଦର ସାଧାରଣ ସଭାପତି ଥିଲେ । ବର୍ଷକ ପାଇଁ All Orissa Philosophy Association ର ସାଧାରଣ ସଭାପତି ଥିଲେ ।

ଡଃ ନାୟକଙ୍କର ଗୋଟିଏ ପୁସ୍ତକ ଓ ଦୁଇଟି ପ୍ରବନ୍ଧ ସମୀକ୍ଷାତ୍ମକ ମୂଲ୍ୟାୟନ କରିଛନ୍ତି ଗଣେଶ୍ୱର ସାର୍ । ଉକ୍ତ ମୂଲ୍ୟାୟନ ଏଥିସହ ସଂଲଗ୍ନ କରୁଅଛି । )

- ସମ୍ପାଦକ

From

Prof. Dr. G.C. Nayak
ex Vice-Chancellor

Presently at Hyderabad (Till 5th Jan 2015)

Respected Professor Das,

This is to congratulate you on this occasion, when the Hon'ble founder of your great university, B.H.U, has been awarded the *Bharat Ratna* by the Govt. of India. of late, this 'Bharat Ratna' had lost its old chair, simply because it was awarded to a number of those whom I should consider as the most undeserving; now by this award of 'Bharat Ratna' to both Pandit Madan Mohan Malaviya and Sri Atal Bihari Vajpayeeji, I feel, as an ordinary citizen of India, that the award has gained its lost glory to some extent. And being a student of this great university, Sir, you deserve my congratulation on this occasion. You have been a brilliant student, Sir, of this great university and I am fortunate that I have got a great guide for me in you during the evening of my life.

Yours Sincerely
G.C. Nayak

To

Prof. Ganeswar Das
Former Principal
At-29, Forest Park
Bhubaneswar-751009

## ଅନୁଭବ ଓ ବିଚାର : ଏକ ସମୀକ୍ଷାତ୍ମକ ମୂଲ୍ୟାୟନ

ପ୍ରଫେସର ଗୌରାଙ୍ଗ ଚରଣ ନାୟକ ଆଧୁନିକ ଓଡ଼ିଶାର ଏକ ପ୍ରଖ୍ୟାତ ଶିକ୍ଷାବିତ୍ ତଥା ଦର୍ଶନ ବିଶେଷ କରି ଭାରତୀୟ ଦର୍ଶନର ଜଣେ ପ୍ରମୁଖ ବିଶେଷଜ୍ଞ। ତାଙ୍କର ବିବିଧ ଲେଖା ଦେଶ ଏବଂ ବିଦେଶରେ ମଧ୍ୟ ଉଲ୍ଲିଖିତ ଓ ସମାଲୋଚିତ ହୋଇଅଛି। "ଅନୁଭବ ଓ ବିଚାର" ତାଙ୍କ ଲିଖିତ ସଦ୍ୟତମ ପୁସ୍ତକ। ଏହା ଛୋଟ ବଡ଼ ହୋଇ ତିରିଶିଟି ବିବିଧ ବିଷୟକ ପ୍ରବନ୍ଧର ସମାହାର। ସମସ୍ତ ପ୍ରବନ୍ଧରେ ତାଙ୍କ ମୌଳିକ ଦାର୍ଶନିକ ଦୃଷ୍ଟିଭଙ୍ଗୀ ଅଳ୍ପ ବହୁତେ ସ୍ଥାନ ପାଇଛି। ସେ ଦୃଷ୍ଟିରୁ ପୁସ୍ତକଟି ଅନ୍ତତଃ ଓଡ଼ିଆ ପ୍ରବନ୍ଧ ରଚନା କ୍ଷେତ୍ରରେ ଏକ ସ୍ୱତନ୍ତ୍ର ସ୍ଥାନର ହକ୍‌ଦାର। ଲେଖକଙ୍କ ପ୍ରବନ୍ଧ ଗୁଡ଼ିକରେ ଭଗବଦ୍ ଭକ୍ତି ଅନୁସୃତ ମୂଲ୍ୟବୋଧ ଏବଂ ତାହାର ସାମାଜିକ ତଥା ସାଧାରଣ ବାଦୀ ଆଧାତ୍ମ-ଚେତନା ଉପରେ ଗୁରୁତ୍ୱ ଦିଆଯାଇଛି। ପୁରାତନ ତଥା ନୂତନ ଚିନ୍ତା-ନାୟକଙ୍କ ବିଭିନ୍ନ ଭାଷାରେ ପ୍ରକାଶିତ ଭାବୋଦ୍ଦିପକ ଓ ବିବେଚନୀୟ ଲେଖାର ଉଦ୍ଧୃତି ପ୍ରବନ୍ଧରେ ସ୍ଥାନ ପାଇଛି ଏବଂ ତାହା ଯୋଗୁଁ ସେଗୁଡିକ ମୋଟାମୋଟି ଆକର୍ଷିତ ହୋଇଛି।

ଦୃଷ୍ଟାନ୍ତ ସ୍ୱରୂପ, ପଣ୍ଡିତ ନୀଳକଣ୍ଠ ଦାସଙ୍କ ଭିନ୍ନ ମତ ସତ୍ତ୍ୱେ ଲେଖକ ମହାଭାରତରେ ବର୍ଣ୍ଣିତ କୃଷ୍ଣ ଓ ଗୀତାରେ ରଚିତ ଯୋଗେଶ୍ୱର କୃଷ୍ଣ ଏବଂ ଭାଗବତରେ ଉଲ୍ଲିଖିତ ଗୋପେଶ୍ୱର କୃଷ୍ଣଙ୍କୁ ଏକ ଏବଂ ଅଭିନ୍ନ ବୋଲି ମତ ଦେଇଛନ୍ତି। ଐତିହାସିକ ଦୃଷ୍ଟିରୁ ମହାଭାରତ, ଗୀତା ଓ ଭାଗବତ ଏକ ସମୟର ବୋଲି ବାଦାନୁବାଦ ଥିବା ଦୃଷ୍ଟିରୁ, ଲେଖକ ତାଙ୍କର ମତ ଧର୍ମୀୟ ତଥା ତାତ୍ତ୍ୱିକ ଦୃଷ୍ଟିକୋଣରୁ ସେଗୁଡ଼ିକରେ ବର୍ଣ୍ଣିତ କୃଷ୍ଣ ଏକ ଅଭିନ୍ନ ଈଶ୍ୱରଙ୍କୁ ସାଂକେତିକ ଅର୍ଥରେ ସୂଚିତ କରୁଛି ଏବଂ ଚାରିତ୍ରିକ ବିଭିନ୍ନତା କେବଳ ତାଙ୍କର ଅସୀମ, ଅନନ୍ତ ବିଭାବକୁ ଦର୍ଶାଉଛି। ଏହା ବ୍ୟବହାରିକ ମତେ ଆପାତତଃ ବୋଧଗମ୍ୟ ନ ହେଲେ ହେଁ, ପରମାର୍ଥ ଭଗବାନ୍ କୃଷ୍ଣଙ୍କ ପାଇଁ ଏହା ଅସମ୍ଭବ ହୋଇ ନପାରେ। ସେହି ଦୃଷ୍ଟିରୁ ବିଭିନ୍ନ ଧର୍ମୀୟ ଈଶ୍ୱର ଆଲ୍ଲା ଏବଂ ଗଡ୍, ଆଉ ମଧ୍ୟ ହିନ୍ଦୁ ଧର୍ମୀୟ ଚେତନାରେ ସମର୍ଥିତ ବିଭିନ୍ନ ଦେବଦେବୀ ମଧ୍ୟ ଏକ ଭଗବଦ୍-ଚେତନାର ପରମ ଲକ୍ଷ ବୋଲିବା ସମୀଚୀନ। ଏପରି ଚିନ୍ତାଧାରା ବାସ୍ତବିକ ବିଭିନ୍ନ ଧର୍ମ-ବୈଷମ୍ୟ-ଜନିତ ବିରୋଧତା, ଅସହନଶୀଳତା ଭାବର ନିରାକରଣ କରି ଶାନ୍ତି, ସହାବସ୍ଥାନ ଆଣିବାରେ ସେ ନିଶ୍ଚିତ ଭାବେ ସହାୟକ, ଏ କଥାର ଭିତ୍ତି କେବଳ ଯେ ଭାବ-ପ୍ରବଣତା ଉପରେ ବ୍ୟବସ୍ଥିତ, ତାହା ନୁହେଁ, ବରଂ ତାହା ମଧ୍ୟ ସାଧାରଣ ସ୍ତରରେ ପ୍ରୟୋଗାତ୍ମକ ବିଚାରଣାରେ ପୃଷ୍ଟ। ଲେଖକଙ୍କ ଏହିପରି ମନ୍ତବ୍ୟ ଅବଶ୍ୟ ଅଭିନବ ଓ ବିଚରଣୀୟ।

କେବଳ ଅନୁଭବ ବ୍ୟକ୍ତିନିଷ୍ଠ ହୋଇ ସତ୍ୟପରକ ହେବାରେ ନିଶ୍ଚିତ ବାଧା ରହିଛି। କେବଳ ଅନୁଭୂତି ବ୍ୟତିରିକ୍ତ ବିଚାର ଶୁଷ୍କ ବାକ୍-ବିତଣ୍ଡାରେ ସୀମିତ ହେବାରେ ଆଶଙ୍କା ହେବା ମଧ୍ୟ ସ୍ୱାଭାବିକ। ତେଣୁ ଦୁଇଟିର ଫଳପ୍ରଦ ଯୌଗିକରଣ ଅବସ୍ୟମ୍ଭାବୀ। ଲେଖକ ଏ କଥାକୁ ତାଙ୍କର ବିଭିନ୍ନ ପ୍ରବନ୍ଧରେ ଅତି ସୂଚାରୁ ଭାବରେ ସାଧାରଣ ସ୍ତରରେ ସେ ଦୁଇଟିର ଏକତ୍ର ଉପଯୋଗିତା ଉପରେ ଗୁରୁତ୍ୱ ଦେଇଛନ୍ତି। ସମଗ୍ର ପୁସ୍ତକ ତାର ସାକ୍ଷରତା ବହନ କରିଛି। ଲେଖକଙ୍କର ଉଦ୍ୟମ ଏ ଦିଗରେ ଅଭିନନ୍ଦନୀୟ।

ଗଣେଶ୍ୱର ଦାସ

# 'ହେୟ' ଓ 'ଶ୍ରେୟ'

ପ୍ରଫେସର ଗଣେଶ୍ୱର ଦାସ

ଆମ ସାମାଜିକ ଚଳଣିରେ 'ତୁଚ୍ଛ', 'ହେୟ' ଶବ୍ଦଗୁଡ଼ିକୁ ନାସ୍ତିସୂଚକ ଅର୍ଥରେ ବ୍ୟବହାର କରାଯାଇଥାଏ । ଅନେକ ସମୟରେ କେତେକ ଗୁଣର ଅଭାବଥିବା ହେତୁ କୌଣସି ବ୍ୟକ୍ତି ବା ପ୍ରାଣୀକୁ ତୁଚ୍ଛ ମଣି ହେୟ ଜ୍ଞାନ କରାଯାଇଥାଏ । ମୋ ଜୀବନର ଅନ୍ତିମ ପର୍ଯ୍ୟାୟରେ ମୁଁ ଯେତେବେଳେ ଦୀର୍ଘ ଅତୀତ ଓ ବର୍ତ୍ତମାନକୁ ବିଶ୍ଳେଷଣ କରେ ମୁଁ ନିଜକୁ ତୁଚ୍ଛ ମନେ କରେ । ହାରି ଯାଇଥିବା ମନୋବୃତ୍ତି ମତେ ଦୁଃଖରେ ଘାରି ପକାଏ । କିନ୍ତୁ ଯେତେବେଳେ ପ୍ରଫେସର ଡକ୍ଟର ଗୌରାଙ୍ଗ ଚରଣ ନାୟକଙ୍କ ଲିଖିତ 'ସାମାନ୍ୟବାଦୀ ଦର୍ଶନ ଓ ଗଣତନ୍ତ୍ର' ପ୍ରବନ୍ଧଟି 'ବିଜୟାଭାରତୀ' ମାଗାଜିନ୍‌ରୁ ପଢିଲି ମୋ ନିଜ ବିଷୟରେ ଗଢ଼ିଥିବା ମତ ଓ ଧାରଣାକୁ କିଛିଟା ବଦଳାଇବାର ପ୍ରୟାସ କରୁଅଛି । ମେଧା ଋଷିଙ୍କର ଶକ୍ତିତତ୍ତ୍ୱର ଅବତାରଣା ବିଷୟରେ ପ୍ରବନ୍ଧଟିରୁ ଜାଣିବାକୁ ପାଇ ମନେହେଲା ପ୍ରଫେସର୍ ନାୟକ ମୋର ବାକି ଜୀବନ ବଞ୍ଚିବା ପାଇଁ ଯେପରି ସାହସ ଭରିଦେଇଗଲେ । ପ୍ରବନ୍ଧଟିର ବିଷୟବସ୍ତୁ ବାସ୍ତବିକ୍ ଶକ୍ତିବିହୀନ ପାଖରେ ଶକ୍ତି ପରିପୂର୍ଣ୍ଣ କରିଦିଏ । ମେଧା ଋଷିଙ୍କର ଶକ୍ତିତତ୍ତ୍ୱରେ ଅନୁପ୍ରାଣିତ ହୋଇ ପ୍ରଫେସର ନାୟକ ସୁନ୍ଦର ସମସ୍ୟାଟିଏ ଉତ୍ଥାପନ କରିଛନ୍ତି ପ୍ରତ୍ୟେକ ସାମାଜିକ ବ୍ୟକ୍ତି ପାଇଁ । 'କିଏ ଛୋଟ, କିଏ ବଡ, କିଏ ତୁଚ୍ଛ, କିଏ ମହାନ୍, କିଏ ଆମର ଆଦରଣୀୟ ବା କିଏ ଆମର ହେୟ, ଏ ସମ୍ପର୍କରେ ଆମକୁ ଆଉ ଥରେ ନୂଆ କରି ଚିନ୍ତା କରିବାକୁ ହେବ' । ଦମ୍ଭର ସହିତ ଡକ୍ଟର ନାୟକ କହିଛନ୍ତି, "ମଣିଷ ଜଗତରେ ଯେଉଁ ଜ୍ଞାନୀ ଅଜ୍ଞାନୀ ଭେଦ କରାଯାଇଅଛି ପାଠକ ପାଇଁ ସାହସର ଉତ୍ସ । ଶାନ୍ତିପୂର୍ଣ୍ଣ ସାମାଜିକ ଜୀବନ ଯାପନ କରିବା ଲାଗି ଏହା ଏକ ମହାମନ୍ତ୍ର" ।

'ଅନାବଶ୍ୟକ' ଶବ୍ଦଟି ମେଧାଋଷିଙ୍କର ଶକ୍ତିତତ୍ତ୍ୱକୁ ଅତି ଚତୁରତାର ସହ ଶିକ୍ଷା ଜଗତକୁ ଟାଣି ଆଣିଛନ୍ତି । ଶିକ୍ଷା ପଦ୍ଧତିର ଗୋଟିଏ ବିପ୍ଳବାତ୍ମକ ପରିବର୍ତ୍ତନର ସୂଚନା ଦେଇଛନ୍ତି ଯେତେବେଳେ ସେ କୁହନ୍ତି-କେବଳ ଗଣିତ ବା ସାହିତ୍ୟରେ ଆପାରଗତା ବୋଲି କୌଣସି ଶିକ୍ଷାର୍ଥୀକୁ ଲଘୁ ଭାବରେ ଉପେକ୍ଷା କରି ହେବ ନାହିଁ । ଦୟନୀୟ ଶିକ୍ଷାନୀତି ଉପରେ ନିଜର ମନ୍ତବ୍ୟ ଉପସ୍ଥାପନ କରିଛନ୍ତି, "ହଜାର ହଜାର ସଂଖ୍ୟାରେ ମଣିଷ-ଶିଶୁ ବର୍ତ୍ତମାନ ତଥାକଥିତ ବୈଜ୍ଞାନିକ ଯୁଗରେ ଲାଞ୍ଛିତ, ଅପମାନିତ, ଅବହେଳିତ ତଥା ନିର୍ଯ୍ୟାତିତ ହେବାରେ ଲାଗିଛନ୍ତି," ଜ୍ଞାନର ସାଧାରଣୀକରଣ ମାଧ୍ୟମରେ ସମ୍ଭ୍ରାନ୍ତବାଦୀ ମନୋଭାବ ବିରୋଧରେ ଅନବରତ ସଂଗ୍ରାମ ଲାଗି ଆହ୍ୱାନ ଦେଇଛନ୍ତି ଡକ୍ଟର ନାୟକ । ଭଲ ନ ପଢୁଥିବା ଛାତ୍ର ଠାରେ ନିଜର ଅନ୍ତର୍ନିହିତ ଜ୍ଞାନର ଅନ୍ୱେଷଣ ପାଇଁ ଉତ୍ସାହ ଭରି ଦେଇଛନ୍ତି ।

ତୁଚ୍ଛଠାରେ ଅସାଧାରଣ ପ୍ରତିଭାର ବିକାଶ ସମ୍ଭବ ହେଲେ ଗଣତନ୍ତ୍ର ଶାସନର ରୂପାୟନ ହେବ । ସଫଳ ସାମାଜିକ ଚଳଣି, ସଫଳ ଶିକ୍ଷାନୀତି ତଥା ସଫଳ ଗଣତନ୍ତ୍ର ସବୁଥି ପାଇଁ ଆବଶ୍ୟକ ତୁଚ୍ଛର ମୂଲ୍ୟବୋଧ । ସଂଭ୍ରାନ୍ତବାଦୀ ଚିନ୍ତାଧାର ବିରୋଧରେ ସ୍ୱର ଉତ୍ତୋଳନ କରି ସାମାନ୍ୟବାଦୀ ଦର୍ଶନ ବା ଜନତାଦର୍ଶନ ସପକ୍ଷରେ ଯୁକ୍ତି ବାଢିଛନ୍ତି ପ୍ରଫେସର ନାୟକ । ଲୋକସଭା ଅଥବା ବିଧାନସଭାରେ ବିରୋଧୀ ଦଳର ସଭ୍ୟମାନେ ଏହି ଦର୍ଶନରେ ଅନୁପ୍ରାଣିତ ହେଲେ ସରକାରୀ ଦଳକୁ ଉଚିତ୍ ମାର୍ଗ ପ୍ରଦର୍ଶନ କରାଇବାରେ ସହାୟକ ହେବେ । ଯେଉଁମାନେ ନିର୍ବାଚନରେ ଜିତି ସରକାର ଗଢିଲେ ସେମାନେ ଏହି ଦର୍ଶନ ଦ୍ୱାରା ପ୍ରଭାବିତ ହୋଇ ବିରୋଧୀ ଦଳର ସଭ୍ୟ ତଥା ସାଧାରଣ ଜନତାଠାରେ ଭରି ରହିଥିବା ମୂଲ୍ୟର ଉଚିତ ସମ୍ମାନ ଦେବେ । ତେବେ ଗଢିଉଠିବ ଏକ ଆଦର୍ଶ ଗଣତନ୍ତ୍ର, ସମାଜର ଧନୀ ଲୋକ ସେ ଯାହାର ଧନ ବଳରେ ସମାଜରେ କିଛିଟା ଦାରିଦ୍ର୍ୟ ଲୋପ ପାଇ ପାରୁଛି, ଏଇ ଭାବନାକୁ କାର୍ଯ୍ୟକାରୀ କରାଇ ପାରିଲେ ଏକ ସୁନ୍ଦର, ସୁରକ୍ଷିତ ଗଣତାନ୍ତ୍ରିକ ଦୁନିଆର ସ୍ୱପ୍ନ ଦେଖିହେବ ।

ପରେ ପରେ ଡକ୍ଟର ନାୟକ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି ଲେଖକ ତଥା ପାଠକ ମାନଙ୍କୁ । ଯାହା ଲେଖା ହୋଇଯାଇଛି ସେ ଯୁଗର ଲେଖକଙ୍କ କଲମରେ, ନୂତନ ଯୁଗରେ ସେଗୁଡ଼ିକ ହେୟ ନ ମଣି ଆଦର କରିବାର ସମୟ ପହଞ୍ଚିଛି । ପୁରାତନ ଲେଖା ସବୁକୁ ବର୍ତ୍ତମାନ ସମାଜ ପାଇଁ ନୂଆଭାବରେ ମୂଲ୍ୟାୟନ କରିବାକୁ ପଡିବ ଡକ୍ଟର ନାୟକଙ୍କ ମତରେ ।

ଏପର୍ଯ୍ୟନ୍ତ ଯାହା ସବୁ କୁହା ହୋଇଗଲା ସେଥିରୁ ମନେ ହେବ ସତେ ଯେପରି ଡକ୍ଟର ନାୟକ 'ହେୟ'ର ସପକ୍ଷରେ ଯାଇ 'ଶ୍ରେୟ' କୁ ଉପେକ୍ଷା କରୁଛନ୍ତି । କିନ୍ତୁ ତାହା ନୁହେଁ । ବିଦ୍ୱାନ୍ ନାୟକ ମହୋଦୟଙ୍କର ଆଉ ଗୋଟିଏ ପ୍ରକାଶିତ ପ୍ରବନ୍ଧ "ସମ୍ପ୍ରତି ଅନେକ ତଥାକଥିତ ଶ୍ରେଷ୍ଠ ବ୍ୟକ୍ତି ମାନଙ୍କର ଆଚରଣ ହିଁ ପ୍ରଶ୍ନବାଚୀ" ପଢିବାର ସୁଯୋଗ ପାଇଲି (ଚିରସଂଧାନ ଫେବୃୟାରୀ ୨୨-୨୮) । ଅତୀତର ଶ୍ରେୟକୁ ସେ ଝୁରିହେଉଛନ୍ତି । ତାଙ୍କ ଭାଷାରେ, "ଜାତିର ନମସ୍ୟ ସାମନ୍ତ ଚନ୍ଦ୍ରଶେଖର (ପଠାଣି ସାମନ୍ତ) ଙ୍କ ଐକାନ୍ତିକ ନିଷ୍ଠା ଓ ସାଧନା ଆଜି ସପ୍ନ" । ସେ ଲୋକ ଦେଖାଣିଆ ଶ୍ରେୟକୁ ପସନ୍ଦ କରନ୍ତି ନାହିଁ । ବ୍ୟସ୍ତ ହୋଇପଡ଼ିଛନ୍ତି ମୌଳିକ ଗବେଷଣାରେ ଶ୍ରେୟର ଅଭାବ ଲକ୍ଷ୍ୟ କରି । ବିଦ୍ୟାର ସବୁ କ୍ଷେତ୍ରରେ ମୌଳିକ ଗବେଷଣା ପ୍ରତି ହତାଦର ତାଙ୍କୁ ନୈରାଶ୍ୟ ଭିତରକୁ ଟାଣିନେଇଛି । ତୁଚ୍ଛ ବା ହେୟ ନୁହେଁ, ଶ୍ରେୟର ଅଭାବ ଭାରତର ଅନ୍ତରାତ୍ମାକୁ ଗ୍ରାସ କରି ସାରିଲାଣି ବୋଲି ତାଙ୍କର ମତ । ଶିକ୍ଷିତ ଭାରତୀୟ ବିଶ୍ୱଦରବାରରେ ଦେଶକୁ ପ୍ରତିଷ୍ଠିତ କରିବା ଲକ୍ଷ୍ୟନେଇ ମୌଳିକ ଗବେଷଣାରେ ଆଗେଇ ଚାଲନ୍ତୁ - ତାହା ହିଁ ଡକ୍ଟର ନାୟକଙ୍କର ଆଶା ଓ ଆନ୍ତରିକ ନିବେଦନ । "ଶ୍ରେଷ୍ଠ ବ୍ୟକ୍ତି ମାନଙ୍କର ଆଚରଣ ପ୍ରଶ୍ନବାଚୀ ହୋଇପଡିଛି" । ଏତିକି କହି ଡକ୍ଟର ନାୟକ ତାଙ୍କ ହୃଦୟର ବ୍ୟଥା ପ୍ରକାଶ କରିଛନ୍ତି । ସାଧାରଣ ବ୍ୟକ୍ତିଟିକୁ ଠିକ୍ ଭାବରେ ବୁଝିବାରେ ହିଁ ଶ୍ରେଷ୍ଠତ୍ୱ ପ୍ରକାଶ ପାଇବ । ଏହା ହିଁ 'ହେୟ' ଓ 'ଶ୍ରେୟ'ର ନିବିଡ଼ ସମ୍ପର୍କ । ଶ୍ରୀକୃଷ୍ଣଙ୍କର ଉଦାହରଣ ଦେଇ ନାୟକ ମହାଶୟ କହିଛନ୍ତି, "ତାଙ୍କୁ ନିଜର ଗଭୀର ଜ୍ଞାନର ତଥା ଅକ୍ଳାନ୍ତ କର୍ମକୌଶଳ ମାଧମରେ ହିଁ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ପଡ଼ିଥିଲା" । ଭାରତବର୍ଷ ବିଶ୍ୱରେ ଶ୍ରେଷ୍ଠତ୍ୱକୁ ବିକଶିତ କରାଇ ପ୍ରମାଣ କରି ଦେଉ ଯେ "ଶ୍ରେଷ୍ଠତ୍ୱ କୌଣସି ବ୍ୟକ୍ତି ବିଶେଷ କିମ୍ବା ଗୋଷ୍ଠୀର ଜନ୍ମସିଦ୍ଧ ଅଧିକାର ନୁହେଁ" ।

ହେୟ ବା ତୁଚ୍ଛର ମୂଲ୍ୟବୋଧକୁ ବିଚାର କରିବାରେ ଡକ୍ଟର ନାୟକ ଏକ ଅଭିନବ ତଥ୍ୟ ପ୍ରତିପାଦନ କରିବା ସଙ୍ଗେସଙ୍ଗେ ଶ୍ରେଷ୍ଠତ୍ୱର ଅଭାବରେ ଆମ ଦେଶର ଦୁରବସ୍ଥା ବିଷୟ ଆଲୋଚନା କରି ଏକ ନୂତନ ଦିଗ୍‌ଦର୍ଶନ ଦେଇ ଯାଇଛନ୍ତି ପାଠକ ମାନଙ୍କୁ ।

(ଚିରସଂଧାନ ପତ୍ରିକାରେ ପ୍ରକାଶିତ)

## 'ସୀତା କ'ଣ ଅବଳା ?' ପ୍ରବନ୍ଧଟିର ଗୋଟିଏ ସରଳ ସମୀକ୍ଷା

**ପ୍ରଫେସର ଗଣେଶ୍ୱର ଦାସ**

ବିଶିଷ୍ଟ ଦାର୍ଶନିକ, ପୂର୍ବତନ କୁଳପତି ପ୍ରଫେସର ଡକ୍ଟର ଗୌରାଙ୍ଗ ଚରଣ ନାୟକଙ୍କର ଲିଖିତ ପ୍ରବନ୍ଧ, 'ସୀତା କ'ଣ ଅବଳା ?' ଅନେକ ଦୃଷ୍ଟି କୋଣକୁ ଏକାଠି କରି ଏକ ନୂତନ ତଥ୍ୟ ପ୍ରକାଶ କରିବାର ଏକ ସଫଳ ପ୍ରୟାସ। ମହୀୟସୀ ଦୁର୍ଗା ମହିଷାସୁରକୁ ବଧ କରି ଯେଉଁ ଧର୍ମ ପ୍ରତିଷ୍ଠାର ଆଲୋକ ମରସଂସାରର ଅନ୍ଧକାର ଦୂରୀଭୂତ ଲାଗି ସୃଷ୍ଟି କଲେ, ସୀତା ମଧ ରାବଣର ପ୍ରଣୟାକୁ ଦୃଢତାର ସହିତ ଅସୀକାର କରିବା ଦ୍ୱାରା ଏବଂ ରାବଣକୁ କଳୁଷିତ ରାକ୍ଷସ ଧର୍ମର ଅର୍ଥ ବୁଝାଇ ନିଜକୁ 'ଧର୍ମର ଅନ୍ୟ ଏକ ପରିଭାଷା' ବୋଲି ପ୍ରତିଷ୍ଠିତ କରାଇବା ଦ୍ୱାରା ସେ ବି ଯୁଗଯୁଗ ଧରି ପୃଥିବୀ ପାଇଁ ରକ୍ଷାକାରିଣୀ ମା ଭାବରେ ପରିଚିତ ହୋଇଆସିଛନ୍ତି। ସୀତା ରାବଣ ଆଡ଼କୁ ପିଠି କରି ତା'କଥାର ପ୍ରତ୍ୟୁତ୍ତର ଦେଇଛନ୍ତି - ଏହି ବର୍ଣ୍ଣନାକୁ ପାଠକମାନଙ୍କ ପାଖରେ ପହଞ୍ଚାଇ ପ୍ରଫେସର୍ ନାୟକ ରାମାୟଣରେ ବର୍ଣ୍ଣିତ ସବଳା ସୀତାଙ୍କର ଏକ ନୂତନ ପରିଚୟ ପ୍ରଦାନ କରିଛନ୍ତି। ମା' ଦୁର୍ଗା ଅସ୍ତ୍ରର ପ୍ରୟୋଗରେ ମହିଷାସୁରକୁ ବଧ କଲାପରି ମା'ସୀତା ତାଙ୍କର ନାରୀ ଧର୍ମ ପାଳନର ଅର୍ଥ ଏବଂ ଯୁକ୍ତି ବଳରେ ରାବଣର ପାପୀ ମନକୁ ବଧ କରି ସର୍ବବନ୍ଦନୀୟା ହୋଇଛନ୍ତି। ଡକ୍ଟର ନାୟକ ମଧ ସୀତା ଚରିତ୍ରର ନୂଆ ଦିଗ୍‌ଦର୍ଶନ ଦେଇ ପାଠକମାନଙ୍କ ପାଖରେ ବନ୍ଦନୀୟ ହୋଇପାରିଛନ୍ତି।

ଠିକ୍ ସେହିପରି ଦ୍ରୋପଦୀ ମଧ ତାଙ୍କ ନାରୀ ଚରିତ୍ରର ବୈଶିଷ୍ଟ୍ୟ ଏବଂ ନୂତନତ୍ୱ ମାଧମରେ ନିଜକୁ ସବଳା ଏବଂ ବନ୍ଦନୀୟା ଭାବରେ ପରିଚିତ କରାଇ 'ଦେବୀ ଦ୍ରୌପଦୀ'ରେ ପରିଣତ ହୋଇପାରିଛନ୍ତି। ମା'ଦୁର୍ଗା ଅସୁରକୁ ବଧ କଲେ, ମା'ସୀତା ଅସୁରର ଅସୁରତ୍ୱକୁ ବଧ କଲେ ଏବଂ ଦେବୀ ଦ୍ରୌପଦୀ ଦୁଃଖ, ଯାତନା, ଅନ୍ୟାୟକୁ ଏକରକମ ଗ୍ରହଣ କରିନେବା ଦ୍ୱାରା ଅନ୍ୟାୟ ରୂପକ ଅସୁରକୁ ଶେଷରେ ବଧ କରି ଧର୍ମର ପ୍ରତିଷ୍ଠା କରିଛନ୍ତି। ଯୁଧିଷ୍ଠିର ନ୍ୟାୟବାନ୍ ହୋଇ ପାରନ୍ତି, ଧାର୍ମିକ ହୋଇ ପାରନ୍ତି, କିନ୍ତୁ ଧର୍ମ ପ୍ରତିଷ୍ଠାରେ ଦ୍ରୌପଦୀ ତାଙ୍କୁ ବଳି ଯାଇଛନ୍ତି। ଦ୍ରୌପଦୀଙ୍କର ସହନୀୟତା ଯୁଧିଷ୍ଠିରଙ୍କର ସ୍ୱାମୀପ୍ରାଧାନ୍ୟ ଜନିତ ଏକତରଫା ସିଦ୍ଧାନ୍ତକୁ ଏକରକମ ଦୁର୍ବଳତାରେ ପରିଣତ କରିଦେଇଛି। 'ଯାଜ୍ଞସେନୀ' ପୁସ୍ତକର ନିମ୍ନ କେତୋଟି ବାକ୍ୟ ପ୍ରଣିଧାନ ଯୋଗ୍ୟ।

"ମୋର ସବୁ ଦୁଃଖ, ନିର୍ଯ୍ୟାତନା, ଲାଞ୍ଛନା, ହାହାକାର ସବୁ ତୁମକୁ ଦେଇ ଦେଉଛି। ମୁଁ ଯଦି ମୋ ନିଜର ନୁହେଁ, ମୋ ଦୁଃଖ କାହିଁକି ମୋର ହେବ" ?

ଦୁଃଖ, ଅପମାନ, ଲାଞ୍ଛନା ସବୁକୁ ଯଦି ଗୋଟିଏ ଗୋଟିଏ ବ୍ୟକ୍ତିରେ ପରିଣତ କରାଯାଏ, ତେବେ ସେମାନେ ପ୍ରତ୍ୟେକ ମହିଷାସୁର ବା ରାବଣଠାରୁ ଅଧିକ ଶକ୍ତିଶାଳୀ ହୋଇଉଠିବେ। ଶ୍ରୀକୃଷ୍ଣଙ୍କ ଠାରେ ସବୁ ସମର୍ପିବା ହିଁ ଅସୁର ବଧର ଏକ ନିଦର୍ଶନ। "ଯେଉଁଠି ଦୁଃଖ, ସେଇଠି କୃଷ୍ଣ" - ଏକଥା ପ୍ରବଳ ପ୍ରତାପୀ ରାକ୍ଷସଙ୍କୁ ଧ୍ୱଂସ କରିବା ଲାଗି କେତେ ବଡ ଅସ୍ତ୍ର!

ଉଭୟ ଡକ୍ଟର ନାୟକ ଏବଂ ଶ୍ରୀମତୀ ପ୍ରତିଭା ରାୟ ନାରୀ ଚରିତ୍ରର ଦୃଢ଼ତା ଏବଂ ତେଜ ପ୍ରକାଶର ଏକ ନୂତନ ବ୍ୟାଖ୍ୟାର ଉପସ୍ଥାପନା କରିଛନ୍ତି।

ଉଭୟ ରାମାୟଣ ଏବଂ ମହାଭାରତରେ ସୀତା ଓ ଦ୍ରୌପଦୀଙ୍କର ଆତୁରତା, ଦୁଃଖ ଏବଂ କ୍ରନ୍ଦନର ଚିତ୍ର ଏପରି ପ୍ରଭାବ ପକାଇଥାଏ ଯେ ପାଠକମାନେ ଉକ୍ତ ଅସହାୟତା ପ୍ରତି ପ୍ରବଳ ଭାବରେ ଆକୃଷ୍ଟ ହୋଇ ନାରୀଶକ୍ତିର ମୂଲ୍ୟ ହୃଦୟଙ୍ଗମ କରିପାରନ୍ତି ନାହିଁ। ଏଇ ଅଭାବ ପୂରଣଲାଗି ଡକ୍ଟର ନାୟକଙ୍କର ପ୍ରବନ୍ଧ ପାଠକମାନଙ୍କ ଲାଗି ଏକ ଆହ୍ୱାନ। ସେ ଯଥାର୍ଥରେ ଲେଖିଛନ୍ତି, "ଭାରତୀୟ ପରମ୍ପରାରେ ନାରୀ ଶକ୍ତିର ପରାକାଷ୍ଠା କେବଳ ଯେ ଯୁଦ୍ଧକ୍ଷେତ୍ରରେ ହିଁ ଦେଖିବାକୁ ମିଳେ ତା'ନୁହେଁ, ଏହା ମଧ ଦେଖିବାକୁ ମିଳେ ନାରୀର ଧର୍ମଜ୍ଞାନ, କଠୋର ଧର୍ମପାଳନ, ଦୃଢ଼ତା ସହକାରେ ଅଧର୍ମର ବିରୋଧାଚରଣ ଆଦି ମାଧମରେ, ଯାହା ଗୋଟିଏ ଦେଶ, ଗୋଟିଏ ଜାତିର ଚରିତ୍ରକୁ ଗଢି ଦେଇପାରେ, ଯୁଗଯୁଗ ଧରି ମାନବ ସମାଜକୁ ପ୍ରଭାବିତ କରିପାରେ"।

ସୀତା ରାମଚନ୍ଦ୍ରଙ୍କ ସାଙ୍ଗରେ ବନବାସ କରିବା, ରାବଣ ପାଖରେ ରହିବା ଏବଂ ରାମଙ୍କ ପାଖରେ ଅଗ୍ନିପରୀକ୍ଷାର ସମ୍ମୁଖୀନ ହେବା ପ୍ରଭୃତିରେ ଯେଉଁ ନାରୀଶକ୍ତିର ପରିଚୟ ଦେଇଛନ୍ତି, ତାହା ବାସ୍ତବିକ ଅଶ୍ରୁବିହ୍ୱଳା ସୀତା ଚରିତ୍ର ଠାରୁ ବହୁତ ଊର୍ଦ୍ଧ୍ୱରେ।

ଠିକ୍ ସେହିପରି ପ୍ରତିଭା ରାୟ ଅର୍ଜୁନଙ୍କ ମୁହଁରେ କୁହାଇଛନ୍ତି, "ତେଣୁ କଥା କଥାକେ ଅଶ୍ରୁବିସର୍ଜନ କରି ଅଶ୍ରୁର ଅବମାନନା କରନାହିଁ। ଜୀବନରେ ଦୁର୍ଦ୍ଦିନର ସାଥୀ ହିଁ ହେଉଛି ଶ୍ରେଷ୍ଠ ସାଥୀ ଏବଂ ସେ ହେଉଛି ଅଶ୍ରୁ। ତାକୁ ଅପବ୍ୟୟ କରନାହିଁ"। ପରେ ପରେ ପୁଣି କୁହାଇଛନ୍ତି, "ଅଶ୍ରୁ ଦୁର୍ବଳତାର ପ୍ରତୀକ, କିନ୍ତୁ ବେଳେ ବେଳେ ଅଶ୍ରୁ ମଧ୍ୟ ଅସହାୟତାର ସାଥୀ ହୁଏ। ହୃଦୟର ଦୁଃଖକୁ ଲାଘବ କରେ। ନୂଆ କରି ଶକ୍ତି ସଞ୍ଚୟ ପାଇଁ ମନର ଗ୍ଲାନି ଓ କ୍ଷୋଭକୁ ଧୋଇ ନିଏ"।

ତେଣୁ ଉଭୟ ଡକ୍ଟର ନାୟକ ଓ ପ୍ରତିଭା ରାୟଙ୍କ ମତରେ ନାରୀର ଅଶ୍ରୁ ଦୁର୍ବଳତାର ପ୍ରତୀକ ନୁହେଁ, ଶକ୍ତିର ପ୍ରତୀକ। ସମସ୍ତ ଦୁଃଖ ସତ୍ତ୍ୱେ ସୀତା ଚରିତ୍ରରେ ତେଜ ବା ପରାକ୍ରମର ଯଥେଷ୍ଟ ସୂଚନା ମିଳେ ବୋଲି ଡକ୍ଟର ନାୟକ ଦର୍ଶାଇଛନ୍ତି। ପ୍ରତିଭା ରାୟ ମଧ୍ୟ ଏହି ଶକ୍ତି ପାଇଁ ଦ୍ରୌପଦୀଙ୍କର ପ୍ରାର୍ଥନା ମାଧ୍ୟମରେ ପ୍ରକାଶ କରିଛନ୍ତି, "ହେ ଈଶ୍ୱର, ଯେତେ ଦୁଃଖ, ଅପମାନ, ଲାଞ୍ଛନା ଦେବ ଦିଅ, କିନ୍ତୁ ତାକୁ ସହିବା ପାଇଁ ଶକ୍ତି ଦିଅ"। ଏଠାରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଲିଖିତ ଗୀତାଞ୍ଜଳିର ଗୋଟିଏ ପଦମନେ ପଡେ -

"ବିପଦେ ମୋରେ ରକ୍ଷାକରେ, ଏ ନୟେ ମୋର ପ୍ରାର୍ଥନା
ବିପଦେ ଆମି ନା ଯେନ କରି ଭୟ

ଆମାରେ ତୁମି କରିବେ ତ୍ରାଣ୍ ଏ ନୟେ ମୋର୍ ପ୍ରାର୍ଥନା
ତରିତେ ପାରି ଶକତି ଯେନ୍ ରୟ।
ଆମାର୍ ଭାର୍ ଲାଘବ କରି ନାଇବ ଦିଲେ ସାନ୍ତ୍ୱନା
ବହିତେ ପାରି ଏ ମନି ଯେନ୍ ହୟ୍
ଦେବୀ ସୀତା ଏବଂ ଦେବୀ ଦ୍ରୋପଦୀଙ୍କ ପାଖରେ ଏଇ ଶକ୍ତି ଭରପୂର ଯାହାକି
ତାଙ୍କୁ କେଉଁ ଯୁଗରେ ବି ଅବଳା ନ କରିପାରେ।"

(ଚିରସଂଧାନ ପତ୍ରିକାରେ ପ୍ରକାଶିତ)

## ଇଞ୍ଜିନିୟର ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ

ଦୀର୍ଘ ପଚାଶ ବର୍ଷରୁ ଉର୍ଦ୍ଧ୍ୱ ଜର୍ମାନୀରେ ରହୁଥିବା ଇଞ୍ଜିନିୟର୍ ଡକ୍ଟର ରାଜେନ୍ଦ୍ର ନାରାୟଣ ଦାସ୍‌ଙ୍କର କେତେକ ଚିଠି ତଥା ଅନେକ ସାହିତ୍ୟକୃତି ଗଣେଶ୍ୱର ସାର୍‌ଙ୍କ ପାଖରେ ଦେଖିବାକୁ ପାଇଲି। 'ମନେପଡ଼େ' ଆତ୍ମଜୀବନୀର ଅନେକ ନକଲ କରି ବିଦେଶରେ ରହୁଥିବା ପ୍ରାୟ ୮୦ ଜଣ ବିଦ୍ୱାନଙ୍କ ପାଖକୁ ଡକ୍ଟର ଦାସ୍ ପଠାଇଥିଲେ। ଦାର୍ଶନିକ ପ୍ରଫେସର ଡକ୍ଟର ଜୀତେନ୍ଦ୍ର ନାଥ ମହାନ୍ତିଙ୍କ ଚିଠିରେ ସେ ରାଜେନ୍ଦ୍ରବାବୁଙ୍କ ଠାରୁ 'ମନେପଡ଼େ' ଏବଂ ପାଶ୍ଚାତ୍ୟ ଦର୍ଶନର ଇତିହାସ ବହି ପାଇଛନ୍ତି ବୋଲି ଉଲ୍ଲେଖ କରିଛନ୍ତି।

- ସମ୍ପାଦକ

**ମାନନୀୟେଷୁଃ**

ପୂଜ୍ୟ ପ୍ରଣାମ, ଆପଣଙ୍କର ଲେଖାର ଏହିଭଳି ନକଲ କରି ପ୍ରାୟ ୮୦ ଜଣ ବିଦ୍ୱାନଙ୍କ (ଯେଉଁମାନେ କି ଆପଣଙ୍କୁ ଭଲ ଭାବରେ ଜାଣିଛନ୍ତି) ନିକଟକୁ ପଠାଇଛି।

ଆଶାକରେ କେତେଜଣ (?) ଆପଣଙ୍କ ସହିତ ଯୋଗାଯୋଗ କରିବେ। ଦୟାକରି ସେମାନଙ୍କ ନାମ ଆପଣ ଲେଖି ରଖିବେ ଓ ଦେଖାହେଲେ ମୋତେ ଦେବେ।

ସ୍ନେହାନୁବଦ୍ଧ
ରାଜେନ୍ଦ୍ର




ମନେ ପଡ଼େ
(ଆତ୍ମ ଜୀବନୀ)

ପ୍ରଫେସର୍
ଗଣେଶ୍ୱର ଦାସ
29 Forest Park
Bhubaneswar - 751001
Tel: (0674) 2531673
Mobile: 9937347850

ସୁବର୍ଣ୍ଣରେଖା

## ପ୍ରଫେସର ଡକ୍ଟର ବିଜୟାନନ୍ଦ କର

ସାର୍‌ଙ୍କ ପାଖରେ ଦେଖିଲି ଦାର୍ଶନିକ ଡକ୍ଟର ବିଜୟାନନ୍ଦ କରଙ୍କୁ ସଂବର୍ଦ୍ଧନା ପ୍ରଦାନ କରିବା ନିମନ୍ତେ ଆୟୋଜିତ ସଭାରେ ସାର୍‌ଙ୍କ ଭାଷଣର ନକଲ ଟିଏ। ଡକ୍ଟର କର ଜଣେ ଉଚ୍ଚକୋଟିର ଦାର୍ଶନିକ ଏବଂ ସାର୍‌ଙ୍କର ଏକଦା ଛାତ୍ର ଥିଲେ। ସଂଲଗ୍ନ ଭାଷଣର ନକଲରେ ସାର୍ ଡକ୍ଟର କରଙ୍କ ଦର୍ଶନ ଶାସ୍ତ୍ରରେ ଗବେଷଣା ଏବଂ ତାଙ୍କର ଲିଖିତ ପୁସ୍ତକ ସବୁ ବିଷୟରେ ବିସ୍ତୃତ ବିବରଣୀ ଦେଇଛନ୍ତି।

- ସମ୍ପାଦକ

### Felicitations offered to prof. Dr. Bijoyananda Kar for the opening of a festschrift volume in his honour

***(Speech by Prof. Ganeswar Das)***

It is gratifying to note that so many of us are present today to felicitate the leamed Professor Dr. Bijoyananda Kar for the opening of a festschrift volume in his honour. Eminent philosopher from different universities of India and abroad have contributed leamed articles to this volume. I specially feel proud that Dr. Kar who was once a student of mine in Ravenshaw College, Cuttack has gained world-wide honour. I feel so happy that with all his academic achievements he has been keeping regular contact with me and shares his views on several issues concerning life as a whole.

During his young days Dr. Kar used to have close and intimate contact with our most valuable guru Late Prof. Ganeswr Mishra who was then fresh from England with advanced proficiency and skill on Logico-linguistic philosophical analysis under the supervision of one of the most renowed twentieth century philosophers. Alfred Julius Ayer, whose very first book "Language, Truth and Logic" is recorded as the largest circulated book in Philosophy in the whole of the last century. As rightly opined by Prof. J.N. Mohanty, one of the most prominent Indians to have attained international recognition as authority on philosophy of phenomenology and the Indian philosophy of Nyaya, Prof. G. Mishra is the pioneer in India in intriducing Logivo-linguistic philosophical analyais and applying the same to the classical Indian thaught particularly to Sankara Advaita with regular training and guidance of Prof. MIsra, Kar has become an expert in locating the roots of analysis in different facts of classical Indian philosophical thought. Kar is the first sucessful Ph.D Scholar under the guidance of Prof. Mishra. His doctoral work: "Indian theories of error is a novel break through in so far as it has, for the first time, exposed the classical Indian concept of error from the logico-linguistic anaytical stand point". His book on 'error' published in 1978, 1988 and 1990 has its second edition i.e., under Sophia-Indological Series and has also U.S. Edition (South Asia Books Publication besides original Indian publication).

In subsequent period of his professional teaching career, Kar moved, to some other important directions both in philoophy and general social affairs.

Firstly he has carefully distinguished the use of the two seminar concepts: *dharma* and *darsana* in the Indian tradition.

Secondly '*Sruti*' or '*Sabda*' as accepted in the darsanic level, according to Kar, not as blind unconditional acceptance of any religio-theological source or any other scripture for that matter, but is framed on independent ground of rational validity.

Kar's research is also devoted to critically analyse some of the key-concepts found in religious discourse. In his various writing Kar has been able to delineate the subtle and precise distinction between

the logical boundarious of both the concepts is morality and spirituality. Kar has emphasized that both the concepts, in spite of their being used and operated together in certain non-darsanic philosophical cases, need not warrant their togetherness as logically indispensable. Kar's philosophical conviction is closer to a distinct type of secular humanism. By secular humanism, he does not, I suppose, subscribe to one anti-Dharmic stand.

Kar seems to be a committed humanist, both in form and sprit. He never favours any kind of fusion between emotion and reason. Both have their independent and autonomous applicative role and there is no inappropriateness involved there is at the background of human life.

It is evident that changes and reforms in different facts of socio-human affairs are usually introduced by the intellectuals in general like Plato, Rousseau, Canakya and others. They suggest certain ideas which are of great applicative significance at the common level. In this sense the responsibility of philosophers in general for the social cause can not be gain said. Kar is founded to be quite alert to this cause and his writings amply exhibit this stand.

Before I conclude, I would like to speak a few words about the very illustrious people, associated with this noble work of felicitation. At first, let me refer of Prof. Kalyan Bagchi from Santiniketan who is one of the editors of this prestigious volume of festscrift. Prof. Bagchi is considered as one of the first rank exponent in our country of the philosophy, Prof. K.C. Bhattacharya, the first philosophy Professor of India belonging to the then Calcutta University. Prof. Bagchi has made a special comparative estimate of the philosophies of both Bhattacharya and Kant.

Prof. G.C. Nayak, the other co-editor of the festscrift is a close friend of mine whom I personally regard as a very briliant scholar with in-depth background of classical sanskrit studies along with the application of modern technique of conceptual analysis. His doctoral publication: Evil, Karma and Re-incarnation has undergone several editions and is widely referred to by the scholars of eminence both from India and abroad.

As co-editors, both Prof. Bagichi and Prof. Nayak have rendered an invaluable service to the academic community as well as to the general readers by way of including thought-provoking and encouraging essays from the experts belonging to diverse fields like philosophy, linguistics, sanskrit and socio-philosophical perspectives.

Professor Hrudananda Ray, the honoured Chief guest on the occasion is a very renowned personlity in the fields of philosophy and literature. As an eloquent speaker with wide learning he has been widely acclaimed though out the country. He has written a number of books both in philoophy and literature. His book on History of Philosophy has gone on for the third edition. His autobiography has brought to him the prestigious 'Sarala' award. He also received the Sahitya Academy award for his U.S.A travel story.

Sri Soumya Ranjan Patnaik, the Guest of Honour in the function is not only a distinguished journalist-cum-editor of the most widely circulated daily 'Sambad' but also an intellectual of high order. His manner of presentation is well taken both by the editor and the general readers. His recent introduction of Kanaka TV is a significant addition to his a standing contribution to the odia people at large. I sincerely wish him all success and glory in the future years to come.

♦ ♦ ♦

## ଦାଶ ବେନହୁର

ଶତାଧିକ ପୁସ୍ତକର ରଚୟିତା ପ୍ରଫେସର ଜିତେନ୍ଦ୍ର ନାରାୟଣ ଦାଶ ସର୍ବତ୍ର ଏହି ସାହିତ୍ୟିକ ନାମରେ ପରିଚିତ। ଜଣେ ନମ୍ର, ବନ୍ଧୁବତ୍ସଳ, ବିଜ୍ଞ, ସୁଚିନ୍ତା ଭାବରେ ଓ ଜଣେ ପ୍ରବୀଣ ଅଧକ୍ଷ ଭାବରେ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜ୍‌ରୁ ଅବସର ନେଇଛନ୍ତି। ସେ ଏକଦା ସେଇ କଲେଜ୍‌ରେ ଗଣେଶ୍ୱର ସାର୍‌ଙ୍କର ଛାତ୍ର ଥିଲେ। ସାର୍‌ଙ୍କୁ ସମ୍ମାନ ଜଣାଇବାର ଭାବ ତାଙ୍କ ପ୍ରଦତ୍ତ ପତ୍ରରୁ ହିଁ ମିଳିଥାଏ। ଓଡ଼ିଶା ଏବଂ ସର୍ବଭାରତୀୟ ସ୍ତରରେ ସେ ବହୁ ସମ୍ମାନ ଲାଭ କରିଛନ୍ତି। ୨୦୧୪ ମସିହାରେ ଜାତୀୟ ସ୍ତରରେ ସର୍ବଶ୍ରେଷ୍ଠ ଶିଶୁସାହିତ୍ୟ ସମ୍ମାନ ଲାଭ କରିଥିଲେ।

- ସମ୍ପାଦକ

**ଦାଶ ବେନହୁର** ୨୬ ନଭେମ୍ବର ୨୦୧୧

ଶୈଳଶ୍ରୀ ବିହାର, ଭୁବନେଶ୍ୱର-୭୫୧୦୨୧
୦୬୭୪-୨୭୪୪୫୬

ସାର୍,

ମୋର ପ୍ରଣାମ ଗ୍ରହଣ କରିବେ। ଅନେକ ଦିନ ତଳେ ଆପଣଙ୍କ ଚିଠି ପାଇଥିଲି। ଅନ୍ୟାନ୍ୟ କର୍ମବ୍ୟସ୍ତତା ଯୋଗୁଁ ଚିଠି ଲେଖିବି ଲେଖିବି ହୋଇ ମୋର ବିଳମ୍ବ ହୋଇଗଲା। 'କଥା'ରୁ ମୋ ଲିଖିତ 'କାନ୍ଦ' ଗଳ୍ପଟି ଆପଣଙ୍କ ମନକୁ ଛୁଇଁଥିବାରୁ ମୁଁ ଖୁବ୍ ଆନନ୍ଦିତ। ଆପଣଙ୍କ ପ୍ରତିକ୍ରିୟା ଓ ଆଶୀର୍ବାଦ ମୋ ଲାଗି ମହାର୍ଘ ପୁରସ୍କାର ଭଳି। ଆପଣ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରେ ଅଧ୍ୟାପକ ଥିବାବେଳେ ୧୯୭୧ ମସିହାରେ ମୁଁ ସେଠି ଛାତ୍ର ଥିଲି। ଆପଣ ମୋର ଅପରିଚିତ ନୁହନ୍ତି। ସାନ ହେଲେ ବି ସୁମନ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ। ସେ ଆପଣଙ୍କ ପୁଅ ବୋଲି ମଧ୍ୟ ତା'ପ୍ରତି ମୋର ବିଶେଷ ଶ୍ରଦ୍ଧା ରହିଛି। ଆପଣ କେବଳ ନିଷ୍ଠାପର ଅଧ୍ୟାପକ ନଥିଲେ, ଚିରକାଳ ଗୁଣଗ୍ରାହୀ ମଧ୍ୟ। 'ସମାଜ'ରେ କେତେକ ଆପଣଙ୍କ ଲିଖିତ ପ୍ରବନ୍ଧ ପଢ଼ି ମୁଁ ଅପାର ଆନନ୍ଦ ଲାଭ କରିଛି। ଆପଣଙ୍କ ପରିଚୟ ଆପଣ ନିଜେ। ପୁରାତନ ଛାତ୍ରମାନେ ହୁଏତ ଆପଣଙ୍କ ସହ ଯୋଗାଯୋଗରେ ନଥିବେ ମାତ୍ର ଆପଣ ଯେ ଅନେକଙ୍କ ପାଇଁ ସମ୍ମାନାସ୍ପଦଭାବେ ସ୍ମରଣୀୟ ଏକଥା ଅନସ୍ୱୀକାର୍ଯ୍ୟ। ମୁଁ ଜାଣେ ଆପଣ ଫରେଷ୍ଟପାର୍କ ରେ ରହନ୍ତି, ଅଥଚ ମନ କେବେ କୁଳେଇ ନାହିଁ ଆପଣଙ୍କୁ ଭେଟିବାକୁ। ଅନେକଟା ହୁଏତ ସଂକୋଚ ଯୋଗୁଁ। ସୁବିଧା ସୁଯୋଗ ମିଳିଲେ ସାକ୍ଷାତ କରି ନିଜକୁ ଧନ୍ୟ ମଣିବି।

ଈଶ୍ୱରଙ୍କ କୃପାରୁ ଆପଣ କୁଶଳରେ ଥିବେ ବୋଲି ଆଶା କରୁଛି।

**ଇତି ଆପଣଙ୍କର କଲ୍ୟାଣକାମୀ**
**ଜିତେନ୍ଦ୍ର (ଦାଶ ବେନହୁର)**

## ଅବସରପ୍ରାପ୍ତ ଦର୍ଶନ ପ୍ରଧାପକ ପ୍ରଫୁଲ ଚନ୍ଦ୍ର ମିଶ୍ର

ସମ୍ମାନାସ୍ପଦ ସାର୍ (ଶ୍ରୀ ଗଣେଶ୍ୱର ଦାସ) ୨୪ ନଭେମ୍ବର ୨୦୧୪

ପ୍ରଣାମ ଗ୍ରହଣ କରିବେ

ଦୀର୍ଘ ଚାଳିଶ ବର୍ଷ ତଳର ମୁଁ ଆପଣଙ୍କର ଜଣେ ଛାତ୍ର । ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀରେ ଦୁଇଟି ବର୍ଷ ବି.ଏ ଦର୍ଶନ (ସମ୍ମାନ) ଶ୍ରେଣୀରେ କଟିଛି । ସେତେବେଳେ ଆପଣ ଥିଲେ ବିଭାଗୀୟ ମୁଖ୍ୟ । ମୁଁ ମଧ ଆପଣଙ୍କ ପଦାଙ୍କ ଅନୁସରଣ କରି ଦର୍ଶନ ଅଧାପକ ରୂପେ ଓଡ଼ିଶାର ବିଭିନ୍ନ ସରକାରୀ ମହାବିଦ୍ୟାଳୟ ମାନଙ୍କରେ ଅଧାପନା କରି ୨୦୧୨ ମେ ମାସରେ ମୋର ପ୍ରିୟ ପୁରାତନ କଲେଜ୍ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରୁ ଅବସର ଗ୍ରହଣ କରିଛି ।

ସେତେବେଳର କେତେକ କଥା ମନେପଡ଼େ । ବହୁତ ମଧ ସ୍ମୃତିପଟରୁ ଅପସାରିତ ହୋଇଗଲାଣି । ସେଥିରୁ ଅଳ୍ପ କେତୋଟି ସାଉଁଟି ଆଣି ଲେଖାଟିଏ ଲେଖି ଏ ଚିଠି ସହିତ ଆପଣଙ୍କ ପାଖକୁ ପଠାଉଛି । ପଢ଼ିବେ ।

ଅତୀତ, ଅତୀତ ହୋଇ ରହିଲେ ମଧ ନିତ୍ୟନୂତନ । କାରଣ ପଛକଥାରେ ଯେଉଁ ସରସତା ଥାଏ ତାହା ରୋମନ୍ଥନ କଲେ ପ୍ରାଣ ପୂରିଉଠେ । ଅନୁଭବୀ ହିଁ ଏହା ସହଜରେ ଜାଣିପାରେ । ତେତିଶ ବର୍ଷର ଅଧାପନା ପରେ ଏବେ ଭାବିଲେ ଆମ ଛାତ୍ରବେଳର ପାଠପଢ଼ା ମନେପଡ଼େ । ସେତେବେଳର ଶିକ୍ଷକ ଛାତ୍ର ସମ୍ପର୍କ ଥିଲା ଅନନ୍ୟ, ଅନୁପମ । ଆତ୍ମୀୟତା ଡୋରରେ ବାନ୍ଧି ହୋଇଗଲେ ପର ବି' ଆପଣାର ହୋଇଯାଏ, ଦୂର ମଧ ନିକଟତର ମନେ ହୁଏ ।

ଆପଣ ସେତେବେଳେ ଛାତ୍ରମାନଙ୍କ ଗହଣରେ ଅତି ନିକଟ ସମ୍ପର୍କ ରଖିଥିଲେ । ପ୍ରତ୍ୟେକ ପିଲାର ନାମ ମନେରଖି ସ୍ନେହ ସଦିଚ୍ଛା ଢାଳି ଦେଉଥିଲେ । ସେ ସବୁଥିରୁ କିଛି କିଛି ପ୍ରଭାବ ଆମମାନଙ୍କ ଉପରେ ମଧ ପଡିଛି । ତେଣୁ ସେସବୁର ଶ୍ରେୟ ଆପଣମାନଙ୍କର । ଆପଣଙ୍କ ସହିତ ସେତେବେଳେ ଥିଲେ ପ୍ରାଧାପକ ରମେଶଚନ୍ଦ୍ର ପଟ୍ଟନାୟକ ଏବଂ ଅଧାପକ ଚୈତନ୍ୟ ପ୍ରସାଦ ସେଠୀ, ଅଧାପିକା ଶ୍ରୀମତୀ ବିଷ୍ଣୁପ୍ରିୟା ପଟ୍ଟନାୟକ । ସମସ୍ତଙ୍କର ସ୍ନେହ ଶ୍ରଦ୍ଧା ମନେ ଅଛି ।

ଆପଣଙ୍କର କର୍ମରତ ଜୀବନ ଏହିପରି ଆମମାନଙ୍କୁ ପ୍ରେରଣା ଦେଉଥାଉ । ଲେଖନୀ ଆପଣଙ୍କର ଅବିରତ ଚାଲିଥାଉ । ଏହା ହିଁ ଭଗବାନଙ୍କ ନିକଟରେ ମୋର ପ୍ରାର୍ଥନା । ଲେଖାଟି ଭଲ ଲାଗିଲେ କହିବେ । ଅନେକ କଥା ଅଲେଖା ହୋଇ ରହିଗଲା । ସମୟ ସୁବିଧା ଦେଖି ତାହା ଆମ୍ଭ ପ୍ରକାଶ କରିବାର ବାସନା ରହିଲା ।

ଇତି ଆପଣଙ୍କର ସ୍ନେହର
ପ୍ରଫୁଲ ମିଶ୍ର
ପୂର୍ବତନ ଛାତ୍ର, ୧୯୭୩-୭୪
ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀ

ମୋ ଠିକଣା
ପ୍ରାଧାପକ ପ୍ରଫୁଲ ଚନ୍ଦ୍ର ମିଶ୍ର (ସେବା ନିବୃତ୍ତ)
ପ୍ଲଟ ନଂ ୨୫୧୫/୫, ବ୍ୟାଙ୍କ କଲୋନୀ
ରଥରୋଡ଼, ପୁରୁଣା ଭୁବନେଶ୍ୱର
ମୋ-୯୮୬୧୩୯୧୭୯୧

# ମୋ ଅଧ୍ୟାପକ (ସାର୍) ଗଣେଶ୍ୱର ଦାସ

ଚାଳିଶ ବର୍ଷର ବ୍ୟବଧାନ ଚାରିଦିନ ପରି ଲାଗୁଛି। ୧୯୭୩-୭୪ ମସିହା କଥା। ପୁରୀ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ। ସେତେବେଳେ ମୁଁ ସ୍ନାତକ ଦର୍ଶନ (ସମ୍ମାନ) ବିଭାଗର ଛାତ୍ର। ବିଭାଗୀୟ ମୁଖ୍ୟ ସୁନାମଧନ୍ୟ ଛାତ୍ରପ୍ରାଣ ପ୍ରାଧ୍ୟାପକ ଶ୍ରୀଯୁକ୍ତ ଗଣେଶ୍ୱର ଦାସ। କେବଳ ପୁରୀ କଲେଜ୍‌ରେ ଦର୍ଶନ ବିଭାଗରେ ବତିଶିଟି ସ୍ଥାନ ଥାଏ। ସବୁସ୍ଥାନ ପୂର୍ଣ୍ଣ ଥାଏ। ଅଧକ୍ଷ ଥାଆନ୍ତି ଡକ୍ଟର ସତ୍ୟବାଦୀ ମିଶ୍ର।

ପୁରୀ ସହିତ ମୋର ଭାବଗତ ସମ୍ପର୍କ କେବଳ ନୁହେଁ ପାରିବାରିକ ସମ୍ବନ୍ଧ ମଧ୍ୟ। ତିଆଡ଼ି ସାହୀରେ ମୋ ଅଜା ପଣ୍ଡିତ ପୁରୁଷୋତ୍ତମ ତର୍କାଳଙ୍କାର ଘର। ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ବହୁ କୁଟୁମ୍ବ, ଜ୍ଞାତି ପରିଜନଙ୍କର ବାସସ୍ଥାନ। ସହଜେ ତ ଶ୍ରୀ ଜଗନ୍ନାଥଙ୍କ ପୂର୍ଣ୍ଣଧାମ ଓ ପ୍ରସିଦ୍ଧ ମହୋଦଧି। ଏହିପରି ଏକ ସଂସ୍କୃତି ସମ୍ପନ୍ନ କ୍ଷୁଦ୍ର ସହର ସହିତ ମୋ ଜୀବନର ସମ୍ପର୍କ ପରେ ପୁଣି ଚାକିରୀ ଜୀବନ କାଳ ପର୍ଯ୍ୟନ୍ତ ପ୍ରଲମ୍ବିତ ହୋଇଥିଲା।

ଦର୍ଶନ ସମ୍ମାନ ନେଇ ପଢ଼ିବା ପାଇଁ ଇଚ୍ଛା ଥିଲା ସ୍କୁଲ ଜୀବନରୁ। ସେ ଆଉ ଏକ ଅଧ୍ୟାୟ। ଏବଂ ତା'ର ପ୍ରାଣକେନ୍ଦ୍ର ହେଉଛି ଅଧ୍ୟାପକ ହୃଦାନନ୍ଦ ରାୟଙ୍କର ଗୋଟିଏ ଭାଷଣ। ଜୀବନରେ ଦର୍ଶନ ଅଧ୍ୟାପକ ହେବା ପାଇଁ ବଳବତୀ ଇଚ୍ଛା ସେଇ ଦଶମ ଶ୍ରେଣୀର ଛାତ୍ରାବସ୍ଥାରୁ। ଜୀବନରେ ଅଧ୍ୟାପକ ଭାବରେ ପାଇ ନାହିଁ ଶ୍ରୀ ହୃଦାନନ୍ଦ ରାୟଙ୍କୁ। ଦୂରରୁ ଦେଖିଛି ଏବଂ ଶୁଣିଛି ଅନେକ ଥର।

ମୁଁ ଏକଲବ୍ୟ ସିନା ହୋଇପାରିନାହିଁ, ମାତ୍ର ମୋ ଶିକ୍ଷାଜୀବନର ହୃଦୟାକାଶରେ ଅଧ୍ୟାପକ ହୃଦାନନ୍ଦରାୟ ଗୁରୁ ଦ୍ରୋଣ ରୂପେ ଚିରଦିନ ନମସ୍ୟ ହୋଇରହିଛନ୍ତି।

ଗଣେଶ୍ୱର ସାରଙ୍କୁ ସେତିକିବେଳେ ଚିହ୍ନିଲି। ନାତିଦୀର୍ଘ ଚେହେରା ବେଶଭୂଷା ସଂଯତ, ରୁଚିପୂର୍ଣ୍ଣ। ଚାଲିଚଳନ ପ୍ରାଣ ପ୍ରାଚୁର୍ଯ୍ୟରେ ଭରା। ମୁହଁରେ ମୁହେଁ ତୃପ୍ତିର ହସ। ସେ ହସରେ ଭରି ରହିଥିଲା ସ୍ୱପ୍ନ, ବାସ୍ତବତା ମିଶା ମଣିଷ ପଣିଆର ବାସ୍ନା। ଚଷମା କାଚ ଭିତରୁ ଯେଉଁ ଆଖି ଦୁଇଟି ସମସ୍ତଙ୍କୁ ନିଜର କରି ନେଇପାରୁଥିଲା। ସେ ଦୁଇଟି ଥିଲା ଦେଖିବାର ବସ୍ତୁ। ଖୁବ୍ ପ୍ରାଣପୂର୍ଣ୍ଣ ଔଜଲ୍ୟରେ ଭରପୂର। ହଁ, ପ୍ରାୟ ସଦାବେଳେ ସାରଙ୍କ ହାତରେ ଥାଏ ଗୋଟିଏ ବଡ ଚମଡା ବ୍ୟାଗ୍। ସାର୍ କ୍ଲାସ ଭିତରକୁ ପଶି ଆସିବା ସହିତ ଏକସଙ୍ଗେ ଚାଲିଆସେ ସ୍ନିଗ୍ଧତାର ଫୁଆରା, ସଂପ୍ରୀତିର ବାସ୍ନା। ବ୍ୟାଗ୍‌ଟି ଟେବୁଲ୍ ଉପରେ ଥୋଇ ପ୍ରଥମେ ଚାରିଦିଗକୁ ଖୁସୀରେ ଅନେଇ ଦିଅନ୍ତି ସାର୍। ପ୍ରତ୍ୟେକଟି ପିଲା ଉପରେ ସସ୍ନେହ ଦୃଷ୍ଟିପାତ। କେହି ବି ତାଙ୍କ ଦୃଷ୍ଟିରୁ ବାଦ୍ ପଡନ୍ତି ନାହିଁ। କିଏ ବି କାହା ସହିତ କଥାବାର୍ତ୍ତା କରୁଥିଲେ ସ୍ନେହବୋଳା ଚାହାଣୀ ଏବଂ କିଛି କଥାରେ ସେ ମନ୍ତ୍ରବତ ମୋହିତ ହୋଇ ସ୍ଥିର ହୋଇଯାଉଥିଲା। ତା'ପରେ ଉପସ୍ଥାନ ପକାଉଥିଲେ। ସେଥିରେ ମଧ୍ୟ ଖୁବ୍ ନଜର। ଏହାପରେ ଆରମ୍ଭ ହେଉଥିଲା ପୂର୍ବପାଠର ସୂଚନା। କେହି କେହି କହୁଥିଲେ। ଏହିପରି ଅଳ୍ପ ସମୟର ଭାବର ଆଦାନ ପ୍ରଦାନ ପରେ ଆରମ୍ଭ ହେଉଥିଲା ସେଦିନର ପାଠପଢା। ସବୁକଥା ତ ମନେନାହିଁ। ତେବେ ଯାହା ମନେ ପଡୁଛି ପାଶ୍ଚାତ୍ୟ ଦର୍ଶନର ଇତିହାସ ସାର୍ କିଛି ଦିନ ପଢାଇଥିଲେ। କୌଣସି ଦାର୍ଶନିକ ଶ୍ରେଣୀ ଗୃହରେ ଉପସ୍ଥାପନା କଲାବେଳେ ସାର୍ ନିବିଷ୍ଟ ଚିତ୍ତରେ ବିଶ୍ୱସ୍ତତାର ସହିତ ନିପୁଣ ଭାବରେ ସେହି ଦର୍ଶନ ପ୍ରତି ଆମମାନଙ୍କୁ ଆକର୍ଷିତ କରି ଆଣୁଥିଲେ। ଯେପରି ମନେ ହେଉଥିଲା ସେଇ ଦାର୍ଶନିକ ହିଁ ଏକାନ୍ତ ପ୍ରାସଙ୍ଗିକ।

ସେ ସମୟରେ ଶିକ୍ଷକ ଓ ଛାତ୍ରମାନଙ୍କର ସମ୍ପର୍କ ଥିଲା ଅନ୍ୟପ୍ରକାରର। କଲେଜମାନଙ୍କର ଅବସ୍ଥା ଆଜିକାଲି ପରି ଦୟନୀୟ ନଥିଲା। ପିଲାଥିଲେ ଭରପୂର। ଅଧ୍ୟାପକମାନଙ୍କର ସଂଖ୍ୟା ମଧ୍ୟ ତଦନୁଯାୟୀ ଥିଲା। ପ୍ରଧାନ କଥା ହେଲା ପ୍ରାୟପିଲା ଶ୍ରେଣୀରେ ଯୋଗ ଦେଉଥିଲେ। ଆଜିକାଲିପରି ଉପସ୍ଥାନ ନଥିଲା। ନଥିଲା ମଧ୍ୟ ଶିକ୍ଷକମାନଙ୍କର ନିଷ୍ଠାର ଅଭାବ। ସବୁ ଶ୍ରେଣୀରେ ପିଲା ଭର୍ତ୍ତି। କଲେଜ୍ ବାରଣ୍ଡାରେ କିଶୋର କାକଳୀରେ ଭରି ରହିଥିଲା ପ୍ରାଣପ୍ରାଚୁର୍ଯ୍ୟ ଏବଂ ଅନ୍ତରଙ୍ଗତା। ଅଧିକାଂଶ ମୁହଁଟି ମାନ ଦିଶୁଥିଲା ଉଜ୍ଜ୍ୱଳ। ଆଜିକାଲି କ୍ଳାନ୍ତ ଅପରାହ୍ନର ଛାୟା। କଲେଜ ହୋଇଯାଇଛି ଏକ ଗୌଣ ସ୍ଥାନ। କେବଳ ଔପଚାରିକତା ଦୃଷ୍ଟିରୁ ସବୁକିଛି ଯାହା ଚାଲିଛି। ଶିକ୍ଷାଜଗତ ବାହାର ଜଗତ ଠାରୁ ବିଚ୍ଛିନ୍ନ ନୁହେଁ। ସମାଜର ଏବଂ ବ୍ୟବସ୍ଥାର ପ୍ରତିଫଳନ (ଭଲ ଅବା ମନ୍ଦ) ପ୍ରତିକ୍ଷେତ୍ରରେ ଘଟିବ ହିଁ ଘଟିବ। ଶିକ୍ଷାଳୟମାନ ସେଥିରୁ ଅବା ବାଦ ଯିବ କିପରି!

ଅଧ୍ୟାପକମାନେ ସେ ସମୟରେ ଅନ୍ୟପ୍ରକାରର ଥିଲେ । ଅଧିକାଂଶ ଶିକ୍ଷାଦାନକୁ ମୁଖ୍ୟ ବୋଲି ଗ୍ରହଣ କରୁଥିଲେ, ଅନ୍ୟ ସବୁ ଗୌଣ । ଏବେ କଅଣ ସେଇଆ ଅଛି ! ଗଣେଶ୍ୱର ସାରଙ୍କ ସଙ୍ଗେ ପିଲାମାନଙ୍କର ବ୍ୟକ୍ତିଗତ ସମ୍ପର୍କ ଥିଲା । ଆମ ସାଙ୍ଗମାନେ ସାରଙ୍କ ଘରକୁ ବେଳେବେଳେ ପାଠବୁଝିବା ପାଇଁ ଯାଇ ପେଟେ ଜଳଖିଆ ନଖାଇ ଫେରିପାରୁନଥିଲେ । ପ୍ରତିଟି ପିଲା ଯେପରି ତାଙ୍କରି ପିଲା । ସେମିନାର ହେବ, ସାର୍‌ଙ୍କର ସେଥିପାଇଁ ବହୁଆଗରୁ ପ୍ରଚେଷ୍ଟା । ବଣଭୋଜୀ ହେବ, ସେଥିପାଇଁ ତତ୍ପରତା । ପିଲାଏ ପରୀକ୍ଷାରେ କିପରି ଭଲ କରିବେ ସେଥିପାଇଁ ଚିନ୍ତା । ଏ ସବୁ ଭିତରେ ବ୍ୟକ୍ତି ସ୍ତରରେ ନିକଟ ସମ୍ପର୍କ ଏକ ଭିନ୍ନ ସମ୍ପର୍କକୁ ଡାକିଆଣେ । ସେ ସମ୍ପର୍କ ହୃଦୟର, ମନର, ପ୍ରାଣର କେବଳ ନୁହେଁ ବରଂ କହିହେବ ଆତ୍ମାର ।

ଥରକର କଥା । ସେମିନାର ହେବ । ବକ୍ତାଭାବରେ ଆସିବେ ପ୍ରଖ୍ୟାତ ମନସ୍ତତ୍ତ୍ୱବିତ୍, ସାହିତ୍ୟିକ, ଦାର୍ଶନିକ, ସମାଜତତ୍ତ୍ୱବିତ୍ ଶ୍ରୀ ଚିତ୍ତରଞ୍ଜନ ଦାସ । ଆଗରୁ ଆମକୁ ସାର୍ ବରାବର କହିଥାଆନ୍ତି କ୍ଲାସ୍‌ରେ, "ଦେଖ ସିଏ ତୁମ ପାଶ୍ଚାତ୍ୟ ଦର୍ଶନର ଇତିହାସ ଅନ୍ତର୍ଗତ ଦାର୍ଶନିକ ସ୍ପିନୋଜାଙ୍କ ଦର୍ଶନ ଉପରେ ଗବେଷଣା କରିଛନ୍ତି । କେବଳ ସେତିକି ନୁହେଁ ମୂଳ ଭାଷାରେ ତାଙ୍କ ବହିପଢ଼ିଛନ୍ତି ଏବଂ ତାଙ୍କ ଘରଦ୍ୱାର ବୁଲି ଦେଖିଛନ୍ତି ।" ଆମେ ସମସ୍ତେ ଉତ୍ସୁକତାର ସହିତ ସେଇ ଦିନଟିକୁ ଅପେକ୍ଷା କରିଥାଉ । ସଭା ହେଲା ବର୍ତ୍ତମାନ ଯାହାକୁ Heritage Hall କୁହାଯାଉଛି ସେଇ ବିରାଟ ପ୍ରକୋଷ୍ଠରେ । ସଭାପତିତ୍ୱ କରିଥିଲେ ପୁରୀର ମାନ୍ୟଗଣ୍ୟ ବ୍ୟକ୍ତି ଶ୍ରୀ ଅରବିନ୍ଦ ଦର୍ଶନ ଅନୁରାଗୀ, ପୂର୍ବତନ ପାର୍ଲ୍ୟାମେଣ୍ଟ ସଦସ୍ୟ ଶ୍ରୀଯୁକ୍ତ ଲୋକନାଥ ମିଶ୍ର (ପଙ୍କ ବାବୁ ନାମରେ ପୁରୀ ସହରରେ ପରିଚିତ) । ମୋର ଦାୟିତ୍ୱ ଥିଲା ଅତିଥିଙ୍କୁ ତାଙ୍କ ଦୋଳମଣ୍ଡପ ସାହୀ ଘରୁ ସାଙ୍ଗରେ ଆଣି କଲେଜ୍‌ରେ ପହଞ୍ଚାଇବା ।

ପୁରୀ କଲେଜରୁ ମୋ ପାଠପଢା ସରିଲା ୧୯୭୪ ଖରାଦିନେ । ସାର୍ ତା'ପରେ ପୁରୀ ଛାଡିଲେ । ପରେ ଯେତେବେଳେ ଯେଉଁଠି ଦେଖା ହୋଇଛି ରିକ୍ସା ଭିତରୁ ହେଉ ଅବା ଷ୍ଟେସନ୍ ପ୍ଲାଟଫର୍ମରେ, ନମସ୍କାର କରିବା ମାତ୍ରେ ପ୍ରାଣେ ଉଚ୍ଛୁଳା ହସ ସହିତ ସେ ସାଙ୍ଗ ପରି ମିଶିଯାଆନ୍ତି, କୁଶଳ ପ୍ରଶ୍ନ ପଚାରି ।

ବେଳେବେଳେ ଦୈନିକ 'ସମାଜ'ରେ ସାରଙ୍କ ଲେଖା ବାହାରେ । ମନ ଦେଇ ପଢ଼େ । ସେ ସବୁରୁ ଅଧିକାଂଶ ଯାଏ ଶିକ୍ଷା ଓ ସମାଜ ସମ୍ପର୍କୀୟ । ସାଧାରଣତଃ ଉଚ୍ଚଶିକ୍ଷା ଉପରେ ଅନୁଭବୀ ସାର୍ ସୁଚିନ୍ତିତ ମତମାନ ବ୍ୟକ୍ତ କରୁଥିଲେ । ସେ ସବୁ ଲେଖା ଆଜି ପୁସ୍ତକ ଆକାରରେ ପ୍ରକାଶିତ ଏବଂ ପ୍ରସାରିତ ହୋଇ ପାରିଛି । 'ସମାଜ' ପୃଷ୍ଠାରେ ବେଳେବେଳେ କୌଣସି ସଭାସମିତିରେ ସାରଙ୍କ ଯୋଗଦାନର ସମ୍ବାଦ ଫଟୋ ସହ ପ୍ରକାଶିତ ହେବାର ମଧ୍ୟ ଆଖିରେ ପଡେ ।

ଛାତ୍ରଜୀବନ ପରିସମାପ୍ତି ପରେ ମୁଁ ଶିକ୍ଷକତା ବୃତ୍ତିରେ ପାଦ ଦେଲି । ଯୋଗଦେଲି ସରକାରୀ କଲେଜ୍‌ରେ ଦର୍ଶନ ଅଧ୍ୟାପକ ରୂପେ । ଏବେ ପରିଣତ ବୟସରେ ସେବାନିବୃତ୍ତ ହେବା ପରେ ମନ ଫେରିଯାଏ ସେଇ ଅତୀତକୁ ଦୀର୍ଘ ଚାଳିଶ ବର୍ଷ ତଳକୁ । କେବେ କେବେ ସମୟ ସୁବିଧା ଦେଖି ସାର୍‌ଙ୍କ ଫରେଷ୍ଟ ପାର୍କସ୍ଥିତ ଘରକୁ ଯାଇଛି । ସବୁଥର ସେଇ ପ୍ରୀତିପୂର୍ଣ୍ଣ ଆତିଥ୍ୟ ଏବଂ ହସହସ ମୁହଁ । ଏବେ ମଧ୍ୟ ସାର୍ ମୋ ପାଇଁ ପ୍ରେରଣାର ପ୍ରାଚୁର୍ଯ୍ୟଭରା ଉତ୍ସ । ଯେଉଁ ଉତ୍ସ ବି ଶୁଷ୍କ ହେବାର ନୁହେଁ । ଚିର ଅମ୍ଳାନ ଏବଂ ଚିର ଜାଜ୍ୱଲ୍ୟମାନ । ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ସାରଙ୍କର ଅବଶିଷ୍ଟ କର୍ମମୟ ଜୀବନ ସମାଜ ପ୍ରତି ଥିବା କର୍ତ୍ତବ୍ୟ ସମ୍ପାଦନାରେ କଟୁ ଏବଂ ସାର୍ ଆମକୁ ଆଉ କିଛି ଲେଖା ଉପହାର ଆକାରରେ ଦେଇ ଆମ୍ଭମାନଙ୍କୁ କୃତାର୍ଥ କରନ୍ତୁ ।

ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର
ଦର୍ଶନ ଅଧ୍ୟାପକ (ସେବା ନିବୃତ୍ତ)
ମୋ-୯୮୬୧୩୯୧୬୯୧

ପ୍ଲଟ ନଂ ୨୫୧୫/୫, ବ୍ୟାଙ୍କ କଲୋନୀ
ରଥରୋଡ, ପୁରୁଣା ଭୁବନେଶ୍ୱର

# ଅଧ୍ୟାପକ ଡକ୍ଟର ସୁକାନ୍ତ ଚନ୍ଦ୍ର ସ୍ୱାଇଁ

ସାର୍‌ଙ୍କ ପଢ଼ା ଟେବୁଲ୍ ଉପରେ ସାର୍‌ଙ୍କର ଫଟ ଥାଇ ଗୋଟିଏ ନୂଆ ରକମର ଘଣ୍ଟା ଦେଖିଲି ଯାହା ଉପରେ କି ଜନ୍ମଦିନର ଶୁଭେଚ୍ଛା ଲେଖାହୋଇଛି । ସାର୍‌ଙ୍କୁ 'ବାପୁ' ବୋଲି ସମ୍ବୋଧନ କରି ଶୁଭେଚ୍ଛା ବାକ୍ୟ ଗୁଡ଼ିକ ଲେଖା ହୋଇଛି । ଶୁଭେଚ୍ଛା ଜଣାଇଛନ୍ତି 'ସୁକାନ୍ତ' ଓ 'ସୁନୀତା' । ବୁଝିବାକୁ ପାଇଲି ଯେ ସୁକାନ୍ତ ହେଉଛନ୍ତି ପ୍ରଫେସର ଡକ୍ଟର ସୁକାନ୍ତ ଚନ୍ଦ୍ର ସାଇଁ ଏବଂ ସୁନୀତା ତାଙ୍କର ଧର୍ମପତ୍ନୀ । ସାର୍ ବେଶ୍ କିଛି ବର୍ଷ ହେବ ସୁକାନ୍ତ ବାବୁଙ୍କୁ ପୁତ୍ରବତ୍ ଭଲ ପାଇଆସିଛନ୍ତି । ସୁକାନ୍ତ ବାବୁ ଝାଡ଼ଖଣ୍ଡ ଇକ୍‌ଫାଇ (ICFAI) ବିଶ୍ୱବିଦ୍ୟାଳୟରେ ଅର୍ଥନୀତି ଅଧ୍ୟାପକ ଭାବେ କାର୍ଯ୍ୟ କରୁଛନ୍ତି । ସାରା ବିଶ୍ୱରେ ସୁନାମ ଅର୍ଜନ କରିଥିବା ବିଶିଷ୍ଟ ଅର୍ଥନୀତିଜ୍ଞ ପ୍ରଫେସର ଡକ୍ଟର ପ୍ରଶାନ୍ତ କୁମାର ପଟ୍ଟନାୟକଙ୍କ ତତ୍ତ୍ୱାବଧାନରେ ସୁକାନ୍ତ ବାବୁ ଗବେଷଣା କରି ପିଏଚ.ଡି ଡିଗ୍ରୀ ଲାଭ କରିଥିଲେ । ଡକ୍ଟର ପ୍ରଶାନ୍ତ କୁମାର ପଟ୍ଟନାୟକଙ୍କର ଅନନ୍ୟ ପ୍ରତିଭା ବିଷୟରେ ଅନ୍ୟତ୍ର ଲେଖା ହୋଇଛି ।

- ସମ୍ପାଦକ



## ଡକ୍ଟର ରବିନାରାୟଣ ମହାନ୍ତି

ଡକ୍ଟର ରବିନାରାୟଣ ମହାନ୍ତି ଦୀର୍ଘ ଆଠବର୍ଷ ଧରି ଓଡ଼ିଶା ସରକାରଙ୍କ କୃଷି ବିଭାଗରେ ନିର୍ଦ୍ଦେଶକ (ଡାଇରେକ୍ଟର) ଥିଲେ । ସେ ଉଦ୍ୟାନ ବିଜ୍ଞାନରେ ପିଏଚ୍.ଡି ଡିଗ୍ରୀ ଲାଭ କରିଥିଲେ । ଏଥି ପୂର୍ବରୁ ଦିଲ୍ଲୀରେ ଥିବା Pusa Institute - I.A.R.I. ରୁ ଏମ୍.ଏସ୍ ସି ଡିଗ୍ରୀ ଲାଭ କରିଥିଲେ ।
ଡକ୍ଟର ମହାନ୍ତି ଗଣେଶ୍ୱର ସାର୍‌ଙ୍କର ବାଲ୍ୟବନ୍ଧୁ । ସାର୍‌ଙ୍କ ଲିଖିତ "ଏ ସବୁ ମୋହର ସୁଖ ପସରା" କବିତା ପୁସ୍ତକଟି ଡକ୍ଟର ମହାନ୍ତି ପଢ଼ି ଭାବ ବିହ୍ୱଳ ହୋଇ ସାର୍‌ଙ୍କ ନିକଟ ଯେଉଁ ଚିଠି ଲେଖିଥିଲେ ସେ ଚିଠିର ନକଲ ଏଥିସହ ସଂଲଗ୍ନ କରୁଅଛି ।

- ସମ୍ପାଦକ

ପଳାଶପଲ୍ଲୀ, ଭୁବନେଶ୍ୱର
୧୧.୦୮. ରାତି ୯.୦୦ ଘଟିକା

ପ୍ରିୟ ଗଣେଶ୍ୱର (ଗନା)

ତୁମ ହାତଲେଖା ଚିଠି ସହ ତୁମର କବିତା "ଏ ସବୁ ମୋହର ସୁଖ ପସରା" ବହିଟି ଆଜି ଦିନ ୨ଟା ବେଳେ ପାଇ ବହୁତ ଖୁସି ହୋଇଗଲି । ବହି ଖୋଲି ପଢ଼ିବା ଆରମ୍ଭ କରିବା ପୂର୍ବରୁ ତୁମର ସ୍ନେହଭରା ଛୋଟ ଚିଠିଟି ମନରେ ଅଫୁରନ୍ତ ଆନନ୍ଦର ଟିକିଟିକି ଢେଉ ସୃଷ୍ଟି କରିଥିଲା । ମନେ ହେଲା ସତେ ଯେମିତି ଆମେ ପୂର୍ବପରି ସେମିତି ରହିଛେ ଜଣେ ଜଣକୁ ଖୋଜିବାର ମନ ନେଇ । ଦିନ, ମାସ, ବର୍ଷ ବିତିଯାଇଛି, ପ୍ରକୃତିର ନିୟମ ପ୍ରକାର ଦେହକୁ ଶୀର୍ଣ୍ଣକାୟ କରିବାରେ ତାର ପ୍ରୟାସ ଜାରି ରହିଛି କିନ୍ତୁ ମନକୁ ଛୁଇଁ ପାରିନି, ଛୁଇଁ ପାରିବନି ମଧ ପ୍ରଭୁର କୃପାଥିଲେ ।

ଧନ୍ୟବାଦ ବହୁତ ବହୁତ ଗନା । ବହିଟିକୁ ଖୁବ୍ ଶୀଘ୍ର ପଠାଇ ଦେଲ ସତେ ଯେପରି ମୋ କହିବାକୁ ଖାଲି ଅପେକ୍ଷା କରିଥିଲ । ବହିଟି ଆଜି ସଂଧ୍ୟାରେ ଏକ ନିଃଶ୍ୱାସରେ ପଢି ଶେଷ କଲି । ଗନା, କି ସୁନ୍ଦର ଲେଖିଛ - ଭାବବିହ୍ୱଳ ହୋଇ ପଡ଼ିଛ ପ୍ରତ୍ୟେକ ଲେଖା ଲେଖିବା ବେଳେ ହେବା ସାଭବିକ ମୁଁ ତାହା ଅନୁଭବ କଲି । କବି ହେବା ପାଇଁ କେହି କବିତା ଲେଖେନାହିଁ । ତାର ସୃଜନୀ ଶକ୍ତିର ବିକାଶ ଯେତେବେଳେ ଲୋକଲୋଚନକୁ ଆସେ, ସାଥୀ ସହୋଦର ସେତେବେଳେ ତାକୁ 'କବି' ଆଖ୍ୟା ଦିଅନ୍ତି ।

ତୁମର ପ୍ରତ୍ୟେକ କବିତାରେ ଫୁଟି ଉଠିଛି ତୁମ ଅନ୍ତରର ଗଭୀରତମ ପ୍ରଦେଶରୁ ଭାବଭରା ପୁଷ୍ପରାଜି - ସ୍ତ୍ରୀ, ପୁତ୍ର, ନାତି - ସମସ୍ତଙ୍କ ପାଇଁ ସମାନ ଭାବରେ । ସେଠି କମ୍ ବେଶୀ ହୋଇପାରିବନି । ହୃଦୟ ତ ଗୋଟିଏ, ତା ଭିତରେ ଯେଉଁ ଭାବ ପ୍ରଭୁ ଭରି ଦେଇଛନ୍ତି ତାହା କମ୍ ବେଶୀ ହେବ କେମିତି ?

ଡକ୍ଟର ଶ୍ରୀଚରଣ ମହାନ୍ତି ପ୍ରତ୍ୟେକଟି କବିତାକୁ ଅତି ସୁନ୍ଦର ଭାବରେ ବିଶ୍ଳେଷଣ କରି ତୁମ ପ୍ରତି ଥିବା ଭାବ ଏବଂ ଭକ୍ତିକୁ ତାଙ୍କର ହୃଦୟସ୍ପର୍ଶୀ ଲେଖାରେ ବ୍ୟକ୍ତ କରିଛନ୍ତି । ତାଙ୍କୁ ମୋ ତରଫରୁ ଧନ୍ୟବାଦ ଦେବ ।

ହଉ ଗନା, ଲେଖିବାର ଆଗ୍ରହକୁ ସମ୍ବରଣ ନକରିପାରି କେତେକଣ ଲେଖିଦେଲି । ତୁମର ପ୍ରତ୍ୟେକଟି କବିତା ହୃଦୟସ୍ପର୍ଶୀ ହୋଇଛି । କେତୋଟି ବ୍ୟଥାଦାୟକ ମଧ । ଗନା, ଲେଖାରେ ବ୍ୟଥା ନଥିଲେ ତାହା କ'ଣ ହୃଦୟକୁ ଛୁଇଁ ପାରିବ ?

ହଉଥା - କେଉଁଥିରେ ମନରେ ଦୁଃଖ ରଖିବ ନାହିଁ, ପ୍ରଭୁଙ୍କ ସୃଷ୍ଟିରେ ସବୁ ସୁଖମୟ ।

ପ୍ରଭୁ ଜଗନ୍ନାଥ ତୁମକୁ ଶାରିରୀକ ସୁଖ ଓ ମାନସିକ ଶାନ୍ତି ଦିଅନ୍ତୁ, ଏହା ହିଁ ତାଙ୍କ ପାଖରେ ପ୍ରାର୍ଥନା । ଏମିତି ତମେ ଲେଖୁଥାଅ, ଆଉ ମୁଁ ପଢୁଥାଏ ।

// ଇତି //
ତମର ପିଲାଦିନର ସାଙ୍ଗ
ଶୁଭାକାଂକ୍ଷୀ ରବି



ଗଣେଶ୍ୱର ସାର୍‌ଙ୍କର କଟକ ରେଭେନ୍ସା କଲିଜିଏଟ୍ ସ୍କୁଲ୍‌ରେ ପଢୁଥିବା କେତେଜଣ ସହପାଠୀ। ୧୯୪୮ ମସିହାରେ ସାର୍ ଉକ୍ତ ସ୍କୁଲ୍‌ରୁ ମାଟ୍ରିକ୍ୟୁଲେସନ୍ ପାଶ୍ କରିଥିଲେ।

**ବସିଥିବା ବନ୍ଧୁମାନେ (ବାମରୁ ଡାହାଣ)** - ଶ୍ରୀ ସଦାନନ୍ଦ ଦାସ, ଶ୍ରୀ ଗଣେଶ୍ୱର ଦା. ଶ୍ରୀ ତ୍ରୈଲୋକ୍ୟନାଥ ଦ୍ୱିବେଦୀ, ଡକ୍ଟର ରବିନାରାୟଣ ମହାନ୍ତି (ଅବସରପ୍ରାପ୍ତ ଡାଇରେକ୍ଟର, କୃଷି ବିଭାଗ), ଶ୍ରୀ ସଦାନନ୍ଦ ସିହ୍ନା (ଅବସରପ୍ରାପ୍ତ ଆଇ.ପି.ଏସ୍), ୵ଶ୍ରୀ ଶକ୍ତିପ୍ରସାଦ ମିଶ୍ର (ଅବସରପ୍ରାପ୍ତ ଆଇ.ଏ.ଏସ୍)

**ଠିଆ ହୋଇଥିବା ବନ୍ଧୁମାନେ (ବାମରୁ ଡାହାଣ)** - ଶ୍ରୀ ସରୋଜକାନ୍ତ ମିଶ୍ର (ଅବସରପ୍ରାପ୍ତ ବିଚାରପତି), ଶ୍ରୀ ଅକ୍ଷୟ କୁମାର ମହାପାତ୍ର, ଇଞ୍ଜିନିୟର ହରିହର ମହାନ୍ତି, ୵ ଶ୍ରୀ ଗୋଲକ ଚନ୍ଦ୍ର ମହାପାତ୍ର (ଅବସରପ୍ରାପ୍ତ ଆଇ.ଏ.ଏସ୍)

- ସମ୍ପାଦକ

ସାର୍‌ଙ୍କ ପରିବାର ବିଷୟରେ ପଦେ...

ସାର୍‌ଙ୍କ ପରିବାର ଭିତରକୁ ପ୍ରବେଶ ମୋର ଉଦ୍ଦେଶ୍ୟ ନଥିଲା। କିନ୍ତୁ ସାର୍, ମାଡାମ୍ ଓ ପିଲାମାନଙ୍କ ସାଙ୍ଗରେ ମୁଁ ବ୍ୟକ୍ତିଗତ ଭାବରେ ପରିଚିତ ଥିବାରୁ ସାର୍ ସେମାନଙ୍କର ବିଭିନ୍ନ ସମୟରେ ଦେଇଥିବା କେତୋଟି ଚିଠି ମତେ ଦେଖାଇଥିଲେ। ସେଥିରୁ ମାତ୍ର ଅଳ୍ପ କେତୋଟି ଏ ପରିଚ୍ଛେଦରେ ପ୍ରକାଶ କରୁଅଛି।

ସାର୍ ତାଙ୍କର ଆତ୍ମଜୀବନୀ 'ମନେପଡ଼େ' ରେ ପିଲାମାନଙ୍କ କଥା ଲେଖିଛନ୍ତି। ତାଙ୍କର ଏକମାତ୍ର ଝିଅ ସୀମା ପଟ୍ଟନାୟକ ଭଲ ପଢୁଥିବା ଛାତ୍ରୀ ଥାଇ। ଆଇନ୍ ଡିଗ୍ରୀ ହାସଲ କରିଥିଲେ ବି ଚାକିରୀ ବ୍ୟବସାୟ ନକରି ଗୃହସ୍ଥୀ ଭାବରେ ଜୀବନ ଯାପନ କରିବା ପସନ୍ଦ କରିଥିଲେ। ସେ ଅବଶ୍ୟ ସ୍ୱାମୀଙ୍କର ଡାକ୍ତରଖାନା ପରିଚାଳନାରେ ସାହାଯ୍ୟ କରନ୍ତି। ସ୍ୱାମୀ ଡାକ୍ତର ମନୁ ପଟ୍ଟନାୟକ ଜଣେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ସ୍ତ୍ରୀରୋଗ ବିଶେଷଜ୍ଞ। ଓଡ଼ିଶାରେ ପ୍ରଥମ ଟେଷ୍ଟଟ୍ୟୁବ୍ ବେବୀ ଜନ୍ମ କରାଇବାର କୃତିତ୍ୱ ଥିଲା ତାଙ୍କର। ରାଉରକେଲାରେ ୨ ଟି ବେଶ୍ ବଡ ଡାକ୍ତରଖାନା ଚଳାଉଥିବା ସହିତ ତୃତୀୟ ଡାକ୍ତରଖାନାର ପ୍ରସ୍ତୁତି ଚାଲିଅଛି। ଆନ୍ତର୍ଜାତିକ ସ୍ତ୍ରୀ ରୋଗ ବିଶେଷଜ୍ଞମାନଙ୍କ ସମ୍ମିଳନୀରେ ଡାକ୍ତର ପଟ୍ଟନାୟକଙ୍କର ପ୍ରସ୍ତାବମାନ ପ୍ରଶଂସିତ ହୋଇ ଗୃହୀତ ହୁଏ। ଡାକ୍ତର ପଟ୍ଟନାୟକଙ୍କର ପୁଅ ଦୀପମ୍‌ଜ୍ୟୋତି ଏବଂ ବୋହୂ ଡାକ୍ତର ସ୍ମିତା ଉଭୟ ବାଙ୍ଗାଲୋର୍‌ରେ ପୋଷ୍ଟଗ୍ରାଜୁଏଟ୍ ବିଦ୍ୟାର ଶେଷ ପର୍ଯ୍ୟାୟରେ ଅଛନ୍ତି। ଡାକ୍ତର ପଟ୍ଟନାୟକଙ୍କର ଝିଅ ଡାକ୍ତର ସାୟମ୍ ସ୍ମୃତି ପୋଷ୍ଟଗ୍ରାଜୁଏଟ୍ ବିଦ୍ୟା ଆରମ୍ଭ ପାଇଁ ପ୍ରସ୍ତୁତ ହେଉଛନ୍ତି।

ସାର୍‌ଙ୍କର ବଡ ପୁଅ ଡକ୍ଟର ସୁମନ୍ ଦାସ୍ ବେଶ୍ କିଛି ବର୍ଷ ଭୁବନେଶ୍ୱର ରମାଦେବୀ ମହିଳା କଲେଜ୍‌ରେ ରିଡ଼ର୍ ଭାବରେ ଅଧ୍ୟାପନା କରିବାପରେ ସଂପ୍ରତି ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟରେ କୁଳସଚିବ (Registrar) ଅଛନ୍ତି। ତତ୍ ସହିତ ଭୁବନେଶ୍ୱରସ୍ଥ B.K. College of Art & Craft ର ପ୍ରିନ୍‌ସିପାଲ୍ (ଅଧ୍ୟକ୍ଷ) ଦାୟିତ୍ୱ ଦକ୍ଷତାର ସହିତ ତୁଲାଉଛନ୍ତି। ତାଙ୍କର ପତ୍ନୀ ସୁଜାତା ଦାସ୍ ଚାକିରୀରୁ ଇସ୍ତଫା ଦେଇ ଗୃହସ୍ଥୀ ଦାୟିତ୍ୱ ବହନ କରିଅଛନ୍ତି। ସେମାନଙ୍କର ଏକମାତ୍ର ପୁତ୍ର ସୁକ୍ରୀତ୍ କୀଟ୍ (KIIT) ବିଶ୍ୱବିଦ୍ୟାଳୟରେ ଆଇନ୍ ପାଠ ପଢୁଛନ୍ତି। ସାର୍‌ଙ୍କର ସାନପୁଅ ପ୍ରଫେସର ସୁଶାନ୍ ଦାସ ଭୁବନେଶ୍ୱରସ୍ଥ ଖ୍ୟାତନାମା ଶିକ୍ଷାବିତ୍ ଡକ୍ଟର ବିଶ୍ୱଜିତ୍ ପଟ୍ଟନାୟକ ଚଳାଉଥିବା A.S.B.M. ରେ ଆସିଷ୍ଟାଣ୍ଟ ପ୍ରଫେସର ଅଛନ୍ତି। ତାଙ୍କର ପତ୍ନୀ ଦୀପ୍ତି ଦାସ୍ ଭୁବନେଶ୍ୱରସ୍ଥ ସତ୍ୟସାଇ ବାଳିକା ବିଦ୍ୟାଳୟରେ ଶିକ୍ଷୟିତ୍ରୀ ଅଛନ୍ତି। ସେମାନଙ୍କର ଏକମାତ୍ର ଝିଅ ଶରଣ୍ୟା +୨ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଛନ୍ତି।

ସାର୍‌ଙ୍କର ପରିବାରକୁ ଚାହିଁଲେ ଶିକ୍ଷାର ଗୋଟିଏ ମନ୍ଦିର ପରିମନେହୁଏ। ସାର୍ ନିଜେ ଥିଲେ ପ୍ରବୀଣ ଅଧ୍ୟାପକ ଓ ଅଧ୍ୟକ୍ଷ। ପୁଅ, ବୋହୂ ସମସ୍ତେ ଅଧ୍ୟାପନା ବୃତ୍ତି ଗ୍ରହଣ କରିନେଇଛନ୍ତି।

Letter from Son-in-Law Dr. Monu Pattanayak and
daughter Seema Pattanayak while on tour to Washington.

Washington D.C.
15.10.2010

Dearest Bapu,

We hope you are doing well. Being so far away from India, we miss you dearly. Despite your various health issues, your warmth and care are unmatchable. You are a great and tall pillar of strength which was helped us overcome all the obstacles since our return from London many years back. In this journey called 'life', your values and principles have inspired us hugely. Your charm and lovable nature is known to all and we feel proud to be your children. You are a scholar but never we seen any pride in you. That explains all. You have been a father not only to Seema but much more to me. You have never let me feel the absence of my parent in my life.

We pray to the unseen power above to keep you fit as your highly precious existence and undying support are of utmost importance in our lives.

Long and regards,
Monu and Seema

Letter from Grandson Dr. Deepam Jyoti Pattnaik and his wife
Dr. Mrs. Smita Pattanaik after Ganeswar Sir's return from Bangalore.

Bangalore
18.06.2012

Dear Ba,

We hope you and Ma are doing great. Your short and sweet stay with us this time was memorable for us. It meant a lot to both of us to take you to Puttaparthi and spend a wonderful time in Bangalore too. Despite your feeble health, the fact that you could accompany us everywhere with so much zeal and vigour taking o much care of Ma alongwith everything, was highly commendable. Your care, concern and effort for Ma's well-being has taught both of us a lot about life and companionship. It is true when they say, "actions speak more than words". I was telling Smita about the golden years of my childhood that I have spent with you and your family. I was pampered and loved dearly by all of you being your first grandchild. I know I am special to you.

May your blessings be alway with us and help us show the path of regheousness in life.

Lots of Love
Munu and Smita



ନାତୀ ଡ. ଦୀପମ୍‌ଜ୍ୟୋତି ପଟ୍ଟନାୟକ ଏବଂ ନାତୁଣୀ ବୋହୂ ଡ. ସ୍ମିତା ପଟ୍ଟନାୟକ

Letter from Grands-daughter Dr. Miss Sayamshuti Pattnaik after completion of her MBBS and internship at Bhubaneswar.

Rourkela
12.12.2014

Dear Ba,

I could not realise how did a year of my internship and 5 years of MBBS in KIMS pass away. It was like a flash of thunder and lighting. As we all know, time and tide waits for none. I cannot ever forget the care, love, concern and support of yours during my stay at your house which I have always considered my house since birth and behaved likewise. Your deligence is unbeatable and rerely anybody of your age would do what you do. I have always taken you and Ma for granted as a child does to her parents because you were always a second set of parents for me after Babai and Mamuni. Such was your love and care. My emotions are like a child and not like a grandchild. That shows the unique bond that you and Ma share with me and Munu, which is quite divine in itself and quite diffifult for other to understand.

I pray to God for your healthy existence as I need you for the upcoming milestones in my life, one of them being my marriage. So, brace your mind and body as life has a lot in stock for you.

Loads of love,
Mamani



ସାର୍, ମାଡାମ୍, ପୁଅ ବୋହୂ, ଝିଅ, ଜ୍ୱାଇଁ, ନାତି, ନାତୁଣୀ

ସାର୍ ଓ ମାତାମ୍‌ଙ୍କ ବିବାହ ସୁବର୍ଣ୍ଣ ଜୟନ୍ତୀ ଅବସରରେ ବଡ଼ପୁଅ
ଡକ୍ଟର ସୁମନ୍ ଦାସ୍‌ଙ୍କର ଆବେଗଭରା ଚିଠି

୮ ମାର୍ଚ୍ଚ ୨୦୧୧

ବାପୁ,

ଆଜି ତୁମର ଓ ମାବୋଉର ବିବାହର ପଞ୍ଚଦଶ ବାର୍ଷିକୀ ବା ସୁବର୍ଣ୍ଣ ଜୟନ୍ତୀ ଅବସରରେ ସର୍ବମଙ୍ଗଳ ଜଗନ୍ନାଥଙ୍କ ପଦାରବିନ୍ଦରେ ତୁମ ଦୁଇଜଣଙ୍କ ସୁଖ, ଶାନ୍ତି ତଥା ସାସ୍ଥ୍ୟ ପାଇଁ ମୋର ଆନ୍ତରିକ ପ୍ରାର୍ଥନା । ବହୁତ କମ୍ ଲୋକଙ୍କ ଭାଗ୍ୟରେ ବାପା ମା'ଙ୍କ ସୁବର୍ଣ୍ଣ ଜୟନ୍ତୀ ପାଳନ କରିବାର ସୁବର୍ଣ୍ଣ ସୁଯୋଗ ମିଳିଥାଏ । ଆମେ ସେ ଦୃଷ୍ଟିରୁ ସତରେ ଭାଗ୍ୟବାନ୍ । ସୁଦୀର୍ଘ ପଚାଶ ବର୍ଷର ଯାତ୍ରାରେ ତୁମେ ଅନେକ କଷ୍ଟ ସ୍ୱୀକାର କରିଛ । ଅନେକ ପରିଶ୍ରମ କରିଛ । ମାତ୍ର କେବେହେଲେ ଥକି ଯାଇନାହଁ । ପିଲାମାନଙ୍କ ସୁଖପାଇଁ ଅନେକ କିଛି ତ୍ୟାଗ କରିଛ । ସ୍ୱାର୍ଥତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ ସଦୃଶ ତୁମେ ତୁମ କର୍ତ୍ତବ୍ୟ କରିଚାଲିଛ । ଅଭାବ ଅନଟନ ସତ୍ତ୍ୱେ ଆମକୁ ସବୁ ପ୍ରକାରର ସୁବିଧା ପ୍ରଦାନ କରିଛ । ଆଜି ପର୍ଯ୍ୟନ୍ତ ମଧ୍ୟ ମୋତେ ଅନେକ ଲୋକ ଗଣେଶ୍ୱର ବାବୁଙ୍କ ବା ଗନାଭାଇଙ୍କ ବା ସାର୍‌ଙ୍କ ପୁଅ ଭାବରେ ଚିହ୍ନନ୍ତି । ଆଉ ମୋ ଆଗରେ ତୁମର ପ୍ରଶଂସାରେ ଶତମୁଖ ହୋଇଉଠନ୍ତି । ମୋ ପାଇଁ ଏହା ବାସ୍ତବରେ ଏକ ଗର୍ବର ବିଷୟ । ତୁମର ସୁକର୍ମ ଯୋଗୁଁ ମୋତେ ବି ଏକ ସ୍ୱତନ୍ତ୍ର ପରିଚୟ ମିଳିଛି । ବନ୍ଧୁ, ସହକର୍ମୀ ତଥା ପରିବାର ବର୍ଗଙ୍କ ପାଇଁ ତୁମେ ହେଉଛ ଏକ ଅତି ଆଦରଣୀୟ ବ୍ୟକ୍ତିତ୍ୱ । ଏଭଳି ଏକ ମହନୀୟ ଚରିତ୍ରକୁ ମୋର ପିତା ଭାବେ ପାଇଥିବାରୁ ମୁଁ ଈଶ୍ୱରଙ୍କ ନିକଟରେ କୃତଜ୍ଞ ।

ତୁମର ଅମାପ ସ୍ନେହ ଓ ଶ୍ରଦ୍ଧାର ଭାଗୀଦାର ମୋର ସ୍ତ୍ରୀ ଓ ପୁଅ ମଧ୍ୟ ହୋଇଛନ୍ତି । ସେମାନଙ୍କୁ ତୁମେ ଯେତେ ଭଲ ପାଅ ତାହା ବୋଧହୁଏ କଳନା କରି ହେବନାହିଁ । ଆମ ସମସ୍ତଙ୍କ ପ୍ରତି ତୁମର ସ୍ନେହ ଓ ମମତାର ହିସାବ କରିବା ଅସମ୍ଭବ । ପିଲାଟି ଦିନରୁ ଆଜି ପର୍ଯ୍ୟନ୍ତ ତୁମେ ମୋ ପାଖେପାଖେ ସାହାସ ଓ ଉତ୍ସାହର ଏକ ସ୍ତମ୍ଭ ସଦୃଶ ଠିଆ ହୋଇ ରହିଛ ।

ଆଜିର ଏହି ଦିବସ ଅବସରରେ ମୁଁ ଈଶ୍ୱରଙ୍କୁ ପ୍ରାର୍ଥନା କରେ କି ତୁମକୁ ଦୀର୍ଘାୟୁ କରନ୍ତୁ । ତୁମକୁ ମାନସିକ ଓ ଶାରୀରିକ ଶକ୍ତି ପ୍ରଦାନକରନ୍ତୁ । ତୁମର ସ୍ନେହ ଓ ଶ୍ରଦ୍ଧାର ପ୍ରତିଦାନ ତ ମୁଁ ଦେଇପାରିବିନି । ଈଶ୍ୱର କରନ୍ତୁ ତୁମ ପାଖେପାଖେ ମୁଁ ଶେଷ ପର୍ଯ୍ୟନ୍ତ ରହେ ଏବଂ ତୁମର ସେବା କରୁଥାଏ ।

ସୁମନ୍

ସାର୍‌ଙ୍କର ୮୦ବର୍ଷ ପୂର୍ତ୍ତି ଜନ୍ମଦିନରେ ବଡବୋହୂ ସୁଜାତା (ରୀନା)
ସାର୍‌ଙ୍କର ଅନନ୍ୟ ସ୍ନେହଶ୍ରଦ୍ଧା ପ୍ରତି କୃତଜ୍ଞତା ଜଣାଇ ଲେଖିଥିବା ଚିଠି।

୩୦.୦୭.୨୦୧୩

ମାନନୀୟ ବାପୁ,

ଆପଣଙ୍କ ୮୦ତମ ଜନ୍ମଦିନରେ ଅନେକ ଅନେକ ଶୁଭେଚ୍ଛା ଜଣାଉଛି ଏବଂ ଭଗବାନ୍‌ଙ୍କ ପାଦପଦ୍ମରେ ଆପଣଙ୍କ ସୁସ୍ଥ ଓ ନିରାମୟ ଜୀବନ କାମନା କରୁଛି। ଏ ଘରେ ବୋହୂ ହୋଇ ପାଦ ଦେଲା ଦିନଠାରୁ ମୁଁ ଆପଣଙ୍କ ସ୍ନେହ ଓ ଶ୍ରଦ୍ଧାରେ ବାନ୍ଧି ହୋଇପଡିଛି। ଆପଣ ମୋତେ କେବେ ହେଲେ ବୋହୂ ଭଳି ନଦେଖି ସର୍ବଦା ଝିଅ ଭଳି ଦେଖିଛନ୍ତି। ନହେଲେ ବାହାଘରର ଦୁଇଦିନ ପରେ ମୋତେ ସକାଳୁ ନଉଠାଇ ନିଜେ ରୋଷେଇଘରେ ରାନ୍ଧିନଥାନ୍ତେ। ସେହିଦିନଠାରୁ ମୁଁ ଆପଣଙ୍କ ଉଦାର ମନୋଭାବ ତଥା ପ୍ରଗାଢ ସ୍ନେହର ପରିଚୟ ପାଇଛି। ଦିନେ ହେଲେ ଆପଣ ମୋ ଉପରେ ବିରକ୍ତ ହୋଇ ନାହାନ୍ତି କିମ୍ବା ଆକ୍ରୋଶମୂଳକ ଭାବେ କିଛି କହିନାହାଁନ୍ତି। ଆପଣଙ୍କ ଯୋଗୁଁ ମୁଁ ମୋ ବାପଘର ଓ ଶ୍ୱଶୁରଘର ମଧ୍ୟରେ କୌଣସି ପାର୍ଥକ୍ୟ ଦେଖିନାହିଁ। ଆପଣଙ୍କ ଆଶୀର୍ବାଦ, ସ୍ନେହ ଓ ଶ୍ରଦ୍ଧା ମୋ ପାଇଁ ଅମୂଲ୍ୟ ସମ୍ପଦ। ଖୁବ୍ ଜଲ୍‌ଦି ମୁଁ ମୋ ବାପାଙ୍କୁ ହରାଇଥିଲି। କିନ୍ତୁ ଆପଣଙ୍କ ଭିତରେ ମୁଁ ମୋ ବାପାଙ୍କୁ ଦେଖେ। ଆପଣ ମୋ ପାଇଁ ସାହସ ଓ ଧୈର୍ଯ୍ୟର ଉତ୍ସ। ମୋ ପାଇଁ, ସୁମନଙ୍କ ପାଇଁ ଓ ରିସୁପାଇଁ ଆପଣଙ୍କ ସ୍ନେହ ଓ ବ୍ୟଗ୍ରତା ଦେଖି ମୁଁ ଭାବେ ମୁଁ ପ୍ରକୃତରେ କୋଉ ଜନ୍ମରେ କ'ଣ ପୁଣ୍ୟ କରିଥିଲି ତେଣୁ ଆପଣଙ୍କୁ ପାଇଛି। କେବଳ ଆପଣଙ୍କ ପରିବାରର ଲୋକ ନୁହଁନ୍ତି ମୋ ପରିବାରର ଲୋକମାନେ ମଧ୍ୟ ଆପଣଙ୍କୁ ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ କରନ୍ତି।

ବାପୁ, ଆଜି ଆପଣଙ୍କ ୮୦ତମ ସନକ୍ଷତ୍ର ଅବସରରେ ପୁଣ୍ୟତିଥିରେ ମୁଁ ଆପଣଙ୍କ ପ୍ରତି ମୋର ଭକ୍ତି ନୈବେଦ୍ୟ ଅର୍ପଣ କରୁଛି ଓ ଆପଣ ଶତାୟୁ ହୁଅନ୍ତୁ ଏହା ଜଗତ୍‌ଜନନୀ ମା ଦୁର୍ଗାଙ୍କ ନିକଟରେ ଆନ୍ତରିକ ପ୍ରାର୍ଥନା କରୁଛି।

ଇତି ଆପଣଙ୍କ ସ୍ନେହାଧୀନା
ରୀନା

Letter from Grand-son Sukreet Das while
on a training in a farm at Delhi

New Delhi
12.12.2014

Respected Ba,

After reaching Delhi on 6th December, I have been thinking of writing to you. But as you know, it took some time to get used in this new surrounding. I have settled down well and like the workplace which through is a huge organisation.

It is indeed too cold here. Foggy mornings and chilled evenings add to the problem. Anyway, I am taking care of myself.

It is for the first time I am completely away from my family members and do miss you all a lot. Honestly speaking I do miss you hell of a lot. Since my childhood, you have showere upon me so much love and affection that I shall remain indebted to you through out my life. Bapa was telling me how anxious you are about my well being. It seem you are enquiring about me everyday. Really Ba, I aam fortunate enough and blessed to have a grandfather like you. I am too overwhelmed by your love, care and affection and concern for me. I do fee a lot for you. Your health is a cause of concern for me. Please do take care of your health. You are the ource of strength, stability and sustenance of our family. Yours genuine feelings for all is what makes you a person par-excellence I look up to you for inspiration. I wish, I had all the divine qualities that you have, persons like you are rare in the world. Yours conlinned healthy existence matters a lot to me, in particulars.

Convey my regards to Mama. I ipray Lord Jagannath to grant you along and peaceful life. I look forward to go back soon and bace to the warmth of yours loving embrace.

With love and regards
Risu

Letter from Grand-daughter Saranya Das (Rony)conveying
her deep love and regards to Sir on his 81th birthday.

Dear Baa,

Here's to your 81st birthday and to all the merry years I have had with you. Now, as you turn 81, I want to remind you of your worth that you often tend to forget. Let me tell you that you are the most sublime person I have ever come across, the one with 'aflaxer heart and a saintly soul'. You are one of those rare being who are intellectual as well as sensitive. You are the most endearing grandfather one would ever ask for.

Lots of Love
Rony

Letter from Second Son Prof. Susan Das and his wife
Mrs. Dipti Das while on Darsan visit to Prasanti

Dear Bapu,

We had a nice trip and managed to reach Prashanti in time. From Prashanti Railway station we hired a taxi and finally reached Ashram around 6.30 AM in the morning. Outside the Ashram lots of hotel were available and there was absolutely no trobule. We proceeded for Samadhi Darshan in the morning itself. Although there was no physical presence of Swami, the vibration inside the ashram could not make us feel so. The spiritual atmosphere along with deep consuousness could make us stand on the platform of heavenly joy. It was a sign of relief and for below we visualized the materia life. The internationalization of divinely power did promote us to an unbelievabe height. Although there was a spiritua sensution.

We had a deep meditation infront of Swami' samadhi. We prayed for you and Mabou a lot. We were extremey worried for your continuous illness and left the matter to Swami. We are sure He will take care of a life who has taken care of somany lives in his due period. It is beyond our control to evaluate a person like you who wrote all the pages of life interms of love and sacrifice. A valuebased life which could uphole the height of honesty and legacy of discipline. The eyefull with flavour of emotions dazzle move than a star. Your supremacy over the region of divinely life speaks volumes of beauty and you look gloriously glorious deep inside. The complete sense of a writer results a life based on emotions alone. A full breadth of teaching could uphold the honesty althrough. Last, we pray creator to create the unending path for you.

With Love & regards
Luna & Suman

## ୵ ଅଧ୍ୟାପିକା ନିର୍ମଳା ପରିଡ଼ା

ଗଣେଶ୍ୱର ସାର୍‌ଙ୍କର ବଡ ଭଉଣୀ ୵ ନିର୍ମଳା ପରିଡ଼ା ଭୁବନେଶ୍ୱର ବି.ଜେ.ବି. କଲେଜ୍‌ରେ ଅଧ୍ୟାପିକା ଥାଇ ଚାକିରୀରୁ ଅବସର ଗ୍ରହଣ କରିଥିଲେ । ତାଙ୍କର ସ୍ୱାମୀ ୵ ଗୁରୁଚରଣ ପରିଡ଼ାଙ୍କର ଭୁବନେଶ୍ୱର ଏୟାରପୋର୍ଟ ଛକ ନିକଟବର୍ତ୍ତୀ ବାସଗୃହ ଓ ଜମି ଉପରେ ଗଢି ଉଠିଥିବା ଆପାର୍ଟମେଣ୍ଟ ମାଡାମ୍ ପରିଡ଼ାଙ୍କ ନାମାନୁସାରେ 'ନିର୍ମଳା ପ୍ଲାଜା' ଦିଆଯାଇଥିଲା । ତାଙ୍କର ୨ୟ ବାର୍ଷିକ ଶ୍ରାଦ୍ଧ ଅବସରରେ ଗଣେଶ୍ୱର ସାର୍ ତାଙ୍କ ନିକଟକୁ ଲେଖିଥିବା ଚିଠିଟି ମାଡାମ୍‌ଙ୍କ ଫଟ ପାଖରେ ରଖିଥିଲେ । ଉକ୍ତ ଚିଠିର ନକଲଟିଏ ସାର୍‌ଙ୍କ ପାଖରୁ ଆଣି ଏ ବହିଟିରେ ପ୍ରକାଶ କରିବାର ଲୋଭ ସମ୍ଭାଳିପାରୁନାହିଁ ।

### ମୋ ଅପା ପାଖକୁ ଚିଠିଟିଏ

ଅପା ଲୋ,

ମୁଁ ଯେତେବେଳେ ସଂସାର ଛାଡି ଚାଲିଯିବା କଥା କହୁଥିଲି ତୁ ବିରକ୍ତ ହୋଇ କହୁଥିଲୁ, ମୁଁ ଥାଉ ଥାଉ ତମେ କେହି ଆଗ ଯାଇପାରିବ ନି । ମୁଁ ଆଗ ଯିବି । ସତକୁ ସତ ଆଗ ହିଁ ଗଲୁ ଯଦିଓ ବହୁ ଆଗରୁ ଆମେ ଆମର ଗେହ୍ଲା ସାନଭାଇଟିକୁ ଅକସ୍ମାତ୍ ହରାଇଥିଲୁ । ତୁ ଯିବାର ଦୁଇବର୍ଷ ବିତିଗଲାଣି । ମତେ ନେବା କଥା କ'ଣ ଟିକେ ବି ଭାବୁନୁ ? ତୁ ଯେତେବେଳେ ମାଟ୍ରିକ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଝିଅମାନଙ୍କ ଭିତରେ ପ୍ରଥମ ହୋଇ ସରକାରୀ ବୃତ୍ତି ପାଇଲୁ, ତୁ ତା'ପରେ ଆମ ପଢା ପାଇଁ କେତେ ଯତ୍ନଶୀଳ ହୋଇଥିଲୁ । ତୋର ଲକ୍ଷ୍ୟ ଥିଲା ମୁଁ ବି ତୋ ପରି ବୃତ୍ତି ପାଏ । ତାହା ହିଁ ହେଲା । ଆଇ.ଏ. ପରୀକ୍ଷାରେ ଦ୍ୱିତୀୟ ମେଧାବୀ ବୃତ୍ତି ପାଇଲି । ବି.ଏ. ପରେ ପରେ ମଧ୍ୟ ପୋଷ୍ଟ ଗ୍ରାଜୁଏଟ୍ ବୃତ୍ତି ପାଇ ବନାରସ୍‌ରେ ପଢିଲି । ତା ପରେ ଯେତେବେଳେ ଫୋର୍ଡ ଫାଉଣ୍ଡେସନ୍ ଏବଂ ସରକାରୀ ଗବେଷଣା ବୃତ୍ତି ଉଭୟ ଲାଭ କଲି ତୁ କି ଖୁସି ହୋଇଥିଲୁ । ଅପା, ତୋ ମାଟ୍ରିକ୍ ପରୀକ୍ଷା ପରେ ବାପା ତତେ କହିଥିଲେ ଆଇ.ଏ. ଶ୍ରେଣୀରେ ନାମ ଲେଖାଇବା ପର୍ଯ୍ୟନ୍ତ ଯେଉଁ ଖାଲି ସମୟ ସେଥିରେ ତୁ ୧୦୦ ଖଣ୍ଡ ବାହାର ବହି (outbook) ପଢିବୁ । ତୁ ବାପାଙ୍କ କଥା ମାନି ବହି କିଣୁଥାଉ, ପଢୁଥାଉ । ବିଭିନ୍ନ ଲାଇବ୍ରେରୀରୁ ମଧ୍ୟ ବହି ଆଣୁଥାଉ । ଆମକୁ ଆଶ୍ଚର୍ଯ୍ୟ ଲାଗିଲା ତୁ ଯେତେବେଳେ ସତକୁ ସତ ୧୦୦ ଖଣ୍ଡ ବହି ପଢି ଶେଷ କଲୁ । ଆଜିପର୍ଯ୍ୟନ୍ତ ମନେ ଅଛି Thelma, Wreck, with no regrets, ଏମିତି ଭାବରେ ତୁ କେତେ ବହି ପଢି ଚାଲିଥାଉ, ସେ ସବୁଥିଲା ଆମ ପାଇଁ ଆଦର୍ଶ ।

ସବୁ ମନେ ପଡିଯାଏ ଲୋ ଅପା, କିନ୍ତୁ ଦୁଃଖ ମୋର, ତୁ ଦୁଇବର୍ଷ ହୋଇଗଲା ଗଲୁଣି । ମତେ ନେବା କଥା ଟିକେ ବି ଭାବୁନୁ । ତୁ ଆଗ ମୃତ୍ୟୁ ପାଇଲୁ ଯେଉଁ ମୃତ୍ୟୁ ପାଇଁ ମୁଁ ବିକଳ ହୋଇ ଅନାଇ ରହିଛି ।

ଅପା, ଆଜି ତୋ ମୃତ୍ୟୁର ଦୁଇ ବରଷ ପୂରିଲା । ମୋର ମନେ ପଡୁଛି ତୁ କେମିତି ଶେଷ ପର୍ଯ୍ୟନ୍ତ ସବୁବେଳେ ପଢିବାକୁ ଇଚ୍ଛା କରୁଥିଲୁ । 'ଗୀତାଞ୍ଜଳି' ଓ 'ସୋନାରତରୀ' ତ ତୋ ମୁହଁ ଆଗରେ ଥିଲା । ମୁଁ ଭଲ ବଙ୍ଗଳା ପଢିପାରୁନଥିଲି ବୋଲି ଗୀତାଞ୍ଜଳିର ବଙ୍ଗଳା version କୁ ତୁ ଓଡ଼ିଆ script ରେ ମୋ ପାଇଁ ଲେଖିଦେଇଥିଲୁ । ହରପ୍ରସାଦ ଦାସ କରିଥିବା 'ଗୀତାଞ୍ଜଳି'ର ଓଡ଼ିଆ ଅନୁବାଦ ତୋ ପାଖକୁ ପଠାଇବା ଲାଗି ତୁ କେତେ ମୋ ପାଖକୁ ଫୋନ୍ କରୁଥିଲୁ । ସେ ଅନୁବାଦଟି ମୁଁ ବରାବର ପଢୁଛି । ତୁ ତ ମୃତ୍ୟୁକୁ ପାଇ ଆନନ୍ଦରେ ଚାଲିଗଲୁ । ସେଇ ଗୀତାଞ୍ଜଳି ଭାଷାରେ ମୁଁ ଆଜି କହୁଛି -

ଅପାଲୋ, ତୋ ପାଇଁ

"ଗୁନ୍ଥିଦେବି ମୁଁ
ଦୁଃଖର ଲୁହେ
ମୁକୁତାର ମାଳ
ଗଳାରେ ତୋ ଦେବି ନେଇ" ।

ସତରେ ଲୋ ଅପା, ଯେଉଁ ଫୁଲମାଳଟି ତୋ ଫଟରେ ପିନ୍ଧାଇଛି ସେଇଟି ମୋ ଦୁଃଖର ଲୁହରେ ଗୁନ୍ଥା ହୋଇଛି, ତୁ ଏ ମାଳାଟି ନେ ଏବଂ ମତେ ମୃତ୍ୟୁ ଦେ । ପୁଣି କବିଙ୍କ ଭାଷାରେ କହୁଛି,

"ଲଜ୍ଜା ତୋହର ଦେବୁ ଯଦି ଦେ',
ନେବୁ ଯଦି ନେ',
କିନ୍ତୁ ଏ ମୋର ଦୁଃଖଟି ମୋର କେବଳ ତୋହର,
ଦେବି ଯେତେବେଳେ ଗଳାରେ ତୋହର,
ନେବୁ ତାକୁ କିଣି"।

ଅପାଲୋ, ଶେଷ ଜୀବନରେ ତୁ ଯେମିତି ଘାଣ୍ଟି ହେଲୁ, କଷ୍ଟ ପାଇଲୁ, ମୁଁ ବି ସେମିତି ମୋ ପିଲାଙ୍କୁ ଘାଣ୍ଟୁଛି, ନିଜେ କଷ୍ଟ ପାଉଛି, ଅପା, ସେଇ ଦିନକୁ ଅପେକ୍ଷା କରିଛି ଯେଉଁଦିନ ମୁଁ ଆନନ୍ଦରେ କହିବି,

"ହେଲା ମୋ ଛୁଟି ବିଦାୟ ଦିଅ ଭାଇ
ପ୍ରଣାମ ନିଅ ସଭିଏଁ ମୋର ଯାଏଁ ମେଲାଣି ନେଇ
ହେଉଟି ନିଅ, ଫେରାଇ ଦେଲି ଘରର ଚାବି
ଘର ଉପରେ ନାହିଁ ମୋ ଦାବି ଚାହେଁ କେବଳ ଆଶିଷ ବାଣୀ"।

ତୋର ରାନୀ



## ସାର୍‌ଙ୍କ ବଡ଼ଭାଇଙ୍କୁ ମିଳିଥିବା ସମ୍ମାନ

ଗଣେଶ୍ୱର ସାର୍‌ଙ୍କର ବଡ଼ଭାଇ ଶ୍ରୀ ବିଶେଶ୍ୱର ଦାସ ଜଣେ ଉଚ୍ଚକୋଟିର ପରିସଂଖ୍ୟାନବିତ୍। ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ବି.ଏସ୍.ସି. ଓ ଏମ୍.ଏସ୍.ସୋ. ଡିଗ୍ରୀ ଲାଭ କରିବା ପରେ ବିଦେଶରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ ଏବଂ ଗ୍ଲାସ୍ଗୋ ବିଶ୍ୱବିଦ୍ୟାଳୟରେ ଉଚ୍ଚତର ବିଦ୍ୟା ଅଧ୍ୟୟନ କରି ଡିଗ୍ରୀ ଲାଭ କରିଥିଲେ। ଓଡ଼ିଶାର ଅର୍ଥନୀତି ଓ ପରିସଂଖ୍ୟାନ ନିର୍ଦ୍ଦେଶାଳୟରେ ବହୁବର୍ଷ ଧରି ନିର୍ଦ୍ଦେଶକ (ଡାଇରେକ୍ଟର) ଥିଲେ। ଉକ୍ତ ନିର୍ଦ୍ଦେଶାଳୟ ଶ୍ରୀଯୁକ୍ତ ଦାସ୍‌ଙ୍କୁ "ଜୀବନ ବ୍ୟାପି ସାଧନା ସମ୍ମାନ"ରେ ସମ୍ମାନୀତ କରିଥିଲେ। ଉକ୍ତ ସମ୍ମାନର ମାନପତ୍ର ଏଥିସହ ସଂଲଗ୍ନ କରାଯାଉଅଛି।

**ଅର୍ଥନୀତି ଓ ପରିସଂଖ୍ୟାନ ନିର୍ଦ୍ଦେଶାଳୟ, ଓଡ଼ିଶା, ଭୁବନେଶ୍ୱର ।**



**ଶ୍ରୀଯୁକ୍ତ ବିଶ୍ୱେଶ୍ୱର ଦାସ,**
**ଅବସରପ୍ରାପ୍ତ ନିର୍ଦ୍ଦେଶକ,**
**ଅର୍ଥନୀତି ଓ ପରିସଂଖ୍ୟାନ ନିର୍ଦ୍ଦେଶାଳୟ, ଓଡ଼ିଶା ।**

"ଜୀବନବ୍ୟାପି ସାଧନା ସମ୍ମାନ"

[illegible]

୧୯.୦୨.୨୦୧୪
ଭୁବନେଶ୍ୱର

[illegible]
[illegible]



ସମ୍ବାଦ

୨୭ ଜୁଲାଇ, ୨୦୦୭

# ମନେପଡ଼େ

## ଜୀବନ ସ୍ମୃତି

**ଲେଖକ : ଗଣେଶ୍ୱର ଦାସ**

ପ୍ରକାଶକ: ସୁବର୍ଣ୍ଣରେଖା, ଲକ୍ଷ୍ମୀସାଗର ଛକ, ଭୁବନେଶ୍ୱର

ଅବସର ପ୍ରାପ୍ତ ଅଧ୍ୟକ୍ଷ ଏବଂ ଦର୍ଶନ ବିଭାଗର ଖ୍ୟାତନାମା ଅଧାପକ ଶ୍ରୀ ଗଣେଶ୍ୱର ଦାସଙ୍କ ଜୀବନ ସ୍ମୃତି 'ମନେପଡ଼େ'। ବହିଟିକୁ ଲେଖକ ଅନ୍ତରଙ୍ଗ ଶୈଳୀରେ ଲେଖିଛନ୍ତି, ଯାହା ପଢିଲେ ବହିର ବର୍ଣ୍ଣିତ ପୃଷ୍ଠାଗୁଡ଼ିକ ଫାଙ୍କରୁ ଜଣେ ବିନୟୀ, ଦାୟିତ୍ୱସଂପନ୍ନ ଏବଂ ଛାତ୍ରବତ୍ସଳ ଅଧ୍ୟାପକଙ୍କର ମୂର୍ତ୍ତି ଭାସିଉଠେ। ବହିର ଅନେକ ଭାଗ ନିଜ ପରିବାର, ବ୍ୟକ୍ତିଗତ ପୃଥିବୀ ଏବଂ ସଂପର୍କମାନଙ୍କ ବିଷୟରେ ଲେଖାଯାଇଥିଲେ ମଧ୍ୟ ସେ ସମୟର ଓଡ଼ିଶା ଓ ଶିକ୍ଷାବିଭାଗ ସଂପର୍କରେ ଏକ ସ୍ଥୂଳ ଚିତ୍ର ପାଇହୁଏ। ଜାଣିହୁଏ ଯେ, ମୂଲ୍ୟବୋଧର ପୃଥିବୀଠାରୁ କେତେ ଦୂରକୁ ଆସିଗଲାଣି ସମାଜ। ସମୟ ଥିଲା, ଯେତେବେଳେ ଶିକ୍ଷକମାନେ ମେଧାବୀ ଛାତ୍ରମାନଙ୍କ ଘରକୁ ଯାଇ ସେମାନଙ୍କୁ ବିନା ମୂଲ୍ୟରେ ପାଠ ପଢ଼ାଉଥିଲେ, ମାତ୍ର ଆଜି ତାହା ପରୀକାହାଣୀ।

ଡକ୍ଟର ଦାସ ଲେଖିଛନ୍ତି ଯେ, ୧୯୬୭ ମସିହାରେ କେତେକ ପଥଭ୍ରଷ୍ଟ ଛାତ୍ର, କପି କରିବାରେ ବିଫଳ ହୋଇଥିବା ଯୋଗୁଁ ତାଙ୍କୁ ତାଙ୍କ ସରକାରୀ ବାସଭବନ ଭିତରେ ପୋଡ଼ି ମାରିଦେବାକୁ ଚାହିଁଥିଲେ। ସେହି ଦୁର୍ଘଟଣାରୁ ବଂଚିଗଲା ପରେ ଡ.ଦାସ ଅନୁଭବ କରିଥିଲେ ସେ ପୁନର୍ଜୀବନ ପାଇଛନ୍ତି। ବସ୍ତୁତଃ ଜୀବନର ଏହି ନାଟକୀୟତା ତାଙ୍କୁ ବହିଖଣ୍ଡିକ ଲେଖିବା ପାଇଁ ଅନୁପ୍ରେରିତ କରିଅଛି। ବହିଟିର ଶେଷ ପରିଚ୍ଛେଦଟି ସେ ସମୟର କଟକ ସହରର ଏକ ସ୍ଥିରଚିତ୍ର, ଅନେକ ଚରିତ୍ର ଓ ଘଟଣାକୁ ତାହା ଧରି ରଖିଛି। ଓଡ଼ିଶାର ଅତୀତ ଇତିହାସକୁ ଜାଣିବା ପାଇଁ ଆଗ୍ରହୀ ପାଠକଙ୍କ ପାଇଁ ଡ.ଦାସଙ୍କ 'ମନେପଡ଼େ' ଏକ ଖୋଲା ଝରକା।

♦ ♦ ♦

ସମାଜ

ପୃଷ୍ଠା-୫, ୧୧ ଡିସେମ୍ବର ୨୦୦୫

# ମନେପଡ଼େ

ଲେଖକ : ଗଣେଶ୍ୱର ଦାସ, ପ୍ରକାଶକ:
ସୁବର୍ଣ୍ଣରେଖା, ଲକ୍ଷ୍ମୀସାଗର ଛକ, ଭୁବନେଶ୍ୱର-୬, ମୂଲ୍ୟ-୯୦ଟଙ୍କା

ଏହି ପୁସ୍ତକଟି ବିଶିଷ୍ଟ ଶିକ୍ଷାବିତ୍, ଦାର୍ଶନିକ ତଥା ପୂର୍ବତନ ଅଧକ୍ଷ ଗଣେଶ୍ୱର ଦାସଙ୍କ ଆତ୍ମଜୀବନୀ। ଶିକ୍ଷା ଜଗତର ବହୁ ରୋମାଞ୍ଚକର ତଥା କୌତୂହଳୋଦ୍ଦୀପକ ଘଟଣାବଳୀ ଏଥିରେ ସ୍ଥାନିତ ହୋଇଛି। ପୁସ୍ତକର ଭାଷା ସରଳ ଓ ଉପସ୍ଥାପନା ଶୈଳୀ ଉନ୍ନତମାନର ହୋଇଥିବାରୁ ପାଠକମାନଙ୍କ ଦ୍ୱାରା ଏହା ଗ୍ରହଣୀୟ ହୋଇପାରିବ ବୋଲି ଆଶା କରାଯାଉଛି।

# ସାହିତ୍ୟ



## ବହି




### ନୂତନ ଆହ୍ୱାନ

**ଜଗତୀକରଣ ଓ ଆଧୁନିକ ଉଚ୍ଚଶିକ୍ଷା**
**ଲେଖକ: ଗଣେଶ୍ୱର ଦାସ**
**ପ୍ରକାଶକ: ମ୍ୟାଗ୍ନମ୍ ପ୍ରିଣ୍ଟର୍ସ, ୨୦, ଜନପଥ, ବାପୁଜୀନଗର, ଭୁବନେଶ୍ୱର**
**ମୂଲ୍ୟ: ୬୦ ଟଙ୍କା, ପୃଷ୍ଠା: ୧୧୬**

ଏହି ପୁସ୍ତକଟିର ଲେଖକ ଗଣେଶ୍ୱର ଦାସ ଦୀର୍ଘ ସମୟଧରି ଗୁରୁତ୍ୱପୂର୍ଣ୍ଣ ପଦବିରେ ଉଚ୍ଚଶିକ୍ଷା ସହିତ ସଂପୃକ୍ତ । ନିଜ ଅଭିଜ୍ଞତା ଓ ବିଚାରକୁ ସେ ପ୍ରବନ୍ଧ ଜରିଆରେ ପାଠକଙ୍କ ନିକଟରେ ପହଞ୍ଚାଇବାକୁ ଚେଷ୍ଟା କରିଛନ୍ତି । ବହିଟିରେ ମୋଟ୍ ୧୩ଟି ମୂଲ୍ୟବାନ ପ୍ରବନ୍ଧ ସ୍ଥାନପାଇଛି । ପ୍ରବନ୍ଧର ଶୀର୍ଷକରୁ ଏଥିରେ ଥିବା ପ୍ରସଙ୍ଗଗୁଡ଼ିକ ସଂପର୍କରେ ଧାରଣା କରିହେବ, ଯଥା: ଜଗତୀକରଣ ପରିପ୍ରେକ୍ଷୀରେ ଆମେ ଓ ଆମ ଦେଶ, ଭାରତୀୟ ଉଚ୍ଚଶିକ୍ଷାର ଦେଢ଼ଶହ ବର୍ଷ ପୂର୍ତ୍ତି, ଏକବିଂଶ ଶତାବ୍ଦୀର ବିଶ୍ୱବିଦ୍ୟାଳୟ, ମହାବିଦ୍ୟାଳୟମାନଙ୍କର ଶାସନଗତ ସମସ୍ୟା- ଏକ ସମୀକ୍ଷା, ଆଲୋଚନା ପରିସର ଭିତରେ ସ୍ୱୟଂଚାଳିତ କଲେଜ ଇତ୍ୟାଦି । ପୁସ୍ତକଟିରେ ପ୍ରଫେସର ଗୌରକିଶୋର ଦାସଙ୍କ ଦ୍ୱାରା ଲିଖିତ ଏକ ମୁଖବନ୍ଧ ମଧ୍ୟ ସଂଯୋଜିତ ହୋଇଛି । ଶିକ୍ଷା, ମୁଖ୍ୟତଃ ଉଚ୍ଚଶିକ୍ଷାର ବିଭିନ୍ନ ଦିଗ ଉପରେ ରୁଚି ରଖୁଥିବା ପାଠକଙ୍କ ପାଇଁ ବହିଟି ସଂଗ୍ରହଣୀୟ ।

# ଦୁଇଜଣ ବିଶିଷ୍ଟ ପୂର୍ବତନ କୁଳପତିଙ୍କ ଦ୍ୱାରା 'ମନେପଡ଼େ' ଆତ୍ମଜୀବନୀର ସମୀକ୍ଷା

**ଡଃ ଗୌରାଙ୍ଗ ଚରଣ ନାୟକ**

ମୋର ନମସ୍ୟ ବନ୍ଧୁ ଅଧ୍ୟାପକ ଗଣେଶ୍ୱର ଦାସଙ୍କର ୨୦୦୫ ମସିହାରେ ପ୍ରକାଶିତ ଆତ୍ମଜୀବନୀ 'ମନେପଡ଼େ' ଓ ତା' ସଙ୍ଗେସଙ୍ଗେ 'ବୈକୁଣ୍ଠ ସମାନ ଆହା ଅଟେ ସେହିଘର' ନାମରେ ନାମିତ ଏକ କମନୀୟ କବିତା ଗୁଚ୍ଛ, ଯେଉଁଠି ତାଙ୍କ ପରିବାରର ଏକ ନିଖୁଣ ଛବି ଦେଖିବାକୁ ପାଇବେ, ଏ ଉଭୟକୁ ପାଠକରିବାର ସୁଯୋଗ ଏବେ ମିଳିଥିବାରୁ ମୁଁ ଅନୁଗୃହୀତ ବୋଧ କରୁଛି।

କ'ଣ ଲେଖିବି, କି ଅଭିମତ ବା ମୁଁ ଦେବାଲାଗି ସକ୍ଷମ! ତେବେ ସର୍ବପ୍ରଥମେ ନିଜ ସଂପର୍କରେ କିଛିଟା ଅଭିମତ ଦେବାକୁ ଯାଇ ମୁଁ କହିବି, ମୋର ଅଗ୍ରଜନ୍ମା ଏହି ମହାନ୍ ବ୍ୟକ୍ତିତ୍ୱଟିକୁ ଅନେକ ସମୟରେ ନିକଟରେ ପାଇ ମଧ୍ୟ ମୁଁ ତାଙ୍କ ଯୋଗ୍ୟତା ତଥା ମହନୀୟତାର ଯଥାଯୋଗ୍ୟ ଆକଳନ କେବେହେଲେ କରିପାରିନାହିଁ, ସେଥିପାଇଁ ମୁଁ ଦୁଃଖିତ ତଥା ଲଜ୍ଜିତ ମଧ୍ୟ। ଏବେ ତାଙ୍କର ଆତ୍ମଜୀବନୀ ପାଠକରି ବାସ୍ତବରେ ମୋର ଆଖି ଖୋଲିଯାଇଛି, ଏତିକି ସ୍ୱୀକାର କରିବାରେ ମୋର ତିଳେ ମାତ୍ର ସଙ୍କୋଚ ନାହିଁ। ଏ ପରିଣତ ବୟସରେ ମୁଁ ଅନୁଭବ କରୁଛି ଯେ ଏହା ଦ୍ୱାରା ମୋର କିଛିଟା ଆତ୍ମଶୁଦ୍ଧି ହୋଇପାରିଛି, ତଥାକଥିତ ବିନମ୍ରତାର ଅହମିକା ରୂପୀ ଦୁର୍ଭେଦ୍ୟ ଦୁର୍ଗଟି ମୋର ଅନ୍ତତଃ ବର୍ତ୍ତମାନ ପାଇଁ ଭୁଷୁଡ଼ି ପଡ଼ିଛି, ଭାଙ୍ଗି ଚୁର୍‌ମାର୍ ହୋଇଯାଇଛି - ଏହା କ'ଣ ମୋ ପାଇଁ କମ୍ ଲାଭ। ରଘୁବଂଶରେ ଅନ୍ୟ ଏକ ପ୍ରସଙ୍ଗରେ ଭଗବାନ୍ ଶ୍ରୀରାମଚନ୍ଦ୍ର କହିଲା ଭଳି "ସମସ୍ତୁତେ ମେ ଲଘିମାନ ମାତ୍ମା" ମୋର ଅନ୍ତରାତ୍ମା ଏବେ ଆତ୍ମକୈନ୍ଦ୍ରିକତାର ବୋଝରୁ ସାମୟିକ ମୁକ୍ତିପାଇ ଟିକେ ହାଲୁକା ବୋଧ କରୁଛି।

ସେ କେବେ ଆତ୍ମ ପ୍ରଚାରରେ ମନ ବଳାଇ ନାହାନ୍ତି, ଆତ୍ମ ସରିତାର ନାମଗନ୍ଧ ବା ସେଠି ପଶିବ କିପରି! ଏତେ ବିରାଟ ବ୍ୟକ୍ତିତ୍ୱ - ମାତ୍ର ତା'ସଙ୍ଗେସଙ୍ଗେ ବିନୟ ଓ ଶିଷ୍ଟତାର ପ୍ରତିମୂର୍ତ୍ତି ଟିଏ। ମୁଁ କିପରି ବା ତାଙ୍କୁ ଠିକ୍ ଠିକ୍ ଜାଣିପାରିଥାନ୍ତି - କୁହନ୍ତୁ ତ! ଏଟା ମୋର ଭୁଲ୍ ଅବଶ୍ୟ, କିନ୍ତୁ ମୋ ଭଳି ସାଧାରଣ ଲୋକଟିଏ ଏଭଳି ଭୁଲ୍ ନକରିଥାନ୍ତା ବା କିପରି! ତେବେ ସର୍ବାଗ୍ରେ ସେଇ ଭୁଲ୍ ଲାଗି ମୁଁ ତାଙ୍କ ନିକଟରେ କ୍ଷମା ମାଗିନେଉଛି। ରାମଚରିତ ମାନସର ସେଇ ସୁପ୍ରସିଦ୍ଧ ଚୌପାଈରୁ ଦି'ପଦ ମନେ ପଡ଼ିଯାଉଛି - "ଜାନେ ବିନୁ ନ ହୋଇ ପରତୀତି। ବିନୁ ପରତୀତି ହୋଇ ନହିଁ ପ୍ରୀତି"। କାହାରିକୁ ଭଲ କରି ନଜାଣିଲା ଯାଏଁ ତାଙ୍କ ଠାରେ ବାସ୍ତବ ପ୍ରୀତି ଜନ୍ମେନାହିଁ। କାରଣ ପ୍ରତୀତି ନହେବା ଯାଏଁ ପ୍ରୀତି ବା ହେବ କେମିତି। କେତେ ଯଥାର୍ଥ ସତେ! ମନେ ପଡ଼େ ଏଭଳି ଏକ ବିରଳ ଆତ୍ମଜୀବନୀ ଯାହାକୁ ଥରେ ଆରମ୍ଭ କଲେ ଶେଷନକରି ରହିହେବ ନାହିଁ ଏବଂ ଆମୂଳଚୂଳ ଏଇଟିକୁ ଭଲଭାବେ ପାଠକଲାପରେ ଏହାର ରଚୟିତା ଯେ କେତେ ବିରାଟ ବ୍ୟକ୍ତିତ୍ୱର ଅଧିକାରୀ, ଯାହାର ବିରାଟତ୍ୱ ଏତେ ସହଜରେ ଧରିହେବ ନାହିଁ - ତାହାହିଁ ଆମ ସମକ୍ଷରେ ସ୍ପଷ୍ଟ ହୋଇପଡ଼େ।

ସେ କେହି ଏବଂ ଯାହା କିଛି ତାଙ୍କର ବାସ୍ତବ ସଂପର୍କରେ ଆସିଛନ୍ତି, ସେ ସମସ୍ତର ଯଥାଯଥ ମୂଲ୍ୟାୟନ କରିବାରେ ଅବଶ୍ୟ ସେ ହେଳା କରିନାହାନ୍ତି। ମାତ୍ର ସବୁଠୁଁ ବଡ଼ କଥା ହେଲା, ଅନ୍ୟର ଗୁଣକୁ ହିଁ ସେ ମୁଖ୍ୟଭାବେ ପାଠକ ସମକ୍ଷରେ ଗଢିତୋଳିଛନ୍ତି। ମୋ ମତରେ ଏହା କିଛି କମ୍ କଥାନୁହେଁ। ପୁଣି ଏହା ମଧ୍ୟ ସତ ଯେ ନିଜ ଜୀବନର ଏକ ଯଥାର୍ଥ ଆଲେଖ୍ୟ ଦେବାକୁ ଯାଇ ଯେଉଁଠି ସେ ସଫଳକାମ ହୋଇପାରିଛନ୍ତି କିମ୍ବା ଯେଉଁ କ୍ଷେତ୍ରରେ ସଂଘର୍ଷ କରି ସିଦ୍ଧିଲାଭ କରିଛନ୍ତି, ସେଗୁଡ଼ିକର ମଧ୍ୟ ଉଲ୍ଲେଖ କରିବାକୁ ଭୁଲି ନାହାନ୍ତି। ମାତ୍ର ତା'ସଙ୍ଗେସଙ୍ଗେ ଯେଉଁଠି ତାଙ୍କ ବିଚାରରେ ସେ ହୁଏ ତ ହାରିଯାଇଛନ୍ତି, ସେଗୁଡ଼ିକ ମଧ୍ୟ ମୁକ୍ତକଣ୍ଠରେ ସ୍ୱୀକାର କରିବାରେ ସେ କୌଣସି ସଙ୍କୋଚ ପ୍ରକାଶ କରିନାହାନ୍ତି। ଏହା ମଧ୍ୟ ଲକ୍ଷ୍ୟ କରିବାର କଥା। ମାତ୍ର ଏ ସବୁ ଭିତରେ ଗୋଟିଏ ନିଖୁଣ ଚିତ୍ର ଆମ ଆଖି ଆଗରେ ଭାସିଉଠେ ଏବଂ ସେଇଟି ହେଲା - ଅଧ୍ୟାପକ ଦାସ କେତେବେଳେ କାହାଦ୍ୱାରା ଉପକୃତ ହୋଇଛନ୍ତି ଏବଂ କିଏ କିପରି ତାଙ୍କଠାରୁ ଅଧିକ ଗୁଣୀ, ଜ୍ଞାନୀ ତଥା ବିଶେଷ ପ୍ରତିଭାସଂପନ୍ନ, ତା'ର ଚିତ୍ର ସତେ ଯେପରି ଅପରକୁ ସମ୍ମାନ ଦେବାଲାଗି ଏବଂ ଯଥୋଚିତ କୃତଜ୍ଞତା ଜ୍ଞାପନ କରିବା ଲାଗି ଏଇ ଅପୂର୍ବ ଆତ୍ମଜୀବନୀର ଲେଖକ ଜଣକ କୃତସଂକଳ୍ପ, ବଦ୍ଧପରିକର। ସେଇଥିପାଇଁ ଟିକିଏ ମନଧ୍ୟାନ ଦେଇ ନପଢ଼ିଲେ ଭଲ ଭାବେ ପରୀକ୍ଷା ନିରୀକ୍ଷା ନକଲେ, ଜଣେ ହୁଏ ତ ଜାଣିପାରିବ ନାହିଁ ଯେ ଏହାର ଲେଖକ ନିଜେ କେତେ ବିରାଟ, କେତେ ମହାନ୍। ଏ ଆତ୍ମଜୀବନୀର ନିମ୍ନୋକ୍ତ ଦୁଇଟି ଧାଡ଼ି ବିଶେଷ ପ୍ରଣିଧାନ ଯୋଗ୍ୟ - "ସେ ଥିଲେ ମୋ ସାର୍। ପରେ ମୁଁ ହେଲି ଅସଂଖ୍ୟ ଛାତ୍ରଙ୍କ ସାର। କିନ୍ତୁ

ମୋ ସାରଙ୍କ ପରି ସାର୍ ଆଉ ମିଳିବେ ନାହିଁ"। (୧୧୧ ପୃଷ୍ଠା)। ଏ ଦୁଇଧାଡ଼ିର ଲେଖାପରି ଆଉ ଲେଖାକାହିଁ। ମୋ ମତରେ ଏହାର ତୁଳନା ନାହିଁ, କାରଣ ଏହା ବିରଳ ଗୁରୁଭକ୍ତିର ଏକ ଚରମ ନିଦର୍ଶନ। ଧନ୍ୟ ଆପଣ - "ଗୁରୋରଂଘ୍ରିପଦ୍ମେ ମନଶ୍ଚେନ୍ନଲଗ୍ନଂ, ତତଃ କିମ୍, ତତଃ କିମ୍, ତତଃକିମ୍", ଆଚାର୍ଯ୍ୟ ଶଙ୍କରଙ୍କ 'ଗୁର୍ବଷ୍ଟକଂ' ଦ୍ୱାରା ନିର୍ଦ୍ଧାରିତ କଠିନ ପରୀକ୍ଷାରେ ସସମ୍ମାନେ ଉତ୍ତୀର୍ଣ୍ଣ ହୋଇଥିବାରୁ ଆପଣ ଏତେ ମହୀୟାନ୍ ଯେ ତା ଆଗରେ, ତା ତୁଳନାରେ, ଅନ୍ୟାନ୍ୟ ପଦପଦବୀ ସବୁ କିଛି ତୁଚ୍ଛ, ସବୁ କିଛି ମୂଲ୍ୟହୀନ ବୋଲି ମୁଁ ମନେକରେ।

ଅପରର ଗୁଣ ଗାନରେ ପଞ୍ଚମୁଖୀ ହୋଇ ଅପରକୁ ଶୀର୍ଷ ସ୍ଥାନରେ ବସାଇ ନିଜେ ବାସ୍ତବରେ ବଡ଼ ହେବାର ଏ ଯେଉଁ ବିରଳ ପ୍ରତିଭାର ଅଧିକାରୀ ସେ, ସେଇଥିଲାଗି ସେ ନମସ୍ୟ ଏବଂ ସେଥିପାଇଁ ମଧ ତାଙ୍କର ଯଥାର୍ଥ ମୂଲ୍ୟାୟନ ଏତେ ସହଜ ନୁହେଁ। ଅନନ୍ୟ ପ୍ରତିଭାଧର ଭର୍ତ୍ତୃହରି ଏଭଳି ସଜ୍ଜନ ସକଳ ଲୋକ ପୂଜ୍ୟ ବୋଲି କହି ସେମାନଙ୍କ ପ୍ରତି ଯଥୋଚିତ ସମ୍ମାନ ପ୍ରଦର୍ଶନ କରିଛନ୍ତି - "ନମ୍ରତ୍ୱେ ନୋନ୍ନମନ୍ତଃ ପରଗୁଣ କଥନୈଃ ସ୍ୱାନ୍ ଗ୍ରଣାନ୍ ଖ୍ୟାପୟନ୍ତଃ... ସନ୍ତଃ ସାଶ୍ଚର୍ଯ୍ୟଚର୍ଯା ଜଗତି ବହୁମତାଃ କସ୍ୟ ନାଭ୍ୟର୍ଚନୀୟାଃ"। ଗୋସାମୀ ତୁଳସୀ ଦାସ ଏଭଳି ସଜ୍ଜନ, ଯେ କି ଚନ୍ଦ୍ରକଳା ବୃଦ୍ଧି ହେବା ଦେଖି ସମୁଦ୍ର ଉଛୁଳିଲାପରି ଅପରର ଉତ୍କର୍ଷରେ ସୁଖୀହୁଅନ୍ତି, ସହଜରେ ଦେଖିବାକୁ ମିଳନ୍ତି ନାହିଁ ବୋଲି ତାଙ୍କ ରାମଚରିତ ମାନସ ଗ୍ରନ୍ଥରେ ଅତି ସୁନ୍ଦର ଭାବେ ଦର୍ଶାଇଛନ୍ତି - "ସଜ୍ଜନ ସୁକୃତ ସିନ୍ଧୁ ସମକୋଲ ଦେଖି ପୂର ବିଧୁ ବାଢ଼ଇ ଜୋଈ"। ମୋ ମତରେ ଅଧ୍ୟାପକ ଗଣେଶ୍ୱର ଦାସ ବାସ୍ତବରେ ଏହି ମହାନ୍ ପରଂପରାର ଉପଯୁକ୍ତ ଦାୟାଦ।

ଏହି ଅବସରରେ ଆଉ ଜଣେ ସୁନାମଧନ୍ୟ ଦର୍ଶନ ଅଧ୍ୟାପକଙ୍କ ଆତ୍ମଜୀବନୀ ସ୍ୱତଃ ମନକୁ ଆସେ, ସେଇଟି ହେଲା - ଅଧ୍ୟାପକ ହୃଦାନନ୍ଦ ରାୟଙ୍କର ସାରଳା ପୁରସ୍କାରପ୍ରାପ୍ତ ଆତ୍ମଜୀବନୀ 'ଜଣେ ଅନୁଭବୀ ଅନୁଭବରେ' ଏହା ଉପରେ ମୋର ଏକ ସମୀକ୍ଷାତ୍ମକ ନିବନ୍ଧ ଚିର ସଂଧାନ, ଭୁବନେଶ୍ୱର ଅଗଷ୍ଟ ୧୯-୨୬, ୨୦୦୫ ମସିହାରେ ପ୍ରକାଶିତ ହୋଇସାରିଛି। ବରେଣ୍ୟ ହୃଦାନନ୍ଦ ବାବୁଙ୍କ ଆତ୍ମଜୀବନୀ ଉଚ୍ଚକୋଟିର, ଏଥିରେ ଦ୍ୱିମତର ଅବକାଶ ନାହିଁ। ବାସ୍ତବରେ ଏହା ଏକ ଭକ୍ତିଗ୍ରନ୍ଥ - ଏକ ପ୍ରକାର ଭକ୍ତି ଶାସ୍ତ୍ର କହିଲେ ଅତ୍ୟୁକ୍ତି ହେବନାହିଁ। ଏଇଥିପାଇଁ ମୋ ସମୀକ୍ଷା ଅବସରରେ ମୁଁ ଏହାର ନାମକରଣ କରିଥିଲି - 'ଅଭିନବ ଦାର୍ଢ୍ୟତା ଭକ୍ତି'। ଅସାମାନ୍ୟ ତା'ର ପରିସର, ଅନନ୍ତ ତା'ର ଅଭୀପ୍ସା, ସକଳ ଉପାଦେୟତା ସତ୍ତ୍ୱେ ଆମ ସାଧାରଣଙ୍କ ଆଖିକି ପାଇବ ନାହିଁ - ଦିବ୍ୟଚକ୍ଷୁ ଲୋଡ଼ା। ଅଧ୍ୟାପକ ଦାସଙ୍କର ଆତ୍ମଜୀବନୀ ଅପରପକ୍ଷରେ ଆମଭଳି ତର ସଂଘର୍ଷରତ ସାଧାରଣ ମଣିଷଟିର ଆତ୍ମକାହାଣୀ ବୋଲି ମୁଁ ମନେକରେ - ଯେଉଁଠି ସାଧାରଣ ମଣିଷଟିଏ ତା'ର ନିଷ୍ଠା ତଥା ସାଧନା ବଳରେ ଅସାଧାରଣ ସିଦ୍ଧି ପାଇ ପାରିଛି। ଆଉ ସେଇଥିପାଇଁ 'ମନେପଡ଼େ' ଆମଭଳି ସାଧାରଣ ଲୋକଙ୍କ ଜୀବନ କାହାଣୀର ଏତେ ନିକଟବର୍ତ୍ତୀ, ଏତେ ନିଜର ବୋଲି ମନେହୁଏ। 'ଜଣେ ଅନୁଭବୀ ଅନୁଭବରେ' ଉଚ୍ଚକୋଟିର ଦାର୍ଶନିକ ଚେତନା ସମ୍ବଳିତ ଏକ ଭକ୍ତିରସାପ୍ଳୁତ ଗ୍ରନ୍ଥ ହୋଇଥିବାରୁ ଆଦର୍ଶର ଉତ୍ତୁଙ୍ଗ ଶିଖରରେ ଏହାର ମାନ୍ୟତା ଅବଶ୍ୟ ଅନସ୍ୱୀକାର୍ଯ୍ୟ। ତେବେ ମୋ ମତରେ ଅଧ୍ୟାପକ ରାୟ ସୁନାମଧନ୍ୟ ଇଂରେଜ କବି ଶେଲିଙ୍କ 'ସ୍କାଇଲାର୍କ' ଭଳି ଏକ ଆନନ୍ଦବିଭୋର ଆତ୍ମା-ସ୍ୱରୂପୀ (Blithe Spirit) ହୋଇଥିବା ସ୍ଥଳେ ଅଧ୍ୟାପକ ଦାସ ୱାର୍ଡସ୍‌ୱର୍ଥଙ୍କ 'ସ୍କାଇଲାର୍କ' ଭଳି ବାସ୍ତବତା ଓ ଆଦର୍ଶଗତ ସମନ୍ୱୟ (Ture to the kindred points of heaven and home)ର ଏକ ମୂର୍ତ୍ତିମନ୍ତ ପ୍ରତୀକ ଭାବେ ସେମାନଙ୍କର ଆତ୍ମଜୀବନୀ ମାଧ୍ୟମରେ ପ୍ରତିଭାତ ହୁଅନ୍ତି। ଅଧ୍ୟାପକ ଦାସ ନିଜେ ବରେଣ୍ୟ ହୃଦାନନ୍ଦ ବାବୁଙ୍କର କିସୁନ୍ଦର ଚିତ୍ରଟିଏ ଆମ ଆଗରେ ଟୋଳି ଧରିଛନ୍ତି, ତାଙ୍କ ଆତ୍ମଜୀବନୀରେ! ସେଇଥିରୁ ହିଁ ଅନେକ କିଛି ବୁଝିହେବ - "ସରକାର ଭାବିଥିଲେ ହୃଦାନନ୍ଦ ବାବୁ ବଦଳି ରଦ କରିବା ଲାଗି ସାରକାରଙ୍କ ଦ୍ୱାରସ୍ଥ ହେବେ। କିନ୍ତୁ ଯେ 'ବଦଳି'କୁ ବଦଳି ପରି ଗ୍ରହଣ ନକରିବ, ତା ପାଇଁ ବଦଳିର କିଛି ଅର୍ଥ ନଥାଏ। ହସିହସି ସେ ଯାଇଥିଲେ ଜୟପୁର"। (ମନେପଡ଼େ, ୧୦୪ ପୃଷ୍ଠା)। କି ସାବଲୀଳ, କି ହୃଦୟସ୍ପର୍ଶୀ ଏବଂ କେତେ ଅନ୍ତରଙ୍ଗ ଏହାର ଭାଷା! ହୃଦାନନ୍ଦବାବୁଙ୍କ ଅସାମାନ୍ୟ ବ୍ୟକ୍ତିତ୍ୱର କି ଅନବଦ୍ୟ ଚିତ୍ରଟିଏ ସତେ!

ଅଳ୍ପକରେ ଗଭୀର ଭାବ-ପ୍ରକାଶର ଚମତ୍କାରିତା ଏ ଆତ୍ମଜୀବନୀର ଏକ ବୈଶିଷ୍ଟ୍ୟ। ସେଇଥିପାଇଁ ଯଥାର୍ଥରେ କୁହାଯାଇଛି - "ମିତଂଚ ସାରଂଚ ବଚୋହି ବାଗ୍ମିତା"। ନିଜର ବ୍ୟକ୍ତିଗତ ସଂପର୍କ, ପରିବାର ତଥା ସମସାମୟିକ ଶିକ୍ଷାବିଭାଗର ବିଭିନ୍ନ ସମସ୍ୟା ସାଙ୍ଗକୁ କଟକ ସହରର ଏକ ବାସ୍ତବଚିତ୍ର, ସବୁକିଛି ଅଧ୍ୟାପକ ଦାସଙ୍କ ସ୍ୱଳ୍ପକଥନର ଅପୂର୍ବ ଭାଷା ଚାତୁରୀରେ ହଠାତ୍ ଜୀବନ୍ତ ଓ ମର୍ମସ୍ପର୍ଶୀ ହୋଇ ଉଠିଛନ୍ତି - ଏହା ସହଜରେ ବାରିହୋଇପଡେ ଏବଂ ପାଠକମାତ୍ରେ ଏହା ସ୍ୱୀକାର କରିବେ। ହୃଦାନନ୍ଦ ରାୟଙ୍କ ଆତ୍ମଜୀବନୀ ଏକ ଅଗାଧ ରତ୍ନାକର ହେଲେ ଗଣେଶ୍ୱର ଦାସଙ୍କ 'ମନେପଡ଼େ' ଏକ ସୁରମ୍ୟ ତରଙ୍ଗିଣୀ

ସଦୃଶ ବୋଲି ମୁଁ କହିବି। ଉଭୟେ ଯେଝା ଗୁଣରେ ମହୀୟାନ୍ ଏବଂ ଉଭୟ ଗ୍ରନ୍ଥର ରଚୟିତା ମୋ ଭଳି ଶିକ୍ଷାର୍ଥୀଙ୍କ ଲାଗି ଆଦର୍ଶ ସ୍ଥାନୀୟ, ଏଥିରେ ସନ୍ଦେହର ଅବକାଶ ନାହିଁ।

(ସମୀକ୍ଷକ ଜଣେ ବିଖ୍ୟାତ ଦାର୍ଶନିକ ଓ
ସଂସ୍କୃତ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ କୁଳପତି)

## ପ୍ରଫେସର ଡଃ ଗୌର କିଶୋର ଦାସ

ଲେଖକଙ୍କ ନିକଟକୁ ଲିଖିତ ଚିଠିର ଉଦ୍ଧୃତାଂଶ: 'ମନେପଡ଼େ' (ଫକୀର ମୋହନଙ୍କର କ୍ଷୁଦ୍ର 'ଆତ୍ମଚରିତ'ପରି) ଛୋଟ ବହିଟିଏ ହେଲେ ବି ଖୁବ୍ ଚିତ୍ତାକର୍ଷକ ହୋଇଛି। ମୁଁ ଅନୁଭବ କରେ ଯେ ଆପଣଙ୍କ ଲେଖାର ସବୁଠୁ ବଡ ଗୁଣ ହେଉଛି: ହୃଦୟର ଗହୀରିଆ ଭାବର ସଚ୍ଛ ପ୍ରକାଶ। ଯେଉଁପରି ଲେଖାକୁ Keats ଆଦର୍ଶସ୍ଥାନୀୟ ମନେ କରୁଥିଲେ। ଏପରି ପ୍ରାଣ ପରିପୂର୍ଣ୍ଣ ଭାବ ପ୍ରକାଶକୁ ସେ ଆଖ୍ୟା ଦେଇଥିଲେ 'the true voice of feeling' ଏ ପ୍ରକାର ଲେଖାର ଉପଯୁକ୍ତ ପ୍ରତିଦାନ ହେଉଛି ପାଠକ ହୃଦୟର ସ୍ୱନ୍ଦନ ଯାହା କି କବି / ଲେଖକଙ୍କୁ ଭାଷାରେ ପ୍ରକାଶ କରିହୁଏ ନାହିଁ। ଆପଣଙ୍କର ଅନୁଭୂତି ସମ୍ପନ୍ନ 'ଆତ୍ମଜୀବନୀ' ପଢ଼ି ମୋ'ର ସେଇ ଉପଲବ୍ଧି ହୋଇଛି। ଭାଷା ପାଉନାହିଁ ତାକୁ ଏଇ ଚିଠିରେ ପ୍ରକାଶ କରିବା ପାଇଁ।

ରେଭେନ୍ସା କଲେଜ୍‌ରେ ଆପଣଙ୍କ ସହିତ ବନ୍ଧୁତ୍ୱର ଅଲିଭା ସ୍ମୃତିକୁ ଆପଣଙ୍କର 'ଆତ୍ମଚରିତ' ଚିର ସବୁଜ ଓ ଶାଶ୍ୱତ କରିଦେଇଛି। ପ୍ରତି ଧାଡ଼ି ବୁଲ୍‌ବୁଲ୍ (ମୋ ସ୍ତ୍ରୀ)କୁ ସେଦିନ ସଂଧାରେ ପଢ଼ି ଶୁଣାଇବା ବେଳେ ଆଖିରୁ ଲୁହ ଗଡୁଥାଏ। ଏବେ ବି ଏ କାର୍ଡ ଖଣ୍ଡି ଲେଖିବା ବେଳେ ଲୁହକୁ ରୁମାଲ୍‌ରେ ପୋଛୁଛି ଯେମିତିକି କାର୍ଡ଼ରେ ତାର ଦାଗ ନପଡୁ। ଆଉ ଲେଖିପାରୁନାହିଁ, ନିସ୍ତବ୍ଧ ହୋଇ - କ୍ଷମା କରିବେ।

ଜଗନ୍ନାଥ ବାବୁ (ଦିଲ୍ଲୀ ବାସିନ୍ଦା, ଅବସରପ୍ରାପ୍ତ ଆଇ.ଏ.ଏସ୍, ବିଶିଷ୍ଟ କବି, କଥାକାର, ଶିଳ୍ପୀ, କଳାକାର, ନାଟ୍ୟକାର, ଡଃ ଜଗନ୍ନାଥ ପ୍ରାସଦ ଦାସ) ଗତକାଲି ଉପରବେଳେ ଫୋନ୍ କରିଥିଲେ। 'ମନେପଡ଼େ' ତାଙ୍କ ହୃଦୟରେ ଆଣି ଦେଇଥିବା ଉଲ୍ଲାସ କଥା କହୁଥିଲେ।

(ସମୀକ୍ଷକ ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି
ଏବଂ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ଇଂରାଜୀ ପ୍ରଫେସର)

## ଭୁବନେଶ୍ୱର ବି.ଜେ.ବି ସ୍ୱୟଂ ଶାସିତ ମହାବିଦ୍ୟାଳୟରେ ସଂବର୍ଦ୍ଧନା

ଭୁବନେଶ୍ୱର ବି.ଜେ.ବି. ସ୍ୱୟଂଶାସିତ କଲେଜ୍‌ର ଦର୍ଶନ ବିଭାଗ ଗଣେଶ୍ୱର ସାର୍‌ଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ। ସମ୍ବର୍ଦ୍ଧନାର ଉତ୍ତର ଦେବାକୁ ଯାଇ ପ୍ରଫେସର ଦାସ୍ Philoophy of Good Life ବିଷୟରେ ଯେଉଁ ଆଲୋଚନା ମୂଳକ ପ୍ରବନ୍ଧ ପାଠ କରିଥିଲେ ତାହର ନକଲ ଏଥିସହ ସଂଲଗ୍ନ କରୁଅଛି।

ଏତଦ୍‌ବ୍ୟତୀତ ଉକ୍ତ ମହାବିଦ୍ୟାଳୟର ଦର୍ଶନ ବିଭାଗ ଗୋଟିଏ ଆଲୋଚନା ଚକ୍ର ଆୟୋଜନ କରି ପ୍ରଫେସର୍ ଦାସଙ୍କୁ ତାଙ୍କର ବକ୍ତବ୍ୟ ଦେବା ଲାଗି ନିମନ୍ତ୍ରଣ କରିଥିଲେ। ଆଲୋଚନାର ବିଷୟବସ୍ତୁ ଥିଲା, 'What life has taught me and what philosophy has taught me?' ପ୍ରଫେସର ଦାସ ଆଲୋଚନାରେ ଭାଗ ନେଇ ଯେଉଁ ବକ୍ତବ୍ୟ ଦେଇଥିଲେ ତାହାର ନକଲ ସଂଲଗ୍ନ କରୁଅଛି।

## PHILOSOPHY OF GOOD LIFE

(Humble response to the felicitations offered to Prof. G. Das by the Deptt. of Philosophy, B.J.B. Autonomous College, Bhubaneswar)

I am extremely thankful to the organisers of this meeting in the premier college of Bhubanewar for the opportunity so kindly given to me to step into the memorable institution of my life where I worked for long 18 years in different capacities. I came to this college when it almost started functioning. It is really difficult on my part to forget even a single incident in this college during my stay. Traditions were built up and I was suceptible to BJB College tradition and hence my farewell from this college was painful. Pandit Jawaharlal Nehru in his essay on Harrow which we read during the school days, had nicely pictured his sentimates while leaving Harrow. There was the call of the Nation which his patriotic spirit could not avoid and at the same time he was burst to tears while leaving Harrow. He said he was suceptible to Harrow tradition. So was the case with me. Circumstances forced me to leave this memorable almameter, but time's tyrannic claims could not quench the memory of the institution preserved by me with care. I still remember how in the absence of funds the annual session of All Orissa Philosophy Association (AOPA) was conducted in this college. The cooperation of the-then principal Major R.C. Mohanty and my esteemed collegue Prof. Dr. G.P. Das was unique.

To speak of the felicitation offered to me, the only response from my side would be 'I don't deserve'. If anything positive was noticed in me, that was probably my genuine love for this institution. I not merely loved, I made sincere attempt to see that others would also love the institution.

I am extremely happy that the Deptt. of Philosophy of this institution is organising a seminar on Philosophy of good life. Discussion on a good life is absolutely needed at the present time. Every discipline of knowledge has a lot to speak on the subject. It is

generally said that moral and religious way of living can bring peace of mind and hence life will be good. But it is not always possible to follow the principles of morality and religion. In the social sphere attempts may be taken up to see that life is well led though of course 'good' is again a relative term. In our day to day life we face problems and while seking solution to the problems we make the life miserable. For example, how often don't we fall prey to the ailment of misunderstanding. A fraction of a second is sufficient to misunderstand someone where as a whole life time is not sufficient to understand someone. Similarly 'Love' is an important item for a good life which is often ignored or distorted. Love, in the present age has lost its connotation. Artificial means of communication which lack the feelings of heart are the emblem of love. We need material progress and who cares for the emotion and feelings? Few words through a hand-written letter used to express a lot, but things have changed. No letter, no greeting card, no gift is now a days necessary when emotion of within finds expression through computer and mobile. They say, they had a good life. Love for the institution is completely outdated. Love and duty are closely akin to good life.

We should remember that a life, wheather good or bad has to meet a death. But at the same time we should know that death does not dimissed us. Living and dying are integral to any creative process and our lives are but an extension of this universal truth. Let us therefore live such a life that when death finally covers knocking, we won't be afraid of it. We should rather think that it is a spiritual passing into another real. Such realisation brings forth a good life.

For a good life, the significance of silence is often under-estimated. Silence doesnot mean ignorance. It could well mean a desire to distance one self from the situation in order to get a clearer view of the larger picture. Silence provides a chance to reflect and understand which will help avoiding anger and revenge, violence and unhappiness. Words spoken in anger and haste can well lead to conflicts that can destroy the world.

Peace will not come from passive waiting. Dialogue is an important way to enable peace initiatives achieve their goal. Dialogue and communication is in itself an act of faith in humanity. We must constantly work to strengthen and confirm such a faith. The struggle to understand and be understood requires that each of us return to the deepest source of humanity. Then only good life will spring.

Confusions and conflicts do arise in families. Many people become frustarted and come to lost interest in life. Some even commit suicide. Once we innocently look at life we see, something very difficult happens. If we are unhappy in life it is not because what life really is, it is because of our opinion of how life should be you look at situations which you feel are not what they ought to be ; and you get angry. When you

get angry, look at you anger, your anger and not the event in the cause of your unhappiness. Remove your psychological bias and in the innocence you will find that even in disorder there is an order which an ordinary, impure mind can not see.

What is good should be our aim. Sects, weeds and religion are man-made. They are not the absolute truth so long as we recognise ourselves as Hindu, Muslim or Christian, we are not truly religious. To become truly religious, one has to transcend these practical truths or barriers. Religion should be an art of living sanely with a sense of sacrifice and service to humanity. When we say God is infinite and man is finite, there always remains a gap between God and man. The object of every religion is to reduce this gap. The less the gap the better it is for the individual and for humanity and as such a good life will spring up.

To lead a good life we have to love our work. When you love your job, you discover you will never have to work another day in your life.

Besides these psychological aspects of good life, we have to think of taking positive steps to improve the quality of life. The principal sources of human suffering can not be ignored. In terms of both the intensity of suffering and the number of people affected, one would first point to the symptoms of poverty - hunger, malnutrition disease and ignorance.

Swami Vivekananda's suggestion for a good life through the highest ideal of Karma Yoga, may not be practically possible, but he had the conviction that if genuine efforts are taken, a better life may come out. He says, "He works best who works without any motive, neither for money nor for fame nor for anything else and when a man can do that, he will be a Budha and out of him will come the power to work in such a manner as will transform the world".

*(Published in BJB Philosophy Series, Vol-1, 2011)*

## What Life has Taught me.
## What Philosophy has taught me.

A discussion by Prof. G. Das in the Symposium arranged by the Dept. of Philosophy, B.J.B. Autonomous College, Bhubaneswar

Any invitation from B.J.B College makes me reflective, takes me back to the loving days I spent in this college. Long association of 18 years in the college in the capacities of Lecturer, Reader, Vice-Principal and Principal has left an unforgettable mark in me. I treated the college almost as my home. The construction of the building, Play-ground, residential quarters, the Arts Block, all-all these are still fresh in my memory. The residential quarters which I occupied from 1961 to 1969 was agin alloted to me in 1974 and I stayed there upto 1984. I am extremely thankful to you, Dr. Das for giving me this opportunity of visiting the college, so memorable for me.

It is interesting that the staff members of the department of Philosophy of B.J.B. College offen creat occasion for some forum of socio-philosophical significance. Now they have earmarked two issues for discussion., Those are: what life has taught me and what philosophy has taught me. Initially it may seem that while the former question is more of general nature for public at large, the latter is dominantly of specific intellectual query belonging to a particular discipline. In this sense, both are of social and philosophical significance.

The questions, as they appear, are put to be some what puzzling at the out set. For, how can someone seriously question himself as to what life has taught him, while he still lives and he does not know yet what would be relevant teaching for him in future, till he continues to live.

Teaching is a continues process and it never becomes static during a particular time even it is a longer period of life. As such, any answer to the concerned question by any person can not be construed by him at least or by anyone else as final or definite in the ultimate sense. That means, it is likely to be changed and, so such, it is tentative or provisional.

Now to react upon the question: what philosophy has contributed to my life I would like to speculate what would have been my life if teaching philosophy would not have been my profesion. It is a fact what I read philosophy and teaching philosophy became my profession. Above these, some philosophical ideas also became the ideals or goals of my living. These ideas have guided me and directed me to shape my life in the form of this individual being standing before you and with any of such professions I would not have been this person what I am today. I would have been deprived of many philosophy.

It is from philosophy I have learnt that the most precious knowledge delivered by Yama to Nachiketa in the distinction between the 'Sreyas' and the 'preyas'. There have been various occasions when I have taken attempt to apply this wisdomm in my life and I have also witnesed how the hankering after preyas have landed disastrous consequences in many cases. Running after Preyas may give temporary satisfaction, but peaceful living in a society will never be possible.

Philosophy of socrates has placed before us that knowledge is virtue. For him right knowledge is the key to right conduct. Right vision, right knowledge and right conduct are the *Triratnas* taught by Jaina philosopher. Plato's idea of justice has enabled a society to function in a just manner. The present deplorable condition of a society is due to the lack of just and unjust consideration. How can a society function in a civilised manner without the consideration of human values. It is also the philosophy of jainism and Budhism which have reduced knowledge on human values.

I remember time and again what philosopher Hume has said, 'amidst all philosophy, be a man. This has gone deep in to my personal life.

Philosopher J.P. Santre has said, man is that what he tries to be'. This is a philosophical wisdom meant for all of us. This has put impact on my personal life and living.

To me it appears very much probable (and perhaps certain) that philosophy can not relinquish with reason and take resort of digmatic prejudice and taboo. Fully acknowledging the validity of socio-moral significance during the course of human life, philosophic inquisition is, though not fully identical, yet is quite close to scientific approach, being engaged in analysis (by and large conceptual rather than factual).

# Felicitation offered to Prof. Ganeswar Das
## by the Institute of Management, Bhubaneswar

**Speech by: Prof. G. Das**

Hon'ble Chairman, esteemed Director of the institute, Members of the Governing Council, Members of Faculty Council, dear degree holders, students and guests.

While offering my heart-felt thanks to you all for the wonderful felicitation offered to me this evening. I become more and more consicious of my limitations and hence. I feel, I hardly deserve the honour bestowed upon me.

I came in contact with the worthy Chairman Prof. Patnaik of your institute at Rourkela when I was the Principal of the Govt. College. A very young man then - full with energy, started the people of Orissa with his unique enterprenureship in establishing an Institute of Management - RIMS probably, at a time when there was probably no such institute in Orissa excepting XIM. Very soon he started a +2 college too. Just see, he is now a big ban, his talent is enviable. I am thankful to you, Sir, for choosing me for this felicitation programme.

The Director of the Institute Prof. Dr. Padhi is a very learned person and an old friend of mine. Large number of students in and out of Orissa quote him and his teaching. As a Vice-Chancellor he changed the colour of Berhampur University. As a man, he has pleased all. He is a good friend to any one, old and young. Under his leadership, this institute is bound to prosper.

Your Director informed me about the convocation address to be given by an erudite scholar and teacher of India. Dr. D.C. Misra. Inspite of my unwillingness to be felicitated, I could not afford to miss the opportunity of meeting and listening to my revered teacher Dr. Misra.

Regarding my discipline philosophy, I can simply quote Aristotle, "what I have gained from philosophy in the ability to feel at ease in any society". David Hume too said, "Be a philosopher, but amidst all your philosophy be still a man". Hence, philosophy in the true sense is meant to serve the society.

Applied Ethics, a branch of philosophy comes forward to tackle certain issues like pre-marital abbortion, mercy killing and pre-marital sex. These problems can not just be evaded as irreligious, unholy and unsocial. These problems have now drain the attention of the philosophers.

There is hue and cry all around over loss of values in human activities. Business activity is a kind of human activity. It exists on the bed-rock of value. Business is not just conducted to earn and amass money for one self. It is conducted for the welfare of the entire society. Populraly it is said, business is business meaning there by it is only profit seeking. But it is not that. Any business which seeks profit by faulty and fowl

means is bound to sink like Enron. The traditional values of Indian Culture like ଦମ, ଦାନ, ଦୟା are very much relevant. It is assuring that management institutes are teaching Business Ethics. Business is a social responsibility that must not cause harm to members of the society. Social responsibility is the basic concept of Business Ethics.

With these words I again thank you all for your kind felicitation to this humble self.

I wish the degree holders all success in life.

Thank You

## ସତ୍ୟ ଘଟଣା ଉପରେ ଆଧାରିତ
## ସାର୍‌ଙ୍କର ଗୋଟିଏ ପ୍ରବନ୍ଧ
(ଶ୍ରୀ ମନ୍ଦିରକୁ ପ୍ରବେଶ ପାଇଁ ହିନ୍ଦୁତ୍ୱର ପ୍ରମାଣ)

## ସତ୍ୟ ଘଟଣା ଉପରେ ଆଧାରିତ ସାର୍‌ଙ୍କର ଗୋଟିଏ ଛୋଟ ପ୍ରବନ୍ଧ

ଶ୍ରୀମନ୍ଦିରରେ ପ୍ରବେଶ ଲାଗି ହିନ୍ଦୁତ୍ୱର ପ୍ରମାଣ ବିଷୟକ ଗୋଟିଏ ସତ୍ୟ ଘଟଣା ଉପରେ ଆଧାରିତ ଗଣେଶ୍ୱର ସାର୍‌ଙ୍କର ଗୋଟିଏ ଛୋଟ ପ୍ରବନ୍ଧ ଦେଖିବାକୁ ପାଇଲି। ଘଟଣାଟି ସତ୍ୟ ହୋଇଥିବାରୁ ଏବଂ ସାର୍ ଯାହା କହିଛନ୍ତି ତାହା ଯୁକ୍ତିସଙ୍ଗତ ହୋଇଥିବାରୁ ପ୍ରବନ୍ଧଟିକୁ ଏଇ ପୁସ୍ତକରେ ସ୍ଥାନ ଦେବା ଲାଗି ଇଚ୍ଛା ବଳାଇଲି।

## ଶ୍ରୀ ମନ୍ଦିରକୁ ପ୍ରବେଶ ପାଇଁ ହିନ୍ଦୁତ୍ୱର ପ୍ରମାଣ

ଗଣେଶ୍ୱର ଦାସ

ଭଗବଦ୍ ବିଶ୍ୱାସ ବିଷୟରେ ସବୁ ଧର୍ମରେ ଅନେକ ରକମର ଆଲୋଚନା ହୋଇଯାଇଅଛି। ହିନ୍ଦୁ, ମୁସଲମାନ୍, ଖ୍ରୀଷ୍ଟିଆନ୍ ଯେ ଯାହା ମତ ଏବଂ ଉପାୟରେ ଭଗବାନଙ୍କୁ ପୂଜା କରି ଆସିଛନ୍ତି। ଗୋଟିଏ ଧର୍ମାବଲମ୍ବୀ ଅନ୍ୟ ଧର୍ମକୁ ସମାଲୋଚନା କରିବା ବା ସମର୍ଥନ କରିବାର ଅବକାଶ ନଥାଏ। ଈଶ୍ୱର ଉପାସକ କେବେହେଲେ ଧର୍ମର ରାସ୍ତାକୁ ଅବରୋଧ କରିପାରିବ ନାହିଁ। କିନ୍ତୁ ବାସ୍ତବ କ୍ଷେତ୍ରରେ ଧର୍ମ ସହିତ ଅସହିଷ୍ଣୁତା ଯୋଡ଼ି ହୋଇ ରହିଛି। ମୋ ଧର୍ମରେ ଶୃଙ୍ଖଳାରେ ସାମାନ୍ୟ ବାଧା ପଡିଲେ ମୁଁ ଯେ କେବଳ ଅସହିଷ୍ଣୁ ହୋଇପଡ଼େ ତା'ନୁହେଁ, ବରଂ ମୋ ଧର୍ମର ଶୃଙ୍ଖଳା ବଜାୟ ରଖିବା ପାଇଁ ଅନ୍ୟ ଧର୍ମକୁ ଆକ୍ଷେପ କରେ। କିନ୍ତୁ ଆମେ ସମସ୍ତେ ଭୁଲିଯାଉ ଯେ ଭଗବାନ୍ ଏକ ଏବଂ ସମସ୍ତଙ୍କର ଅଧିକାର ଅଛି ଆରାଧନା କରିବା ଲାଗି। ଶୃଙ୍ଖଳା ରକ୍ଷା କରିବା ନାମରେ ଆରାଧନାର ରାସ୍ତାକୁ ଅବରୋଧ କରୁଥିବା ବ୍ୟକ୍ତିକୁ କ୍ଷମା କରାଯାଇନପାରେ। ଗୋଟିଏ ସଦ୍ୟ ସତ୍ୟ ଘଟଣାର ଉଦାହରଣ ଦେବାକୁ ବାଧ ହେଉଛି।

ମୋ ନିଜର ଭାଣିଜୀ ଶ୍ରୀମତୀ ପୁଷ୍ପିତା ମାଥୁର୍ ଗତ ଜାନୁୟାରୀ ୨୧ ତାରିଖ ଅପରାହ୍ନ ପ୍ରାୟ ୪ଟା ସମୟରେ ତା'ର ସ୍ୱାମୀ ଏବଂ ପୁଅ ଦୁଇଜଣଙ୍କୁ ନେଇ ପୁରୀ ଯାଇଥିଲା ଶ୍ରୀ ମନ୍ଦିରରେ ଠାକୁରଙ୍କ ଦର୍ଶନ କରିବା ଉଦ୍ଦେଶ୍ୟରେ। ଠାକୁର ଯେ କେବଳ ପୁରୀ ଶ୍ରୀ ମନ୍ଦିରରେ ଅଛନ୍ତି ଏ ବିଷୟ ନେଇ କୌଣସି ଯୁକ୍ତି ଅବତାରଣ କରିବାକୁ ଚାହୁଁ ନାହିଁ। ଏଥି ସହିତ ଆଉ ଗୋଟିଏ ଶୃଙ୍ଖଳା ବିଷୟରେ ନୀରବ ରହୁଛି। ତାହା ହେଉଛି କେବଳ ବ୍ରାହ୍ମଣଙ୍କ ଦ୍ୱାରା ପୂଜା ଏବଂ ଅର୍ଥ ନ ବୁଝିଥିବା ଏବଂ ହୃଦୟକୁ ପ୍ରଭାବିତ ନକରୁଥିବା ଶ୍ଳୋକ ଉଚ୍ଚାରଣ। ପୁଷ୍ପିତା ଓ ତା'ପୁଅ ଦୁଇଜଣ ଶ୍ରୀ ମନ୍ଦିରକୁ ପ୍ରବେଶ କଲାବେଳେ ସୁରକ୍ଷା ଦାୟିତ୍ୱରେ ଥିବା କର୍ମୀମାନେ ସେମାନଙ୍କୁ ମନ୍ଦିର ଭିତରକୁ ପ୍ରବେଶ କରିବା ଲାଗି ଅନୁମତି ଦେଇନଥିଲେ। ସେମାନେ ନାନାଦି ପ୍ରଶ୍ନ ପଚାରି ଚାଲିଲେ ଏବଂ ପୁଷ୍ପିତା ଶୁଦ୍ଧ ଓଡ଼ିଆରେ ଉତ୍ତର ଦେଇ ତାର ଜଗନ୍ନାଥ ଦର୍ଶନ ଲାଗି ପ୍ରବଳ ଆଗ୍ରହ ପ୍ରକାଶ କଲା। ତା'ର ସ୍ୱାମୀ ଶ୍ରୀ ସଞ୍ଜୟ ମାଥୁର୍ ମନ୍ଦିର ଭିତରକୁ ପ୍ରବେଶ ନକରି ବାହାରେ ଗାଡିରେ ବସି ଅପେକ୍ଷା କଲେ। ସୁରକ୍ଷା କର୍ମୀଙ୍କର ସନ୍ଦେହର କାରଣ ଥିଲା ପୁଅ ଦୁଇଜଣ ଓଡ଼ିଆ କହିପାରୁନଥିଲେ। ଜନ୍ମ ବେଳରୁ ବାପା ମା ସେମାନଙ୍କୁ ଇଂରାଜୀରେ କଥାବାର୍ତ୍ତା ହେବା ଶିଖାଇଥିଲେ। ମା'ର ଓଡ଼ିଆ ଏବଂ ବାପାଙ୍କର ହିନ୍ଦୀ ଭାଷା କିଛି କିଛି ଜାଣିଥିଲେ। ଠାକୁରଙ୍କୁ ପୂଜା କରିବା ଲାଗି କେଉଁ ଭାଷାର ଆବଶ୍ୟକ ଜାଣି ନପାରି ପୁଷ୍ପିତା ବିକଳ ହୋଇ ଅନୁରୋଧ କଲା ମନ୍ଦିର ଭିତରକୁ ପ୍ରବେଶ ଲାଗି ଅନୁମତି ପାଇଁ. ଶ୍ରୀ ମନ୍ଦିର ଶାସନର ଉଚ୍ଚଅଧିକାରୀଙ୍କ ନିକଟକୁ ସେମାନଙ୍କୁ ନିଆଯାଇଥିଲା। ବେଶ୍ ସମୟ ଅତିବାହିତ ହୋଇଗଲା। ପୁଷ୍ପିତା ସୁଦୂର ଅଷ୍ଟ୍ରେଲିଆରୁ ଆସିଥିଲା ଏବଂ ଶ୍ରୀ ମନ୍ଦିରରେ ଠାକୁର ଦର୍ଶନ ଲାଗି ବ୍ୟାକୁଳ ଥିଲା। ଶ୍ରୀ ମନ୍ଦିର ପ୍ରବେଶ ପାଇଁ ଉପୁଜିଥିବା ପ୍ରତିବନ୍ଧକମାନଙ୍କର ସମ୍ମୁଖୀନ ହୋଇ ତା'ଆଖିରୁ ଅଜସ୍ର ଲୁହ ବୋହି ଚାଲିଥାଏ। ପରେ ପରେ ପୂଜକ ମାନେ ପହଞ୍ଚଗଲେ ଏବଂ ଗୋତ୍ର ଇତ୍ୟାଦି ବିଷୟରେ ପଚାରିଲେ। କେବଳ ସେମାନଙ୍କୁ ଯେ ଗୋତ୍ର ଜଣାନଥିଲା ତା'ନୁହେଁ, ଅନେକ ହିନ୍ଦୁ ସେମାନଙ୍କର ଗୋତ୍ର ଜାଣିନଥାନ୍ତି। ଶ୍ରୀ ମନ୍ଦିରରେ ପ୍ରବେଶ ଲାଗି ଗୋତ୍ରର ଯେ କି ଆବଶ୍ୟକତା ଅଛି ସେମାନେ ଜାଣିପାରିଲେନାହିଁ। ବହୁ ଆଶା ନେଇ ପୁଷ୍ପିତା ପୁରୀ ଯାଇଥିଲା ପୁଅ ଦୁହିଁଙ୍କ ପାଇଁ ଜଗନ୍ନାଥଙ୍କ ଆଶୀର୍ବାଦ ଲାଭ ଆଶାରେ। ସେ କାନ୍ଦୁଥାଏ ଏବଂ ସମସ୍ତେ ନିରୁପାୟ ହୋଇ ଦେଖୁଥାନ୍ତି। ଶେଷରେ ଯୋଡ଼ ହସ୍ତରେ ମନ୍ଦିର ସାମ୍ନାରେ ଆରାଧନା କରି ହୃଦୟର କୋହକୁ ସାଥିରେ ନେଇ ଫେରିଲା।

ପୁଷ୍ପିତାର ବୟସ ୫୦ ବର୍ଷ ଉପରେ। ସେ ଛାତ୍ରାବାସ୍ଥାରେ ମେଧାବୀ ଛାତ୍ରୀଭାବରେ ପରିଚିତ ଥିଲା। କାନ୍‌ପୁର ଆଇ.ଆଇ.ଟିରୁ କୃତିତ୍ୱ ସହକାରେ ଏମ୍.ଏସ୍‌ସି ଏବଂ କଲିକତା ଆଇ.ଆଇ.ଏମ୍‌ରୁ ମ୍ୟାନେଜମେଣ୍ଟ ଡିଗ୍ରୀ ନେଇ ଭାରତର

ବହୁତ ଉଚ୍ଚ ସଂସ୍ଥା ମାନଙ୍କରେ ଚାକିରୀ କରିଥିଲା । ତାର ସ୍ୱାମୀ ସଂଜୟ ଦିଲ୍ଲୀ ବାସିନ୍ଦା ଏବଂ ବିଦେଶୀ ବ୍ୟାଙ୍କ ମାନଙ୍କରେ ଉଚ୍ଚପଦସ୍ଥ କର୍ମଚାରୀ ଭାବରେ ବେଶ୍ କିଛିବର୍ଷ ଚାକିରୀ କରିଥିଲା । ଏବେ ସେମାନେ ଅଷ୍ଟ୍ରେଲିଆରେ କାର୍ଯ୍ୟରତ । ଦୁଃଖର ବିଷୟ ଜଣେ ହିନ୍ଦୁ ତା'ହିନ୍ଦୁତ୍ୱର ପରିଚୟ ଦେଇପାରିଲା ନାହିଁ । ଏଠାରେ ମାତ୍ର ତିନୋଟି ବିଷୟ ଉଲ୍ଲେଖ କରି ପ୍ରବନ୍ଧଟି ଶେଷ କରୁଅଛି ।

୧) ଦାର୍ଶନିକ ବ୍ରାଡ୍‌ଲେଙ୍କ ମତରେ "Thought must commit suicide at the altar of sentient experience" ଧାର୍ମିକ ଅନୁଭୂତି ଏପରି ଅନୁଭୂତି ଯାହାକୁ ବିଶ୍ଳେଷଣ କରିହେବ ନାହିଁ ସ୍ୱାମୀ ବିବେକାନନ୍ଦ ମଧ୍ୟ ଠିକ୍ ସେଇ କଥା କହିଥିଲେ । "Reasoning can not validate religious truth... experience alone can validate it" କୌଣସି ଯୁକ୍ତି ଧାର୍ମିକ ସତ୍ୟକୁ ବିଧି ସଂଗତ କରିପାରିବ ନାହିଁ । ଅନୁଭୂତି ହିଁ କେବଳ ଏହି ସତ୍ୟକୁ ପ୍ରମାଣିତ କରିପାରିବ ।

୨) ବିଶ୍ୱକବି ରବୀନ୍ଦ୍ର ନାଥ ଟାଗୋର୍‌ଙ୍କର "ଗୀତାଞ୍ଜଳି"ର ଓଡ଼ିଆ ଅନୁବାଦ କରିବାକୁ ଯାଇ ବିଶିଷ୍ଟ କବି ଓ ସୁଲେଖକ ଶ୍ରୀ ହରପ୍ରସାଦ ଦାସ ଗୋଟିଏ ସ୍ଥାନରେ ପ୍ରକାଶ କରିଛନ୍ତି,

"ମୋର ଗୀତର ବିବିଧ ସୁର
ଯାଉ ହେ ବୋହି ଗୋଟିଏ ସୁରେ
ଗୋଟିଏ ନମସ୍କାରେ ହେ ପ୍ରଭୁ ଗୋଟିଏ ନମସ୍କାରେ
ମୋହର ବୋଲି ରଚେ ଯେ ଗୀତି
ହେଉ ତା ଇତି
ମିଳାଇ ଯାଉ ନୀରବତାର ଅସୀମ ପାରାବାରେ ।"

୩) ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କ ମତରେ "Opinions can not grow unless traditions are altered" ପରମ୍ପରାକୁ ନ ଛାଡ଼ିଲେ ଅଭିମତର ପରିପ୍ରକାଶ ହୋଇପାରେ ନାହିଁ । ସେ ପୁନଶ୍ଚ କହିଛନ୍ତି "The Hindu method adopts not force and threats, but suggestion and persuation" ହିନ୍ଦୁତ୍ୱ ବାଧ୍ୟତା ବା ଭୟ ବଦଳରେ ପରାମର୍ଶ ଏବଂ ପ୍ରସ୍ତାବ ସବୁକୁ ଗ୍ରହଣ କରିଥାଏ ।

ଭିନ୍ନ ଧର୍ମାବଲମ୍ବୀକୁ ଜାଣିବାର କିଛି ଉପାୟ ନଥାଇ ଶ୍ରୀମନ୍ଦିର ଭିତରକୁ ପ୍ରବେଶ ବିଷୟକ ପ୍ରତିବନ୍ଧକ ନିୟମ ଆକାରରେ ପାଳନ କରାଯାଉଅଛି । ଅନେକ ଖ୍ରୀଷ୍ଟିଆନ୍ ଏବଂ ମୁସଲ୍‌ମାନ ହୁଏତ ମନ୍ଦିର ଭିତରକୁ ବିନା ବାଧାରେ ପ୍ରବେଶ କରିପାରୁଛନ୍ତି, ଯେହେତୁ ସେମାନଙ୍କର ଚେହେରା ବା ପୋଷାକ ସନ୍ଦେହ ସୃଷ୍ଟି କରୁନାହିଁ । କିନ୍ତୁ ଜଣେ ହିନ୍ଦୁ ତା ହିନ୍ଦୁତ୍ୱର ପରିଚୟ ଦେଇ ନପାରିବା ହେତୁ ଶ୍ରୀମନ୍ଦିର ଭିତରକୁ ପ୍ରବେଶ କରିପାରିଲା ନାହିଁ ଏବଂ ଠାକୁର ଦର୍ଶନରୁ ବଞ୍ଚିତ ହେଲା ।

◆ ◆ ◆

# ପ୍ରକାଶିତ କେତୋଟି
# ପୁସ୍ତକର ସୂଚନା



ପଦ୍ମିନୀ,

ତମ ଭାଷାରେ ସାରା ଜୀବନ ମୁଁ ତମକୁ କିଛି ଉପହାର ଦେଇନାହିଁ। ମୋ ଭାଷାରେ ମୁଁ ତମକୁ କିଛି ଉପହାର ଦେଇପାରି ନାହିଁ । 'ଦେଇନାହିଁ, ମୋ ଭଲ ପାଇବାକୁ ପ୍ରଶ୍ନ କରୁଛି । 'ଦେଇପାରିନାହିଁ' ମୋ ଭଲ ପାଇବା ମିଶା ଦାରିଦ୍ର୍ୟକୁ ଗ୍ରହଣ କରୁଛି । ଏମିତି ଜୀବନଟା ସରି ଆସିଲା । ମୃତ୍ୟୁ ପୂର୍ବରୁ ଗୋଟିଏ ଛୋଟ ଉପହାର ଦେଇଯାଉଛି । ଯଦି ମୋ ଭଲ ପାଇବା 'ମନେ ପଡ଼େ', ଗ୍ରହଣ କରିବ ।

**ଗଣେଶ୍ୱର ଦାସ**

# ସ୍ମୃତି ବଖାଣିବା ପୂର୍ବରୁ

୧୯୬୭ ମସିହାରେ ଭୁବନେଶ୍ୱର ବି.ଜେ.ବି. କଲେଜ୍‌ରେ ଅଧ୍ୟାପକ ଥାଏ ଦିନେ ମୁଁ ଓ ମୋ ପରିବାର ବର୍ଗ ରାତିରେ ଶୋଇଥିବା ସମୟରେ କେହି ଦୁର୍ବୃତ୍ତ ମୋ ସରକାରୀ ବାସଗୃହ କବାଟ ଝରକା ସବୁରେ ପେଟ୍ରୋଲ ଢାଳି ଦାଣ୍ଡବାଟେ ନିଆଁ ଲଗାଇ ଦେଇଥିଲା । ବହୁତ କଷ୍ଟରେ ମୋ ସ୍ତ୍ରୀ ଓ ପିଲାମାନଙ୍କୁ ରକ୍ଷା କରି ନିଜକୁ ବି ବଞ୍ଚାଇ ପାରିଲି । ପରଦିନ ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକ ମୋ ବାସଗୃହ ଅବସ୍ଥା ଦେଖିଗଲେ । ଖବରକାଗଜ ମାନଙ୍କରେ ଖବର ପ୍ରକାଶ ପାଇଲା । ତା' ସଙ୍ଗେ ସଙ୍ଗେ ମୁଁ ବେନାମୀ ଚିଠି ପାଇଲି, "କେହି ଦୁର୍ବୃତ୍ତ ନୁହେଁ, ଆମେ ଯେଉଁମାନଙ୍କ ବିରୁଦ୍ଧରେ ତୁ କପି କରୁଥିବା ରିପୋର୍ଟ ପଠାଇଥିଲୁ, ଏବେ ପରୀକ୍ଷା ଫଳ ବାହାରିବା ପରେ ଆମର ରେଜଲ୍ଟ ପ୍ରକାଶ ନ ପାଇଥିବାରୁ ତତେ ଓ ତୋ ପରିବାରର ସମସ୍ତଙ୍କୁ ଜାଳିଦେବା ଉଦ୍ଦେଶ୍ୟରେ ତୋ ଘରେ ପେଟ୍ରୋଲ ଢ଼ାଳି ନିଆଁ ଲଗାଇଥିଲୁ ।" ଏ ଚିଠି ମୁଁ ଅନୁସନ୍ଧାନ କରୁଥିବା ପୋଲିସ୍ କର୍ମଚାରୀଙ୍କୁ ଦେଇଥିଲି । ଫଳ କିଛି ହେଲାନାହିଁ । ସପ୍ଲିମେଣ୍ଟାରୀ ପରୀକ୍ଷା ବେଳକୁ ମୁଁ Warning letter (ସତର୍କ ଚିଠି) ପାଇଥିଲି । ତାକୁ ମଧ୍ୟ ପୋଲିସ୍‌ଙ୍କ ଜିମା କରିଥିଲି । ଆଜିକି ୩୭ ବର୍ଷ ତଳେ ଘଟିଥିବା ଏପରି ଘଟଣା ମୁଁ ହୁଏତ ଜୀବନ ଶେଷ ପର୍ଯ୍ୟନ୍ତ ମନେ ରଖିଥିବି । ମୋ ନାତି ଦୀପମ୍ ଜ୍ୟୋତି ଯେ କି ଏବେ ବାଙ୍ଗାଲୋରରେ ମେଡିକାଲ୍ ପାଠ ପଢ଼ୁଛି ସେ ସବୁବେଳେ ମୋର ଅତୀତ କଥା ସବୁ ଶୁଣିବା ପାଇଁ ବ୍ୟଗ୍ରତା ପ୍ରକାଶ କରେ । ଏ ଘଟଣା ଶୁଣି ସେ ମତେ ଜିଦି କଲା ଏହାକୁ ଲିପିବଦ୍ଧ କରିବା ଲାଗି । ୩୭ ବର୍ଷ ତଳେ ପରୀକ୍ଷାରେ ଅସଦ୍‌ଉପାୟ ଅବଲମ୍ବନକୁ ଦମନ କରିବା ଯୋଗୁଁ ଯେଉଁ ଘଟଣା ଘଟିଥିଲା, ଏବେ ଆହୁରି ନୂଆ ନୂଆ ଉପାୟରେ ପରୀକ୍ଷା ନିରୀକ୍ଷକମାନଙ୍କୁ ଦଣ୍ଡିତ ହେବାକୁ ପଡୁଛି । ଲିପିବଦ୍ଧ କଲେ ଘଟଣାକୁ ଜାଣିବା ପାଇଁ କେହି ଯେ ବହିଟି ପଢ଼ିବେ ଏ ବିଶ୍ୱାସ ମୋର ନାହିଁ । ତଥାପି ନିଜ ମନର ଶାନ୍ତି ପାଇଁ ଏବଂ ନାତିର ଅନୁରୋଧ ରଖିବା ପାଇଁ ଘଟଣାଟି ଆଜିର ଛାତ୍ର ଓ ଶିକ୍ଷକଙ୍କ ସମ୍ମୁଖରେ ଉପସ୍ଥାପନ କରିବା ଲାଗି ଇଚ୍ଛା କଲି ।

ପ୍ରତ୍ୟେକ ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେବା ପୂର୍ବରୁ ମୋର ମାନସିକ ଯନ୍ତ୍ରଣା ମତେ ଯେପରି ଭାବରେ କଷ୍ଟ ଦେଉଥିଲା ଏବଂ ପରୀକ୍ଷାରେ ବସିବା ମୋ ପାଇଁ ଯେପରି କଷ୍ଟକର ହେଉଥିଲା ତାରି ପୃଷ୍ଠଭୂମିରେ ମୁଁ ସବୁବେଳେ ଛାତ୍ର ଓ ପରୀକ୍ଷାର୍ଥୀମାନଙ୍କୁ ଦେଖେ । ଥରେ ପରୀକ୍ଷାରେ ବସିଲେ ମୁଁ ଭଲ କରୁଥିଲି, କିନ୍ତୁ ପରୀକ୍ଷାରେ ବସିବା ସହଜ ନଥିଲା । ମୋ ଅବସ୍ଥା କାହିଁକି ଏପରି ହେଉଥିଲା ମୁଁ ନିଜେ ଜାଣି ପାରୁ ନଥିଲି । ବାପା ମା ବନ୍ଧୁବାନ୍ଧବ, ଏପରିକି ପୂଜ୍ୟ ଶିକ୍ଷକ ବୃନ୍ଦ Psychological ବୋଲି କହି ମୋର ଅତ୍ୟଧିକ କଷ୍ଟକୁ ଗୁରୁତ୍ୱ ଦେଉନଥିଲେ । ମେଡ଼ିସିନ୍ ପ୍ରଫେସର ଡ଼କ୍ଟର ପିସାରୋଟି ମୋ ବାପାଙ୍କୁ କହିଥିଲେ, "Don't avoid the problem by telling it psychological. He is having some thing which you are not having". ସେ ମୋ କଥାକୁ ସମର୍ଥନ କରି ମୋର ସମସ୍ୟାକୁ ବୁଝିବାକୁ ଚେଷ୍ଟା କରୁଥିଲେ । ପିଲାଟି ମାନସିକ ଭାରାକ୍ରାନ୍ତ ହୋଇଥିବା ବେଳେ ତା' ମନରେ ସାହାସ ଓ ଶକ୍ତି ସୃଷ୍ଟି କରିବା ପାଇଁ ପରିବାରର ସଦସ୍ୟ ବୃନ୍ଦଙ୍କର ଗୁରୁତ୍ୱ ପୂର୍ଣ୍ଣ ଭୂମିକା ଅଛି ।

ମୋର ବାପା ତତ୍‌କାଳୀନ ଅର୍ଥବିଭାଗରେ ସମ୍ପୂର୍ଣ୍ଣ ଦାୟିତ୍ୱରେ ଥିବା ଏବଂ ପ୍ରଥମ ଦରମା କମିସନ୍‌ର ସଭ୍ୟ ୬ ଦାମୋଦର ଦାସ ଥରେ ତତ୍‌କାଳୀନ ଅର୍ଥ ମନ୍ତ୍ରୀଙ୍କୁ ଦୋଷାରୋପ କରି କହିଥିଲେ, "ଆପଣ ଯେହେତୁ ଉଭୟ ଅର୍ଥ ଓ ଶିକ୍ଷା ଦାୟିତ୍ୱରେ ଅଛନ୍ତି, ଅର୍ଥ ବିଭାଗର ବିନା ଅନୁମୋଦନରେ ଶିକ୍ଷା ବିଭାଗକୁ ଅର୍ଥ ମଞ୍ଜୁରୀ କରାଯାଉଛି ।" ଏଥିଲାଗି ଶୃଙ୍ଖଳାଗତ ଶାସ୍ତି ପରିବର୍ତ୍ତେ ଅର୍ଥମନ୍ତ୍ରୀ ବାପାଙ୍କ ପରାମର୍ଶ ଲୋଡ଼ିଥିଲେ । ଜଣେ ଅଧଃସ୍ତନ କର୍ମଚାରୀ ଏପରି ଭାବରେ କହିବା ଏବଂ ଜଣେ ମନ୍ତ୍ରୀ ଉଦାର ମନୋବୃତ୍ତିରେ ତାକୁ ଗ୍ରହଣ କରିବା ମତେ ଆଶ୍ଚର୍ଯ୍ୟ ଲାଗିଥିଲା । ଛାତ୍ରାବସ୍ଥାରେ ଏ ଘଟଣା (ବାପାଙ୍କଠାରୁ ଶୁଣି) ମୋ ମନରେ ବେଶ୍ ପ୍ରଭାବ ପକାଇଥିଲା । ଜଣେ ବ୍ୟକ୍ତିର ଯଥେଷ୍ଟ ଜ୍ଞାନ ଏବଂ ନିଃସ୍ୱାର୍ଥପର ପରିଶ୍ରମ ଥିଲେ ସେ ସାହସର ସହିତ ଏପରି କହି ପାରିବ ଏବଂ ଦେଶ ଓ ଜାତି ପାଇଁ ଆନ୍ତରିକତା ସହ ଚିନ୍ତା କରୁଥିବା ବ୍ୟକ୍ତି ଏପରି କଥା ଗ୍ରହଣ କରି ପାରିବ।

ମୋ ଜୀବନର ବିଶେଷ ମୂଲ୍ୟ ନ ଥାଇ ପାରେ । ମୁଁ କେହି ବିଶିଷ୍ଟ ବ୍ୟକ୍ତି ନୁହେଁ ଯାହାର ଜୀବନର ଆବଶ୍ୟକତା ପଡ଼ିବ । କିନ୍ତୁ ଘଟଣାବଳୀର ମୂଲ୍ୟ ଅଛି । ଏହି ଦୃଷ୍ଟିରୁ ଘଟଣାମାନ ଲିପିବଦ୍ଧ କରାଯିବାର ଆବଶ୍ୟକତା ମଧ୍ୟ ଅଛି ।

ପରିବାର ଭିତରେ ଉଲ୍ଲେଖନୀୟ ଘଟଣା ନ ଘଟିଥିଲେ ବି ପରିବାର ଅନ୍ତର୍ଭୁକ୍ତ ବର୍ତ୍ତମାନର ଏବଂ ଅତୀତର ସଦସ୍ୟମାନଙ୍କର ନାମ ଏବଂ ପରସ୍ପର ଭିତରେ ଥିବା ସମ୍ପର୍କ ବିଷୟ ଉତ୍ତର ପୁରୁଷମାନଙ୍କର ଆଗ୍ରହ ଦୃଷ୍ଟିରୁ ମୂଲ୍ୟବାନ ହେବ। ପରିବାର ଭିତରେ ପିଲା ସଂଖ୍ୟା ବୃଦ୍ଧି ଆମ ପାଇଁ ଗ୍ରହଣ ଯୋଗ୍ୟ ନ ହୋଇପାରେ, କିନ୍ତୁ ଏତେ ପିଲାଙ୍କର ଲାଳନ ପାଳନର ଦାୟିତ୍ୱ ବହନ କରି ପ୍ରତ୍ୟେକଙ୍କୁ ନିଜ ଗୁଣେ ମହୀୟାନ୍ କରି ଗଢ଼ିବା ଘଟଣା ନିଶ୍ଚିତ ଭାବରେ ପ୍ରଣିଧାନ ଯୋଗ୍ୟ । ମୋ ପରିବାର ସଦସ୍ୟଙ୍କର ଅନୁକରଣୀୟ ଆଦର୍ଶ ଗୁଣ ମୁଁ ଦର୍ଶାଇନାହିଁ । ସେମାନଙ୍କୁ କେବଳ ପାଠକମାନଙ୍କ ପାଖରେ ଉପସ୍ଥାପନ କରିଛି ।

କଟକ ସହରର ଇତିହାସ ସାଦରେ ସାଇତି ରଖିଛି । କିନ୍ତୁ କଟକର ଯେଉଁ ବାସିନ୍ଦା ବା ଅନୁଷ୍ଠାନ ମାନଙ୍କଠାରେ କଟକତ୍ୱ ଭରି ରହିଥିଲା ସେମାନଙ୍କୁ କାଳକ୍ରମେ ସମସ୍ତେ ଭୁଲି ଯାଇଛନ୍ତି । କଟକର ଏ କଣରୁ ସେ କଣ ବୁଲି ମୁଁ ସେମାନଙ୍କୁ ଖୋଜିଛି ଏବଂ ମୋ ସୀମିତ ଇତିହାସ ଭିତରେ ସେମାନଙ୍କୁ ସ୍ଥାନ ଦେଇଛି ।

ମୁଁ ସାହିତ୍ୟିକ ନୁହେଁ କିମ୍ବା ସୁଲେଖକ ନୁହେଁ । ବିଶିଷ୍ଟ ବ୍ୟକ୍ତିବୃନ୍ଦ ଆତ୍ମଜୀବନୀକୁ ନିଜର ଜ୍ଞାନ, ଦୃଷ୍ଟିକୋଣ ଏବଂ ବଳିଷ୍ଠ ବିଚାରଶକ୍ତି ଦ୍ୱାରା ଜୀବନ୍ତ ଏବଂ ଶିକ୍ଷଣିୟ କରି ପାରିଛନ୍ତି । ସେଥିପାଇଁ ଗୋପୀନାଥ ମହାନ୍ତି 'ସ୍ରୋତସ୍ୱନୀ' ପାଇଁ, ମନମୋହନ ଚୌଧୁରୀ ତାଙ୍କର 'କସ୍ତୁରୀମୃଗ ସମ' ପାଇଁ ବା ଚିତ୍ତରଂଜନ ଦାସ ତାଙ୍କ 'ମିତ୍ରସ୍ୟ ଚକ୍ଷୁସା' ପାଇଁ ଅଥବା ହୃଦାନନ୍ଦ ରାୟ ତାଙ୍କ 'ଜଣେ ଅନୁଭବୀ ଅନୁଭବରେ' ପାଇଁ ଚିରସ୍ମରଣୀୟ ହୋଇପାରିଛନ୍ତି। ସେ ଉଚ୍ଚତାକୁ ପହଞ୍ଚିବା ମୋ ପକ୍ଷରେ ସାମାନ୍ୟତମ ସହଜ ସାପେକ୍ଷ ନୁହେଁ । ଘଟଣାବଳୀକୁ ଏକାଠି କରି ଲେଖିଦେଲେ ଆତ୍ମଜୀବନୀ ହୁଏ ନାହିଁ । ତା ଜାଣି ସୁଦ୍ଧା ଘଟଣାବଳୀକୁ ଘଟଣାବଳୀର ପ୍ରାଧାନ୍ୟ ଦୃଷ୍ଟିରୁ ଏବଂ ପରିବାର ସଦସ୍ୟମାନଙ୍କୁ ମୋ ବଂଶଧରମାନେ ଜାଣିବାର ସୁଯୋଗ ପାଆନ୍ତୁ - ଏହି ଦୃଷ୍ଟିରୁ ସାଧାରଣ ଜୀବନର ସାଧାରଣ ଘଟଣାବଳୀ ଏବଂ ପରିବାରର ସାଧାରଣ ସଦସ୍ୟମାନଙ୍କୁ ପାଠକମାନଙ୍କ ପାଖରେ ପହଞ୍ଚାଇବାର ଉଦ୍ଦେଶ୍ୟ ରଖି ଏହି ପୁସ୍ତକଟି ରଚନା କଲି । ପାଠକମାନଙ୍କ ଦ୍ୱାରା ଏହା କେତେଦୂର ଗ୍ରହଣ ଯୋଗ୍ୟ ହେବ ଜାଣେ ନାହିଁ । ଲେଖିଲାବେଳେ ମୋର ବନ୍ଧୁ ରାଉରକେଲା କଲେଜ୍‌ର ଅଧାପକ ଡ଼କ୍ଟର ଶ୍ରୀଚରଣ ମହାନ୍ତି ଏବଂ ବନ୍ଧୁ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରଫେସର ଗଣେଶ ପ୍ରସାଦ ଦାସଙ୍କର ମୂଲ୍ୟବାନ୍ ପରାମର୍ଶ ଲାଭ କରିଥିବା ହେତୁ ଦୁଇ ବନ୍ଧୁଙ୍କ ପାଖରେ ଆନ୍ତରିକ କୃତଜ୍ଞତା ଜଣାଉଅଛି। ମୋ ନାତି 'ଦୀପମ୍ ଜ୍ୟୋତି' ଏବଂ ନାତୁଣୀ 'ସାୟମ୍ ସ୍ମୃତି' ମୋ ଜୀବନର ଅନାବନା ଗପ ଜାଣିବା ପାଇଁ ଚାହିଁଥିବାରୁ ଏବଂ ପୁସ୍ତକଟି ରଚନା କରିବାରେ ଉତ୍ସାହ ପ୍ରଦାନ କରିଥିବାରୁ ସେ ଦୁହିଁଙ୍କ ପାଖରେ ଅନ୍ତରଭରା ସ୍ନେହ ଅଜାଡ଼ି ଦେଉଛି।

- ଗଣେଶ୍ୱର ଦାସ

ଗଣେଶ୍ୱର ଦାସ (୧୯୩୩)ଙ୍କର ଜନ୍ମ ବିହାରର ପାଟନା ସହରରେ । ରେଭେନ୍ସା କଲିଜିଏଟ୍ ସ୍କୁଲ, ରେଭେନ୍ସା କଲେଜ୍ ଏବଂ ବନାରସ୍ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ଅଶେଷ କୃତିତ୍ୱର ସହ ଶିକ୍ଷା ସମାପ୍ତି ପରେ ସେ ରାଜ୍ୟର ପ୍ରମୁଖ୍ୟ ସରକାରୀ କଲେଜମାନଙ୍କରେ ଅଧ୍ୟାପକ, ପ୍ରାଧ୍ୟାପକ, ଉପାଧ୍ୟକ୍ଷ ଓ ଦୀର୍ଘକାଳ ପାଇଁ ପ୍ରଫେସର ଗ୍ରେଡ୍ ଅଧ୍ୟକ୍ଷ ଭାବରେ ଦାୟିତ୍ୱ ତୁଲାଇ ଅବସର ଗ୍ରହଣ କରିଛନ୍ତି ।

ପ୍ରଫେସର ଦାସ ଓ ଦାର୍ଶନିକ ପ୍ରଫେସର ହୃଦାନନ୍ଦ ରାୟଙ୍କ ମିଳିତ ଭାବରେ ଲିଖିତ ୪୫୦ ପୃଷ୍ଠା ବିଶିଷ୍ଟ "ପାଶ୍ଚାତ୍ୟ ଦର୍ଶନର ଇତିହାସ" ପୁସ୍ତକଟି ଛାତ୍ର ତଥା ଅଧ୍ୟାପକ ମହଲରେ ଉଚ୍ଚ ପ୍ରଶଂସିତ । ବିଶିଷ୍ଟ ଶିକ୍ଷାନୁଷ୍ଠାନମାନଙ୍କରେ ସୁଚିନ୍ତିତ ବିଶ୍ଳେଷଣ କରି ପ୍ରଫେସର ଦାସଙ୍କ ଦ୍ୱରା ଲିଖିତ ଅନେକ ଗୁଡ଼ିଏ ଉପାଦେୟ ପ୍ରବନ୍ଧ ଦୈନିକ 'ସମାଜ' ତଥା ଅନ୍ୟାନ୍ୟ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଅଛି । ନିଜ ପରିବାର ସଦସ୍ୟମାନଙ୍କ ଉଦ୍ଦେଶ୍ୟରେ ତାଙ୍କ ରଚିତ କବିତାମାନଙ୍କର ଏକ ନୂତନ ଢାଞ୍ଚାରେ ସଂକଳନ କରାହୋଇଛି "ବୈକୁଣ୍ଠ ସମାନ ଆହା ଅଟେ ସେହି ଘର" ପୁସ୍ତକଟିରେ । ନିଜର ଉଚ୍ଚକୋଟିର ଅଧ୍ୟାପନା ଏବଂ ପ୍ରଶାସନିକ ଦକ୍ଷତା ଦ୍ୱାରା ପ୍ରଶଂସାଭାଜନ ହୋଇଥିବା ସୁପରିଚିତ ଦାର୍ଶନିକ ପ୍ରଫେସର ଗଣେଶ୍ୱର ଦାସଙ୍କର ବହୁ କାଳର ବହୁ ଅଭିଜ୍ଞତାକୁ ନେଇ ଗଢିଉଠିଛି "ମନେ ପଡ଼େ" ।

# ପାଶ୍ଚାତ୍ୟ ଦର୍ଶନର ଇତିହାସ
## (ଆଧୁନିକ ଯୁଗ)

ଲେଖକ ଦ୍ୱୟ

**ଶ୍ରୀ ହୃଦାନନ୍ଦ ରାୟ,** ଏମ୍.ଏ (ବନାରସ)

ରିଡ଼ର, ଦର୍ଶନ ବିଭାଗ, ରେଭେନ୍‌ସା କଲେଜ, କଟକ

**ଶ୍ରୀ ଗଣେଶ୍ୱର ଦାସ,** ଏମ୍.ଏ (ବନାରସ)

ରିଡ଼ର, ଦର୍ଶନ ବିଭାଗ, ବି.ଜେ.ବି. କଲେଜ ଭୁବନେଶ୍ୱର

ପ୍ରକାଶକ :

**ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା**

**ପୁସ୍ତକ ଭବନ, ଭୁବନେଶ୍ୱର**

# ତୃତୀୟ ମୁଦ୍ରଣର ମୁଖବନ୍ଧ

ବିଶେଷ ଆନନ୍ଦର କଥା ଯେ, ହୃଦାନନ୍ଦ ରାୟ ଓ ଗଣେଶ୍ୱର ଦାସଙ୍କ ଦ୍ୱାରା ପ୍ରଣୀତ "ପାଶ୍ଚାତ୍ୟ ଦର୍ଶନର ଇତିହାସ" (ଆଧୁନିକ ଯୁଗ) ପୁସ୍ତକଟିର ଆଦର ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ଏଣୁ ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଦ୍ୱାରା ବର୍ତ୍ତମାନ ଏହାର ତୃତୀୟ ମୁଦ୍ରଣ ପ୍ରକାଶ ପାଇବାକୁ ଯାଉଛି । ଏହା ଛାତ୍ରଛାତ୍ରୀ, ଅଧ୍ୟାପକ, ଅଧ୍ୟାପିକା ତଥା ସାହିତ୍ୟିକଙ୍କ ମହଲରେ ବିଶେଷ ଭାବରେ ଆଦୃତ ହେବ ବୋଲି ମୋର ଆଶା ।

ତା ୧.୩.୨୦୦୫

ଡ଼କ୍ଟର ବିରଜା ପ୍ରସନ୍ନ ଦାସ
ନିର୍ଦ୍ଦେଶକ
ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ
ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର

# ପ୍ରସ୍ତାବନା

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଓଡ଼ିଶା ସରକାରଙ୍କ ଆନୁକୂଲ୍ୟରେ ୧୯୭୦ ମସିହା ମାର୍ଚ୍ଚ ୧୧ ତାରିଖରେ ସ୍ଥାପିତ ହୋଇଛି ।

**ଏହି ସଂସ୍ଥା ପ୍ରତିଷ୍ଠାର ଉଦ୍ଦେଶ୍ୟ :-**

୧) ସାଧାରଣଭାବେ ଶିକ୍ଷା ପ୍ରସାରରେ ସହାୟତା ଦାନ ଓ ଏହାର ସମୁନ୍ନତି ବିଧାନ ।

୨) ପାଠ୍ୟପୁସ୍ତକ, ଶିକ୍ଷକମାନଙ୍କ ନିମନ୍ତେ ନିର୍ଦ୍ଦେଶ ପୁସ୍ତକ, ଛାତ୍ରମାନଙ୍କ ପାଇଁ ସହାୟକ ବହି, ଶିକ୍ଷାନୁଷ୍ଠାନ ଗୁଡ଼ିକରେ ଶିକ୍ଷାଦାନ ଓ ବିଦ୍ୟାଚର୍ଚ୍ଚାର ପ୍ରସାର ଉପଯୋଗୀ ଶିକ୍ଷା ସମ୍ପର୍କିତ ସାହିତ୍ୟ, ଓଡ଼ିଶାର ଆଞ୍ଚଳିକ ଭାଷାରେ ଉଚ୍ଚଶିକ୍ଷା ନିମନ୍ତେ ଆବଶ୍ୟକ ପୁସ୍ତକ ପ୍ରଣୟନ।

୩) ଓଡ଼ିଆରେ ପାଠ୍ୟପୁସ୍ତକ ରଚନାରେ ଜ୍ଞାନୀ, ଅଭିଜ୍ଞ ଓ ପ୍ରବୀଣ ଲେଖକ ସଂଗ୍ରହ ଓ ସେମାନଙ୍କୁ ଉତ୍ସାହଦାନ, ସରକାର ଅଥବା ଅନ୍ୟାନ୍ୟ ଉପଯୁକ୍ତ କର୍ତ୍ତୃପକ୍ଷଙ୍କ ଦ୍ୱାରା ଶିକ୍ଷାର ବିଭିନ୍ନ ସ୍ତର ଓ ପାଠ୍ୟକ୍ରମ ନିମନ୍ତେ ନିର୍ଦ୍ଧାରିତ ବିଭିନ୍ନ ବିଷୟରେ ପ୍ରାମାଣିକ ବହି ଓଡ଼ିଆରେ ଅନୁବାଦ, ସରକାର ବା ଅନ୍ୟାନ୍ୟ କର୍ତ୍ତୃପକ୍ଷଙ୍କୁ ଆବେଦନ କରି ଏ ପୁସ୍ତକଗୁଡ଼ିକ ନିମନ୍ତେ ସେମାନଙ୍କୁ ଅନୁମୋଦନ ଲାଭ ।

୪) ପାଠ୍ୟପୁସ୍ତକ ପ୍ରଣୟନ ସମ୍ପର୍କରେ ଗବେଷଣାର ବ୍ୟବସ୍ଥା ଓ ଏଥିନିମନ୍ତେ ସହାୟତା, ଶିକ୍ଷାର ବିଭିନ୍ନ ପଦ୍ଧତି ସମ୍ବଳିତ ଶିକ୍ଷା ସମ୍ପର୍କିତ ସାହିତ୍ୟର ଗବେଷଣା, ଶିକ୍ଷା ବ୍ୟାପାରରେ ସହାୟତା, ସାଧାରଣ ଶିକ୍ଷାଗତ ମାନବୃଦ୍ଧିର ସହଯୋଗ ।

୫) ସାଧାରଣ ଶିକ୍ଷାଗତ ମାନର ଉନ୍ନତି-ବିଧାନ ଉଦ୍ଦେଶ୍ୟରେ ପାଠ୍ୟକ୍ରମ ଓ ଶିକ୍ଷାକ୍ରମ ବିଷୟରେ ସରକାର ଓ ଉପଯୁକ୍ତ କର୍ତ୍ତୃପକ୍ଷଙ୍କୁ ପ୍ରସ୍ତାବ ଓ ସୁପାରିଶ, ଏହାର ସୁଚିନ୍ତିତ ପରିକଳ୍ପନା ଓ ଉନ୍ନତି ନିର୍ଦ୍ଧାରଣ ।

୬) ଗ୍ରନ୍ଥାଗାର ସ୍ଥାପନ ଓ ସଂରକ୍ଷଣ ପୂର୍ବକ ସାଧାରଣତଃ ଗବେଷଣାରେ ସହାୟତା ଏବଂ ବିଶେଷ ଭାବେ ଶିକ୍ଷାକ୍ରମ, ପାଠ୍ୟକ୍ରମ ଓ ପାଠ୍ୟପୁସ୍ତକ ପ୍ରଣୟନ ସମ୍ପର୍କରେ ସୁଯୋଗ ଦାନ ।

୭) ଭାରତ ସରକାର ବା ଓଡ଼ିଶା ସରକାରଙ୍କ ଆନୁକୂଲ୍ୟରେ ଲାଭ କରୁଥିବା ଦାନପତ୍ରଗୁଡ଼ିକର ସଂରକ୍ଷଣ, ଉପଯୋଗ ଓ ସନ୍ତୋଷଜନକ ହିସାବ ରକ୍ଷା ।

୮) ପୁସ୍ତକ ଗୁଡ଼ିକର ଅବାଧ ଯୋଗାଣ ସମ୍ପର୍କରେ ଯେ କୌଣସି ଯୋଜନା କାର୍ଯ୍ୟକାରୀ କରିବା ।

ନିର୍ଦ୍ଦେଶକ
ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ
ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର

# ପ୍ରାକ୍‌କଥନ

ଜୀବନ ବିଷୟକ ଓ ବିଶ୍ୱ ବିଷୟକ ବ୍ୟାପକ ସମସ୍ୟାଗୁଡ଼ିକର ଚିନ୍ତନର ଅବକାଶରୁ ହିଁ ଦର୍ଶନର ଉତ୍ପତ୍ତି। ମନୁଷ୍ୟ ଓ ପ୍ରକୃତିକୁ ଅଧ୍ୟୟନ କରୁଥିବା ବିଜ୍ଞାନ ବିଶେଷର ଏକ ପରିଣତ ପର୍ଯ୍ୟାୟରେ ଅନିବାର୍ଯ୍ୟ ଭାବରେ ଦାର୍ଶନିକ ପ୍ରଶ୍ନଗୁଡ଼ିକର ଉଦ୍ଭବ ଘଟିଥାଏ । ବିଷୟବସ୍ତୁ ନିର୍ବାଚନ, ପଦ୍ଧତିର ନିର୍ବାଚନ ଓ ପ୍ରୟୋଗ, ବ୍ୟବହୃତ ସମ୍ପ୍ରତ୍ୟୟଗୁଡ଼ିକର ଅର୍ଥ ନିର୍ଦ୍ଧାରଣ ସମୀକ୍ଷଣ ତଥା ପ୍ରାୟୋଗିକ କ୍ଷେତ୍ରର ସୀମା ନିରୂପଣ ଆଦି ସମସ୍ୟାଗୁଡ଼ିକରେ ଦର୍ଶନ ବିଚାର ଲୁକ୍‌କାୟିତ ହୋଇ ରହିଥାଏ। ଅରଣିରେ ଅଗ୍ନି ପ୍ରଚ୍ଛନ୍ନ ହୋଇ ରହିଲା ପରି ଆପାତ ନିରୀହ ବୈଜ୍ଞାନିକ ପ୍ରଶ୍ନଗୁଡ଼ିକରେ ଦାର୍ଶନିକ ସମସ୍ୟାଗୁଡ଼ିକ ନିହିତ ଥାଏ। ସେଥିପାଇଁ ଗଣିତ, ବିଜ୍ଞାନ, ଇତିହାସ, ସାହିତ୍ୟ ଆଦି ସକଳ କ୍ଷେତ୍ରରେ ଦର୍ଶନର ଅପରିହାର୍ଯ୍ୟ ଆବଶ୍ୟକତା ବୋଧ ହୋଇଥାଏ। ଏଭଳି କୌଣସି ବିଦ୍ୟା ନାହିଁ, ଯାହାର ବିଷୟବସ୍ତୁର ବିଚାର ପ୍ରସଙ୍ଗରେ ଦାର୍ଶନିକ ଚିନ୍ତନର ପ୍ରାସଙ୍ଗିକତାକୁ ଅସ୍ୱୀକାର କରି ହେବ।

ଜୀବନର ଗଭୀରତମ ପ୍ରୟୋଜନରୁ ଦର୍ଶନର ଉତ୍ପତ୍ତି ବୋଲି ବହୁ ଚିନ୍ତାଶୀଳ ବ୍ୟକ୍ତି ମତବ୍ୟକ୍ତ କରିଅଛନ୍ତି। ବଞ୍ଚିବାକୁ ହେଲେ, ପରସ୍ଥିତିକୁ ମୁକାବିଲା କରିବାକୁ ହେଲେ, ଚିନ୍ତା କରିବାକୁ ପଡ଼ିବ । ଚିନ୍ତାର ମୌଳିକ ସୂତ୍ରଗୁଡ଼ିକୁ ଅନୁସରଣ କରୁ କରୁ ଅଜାଣତରେ ଆମେ ବ୍ୟାପକ ଦାର୍ଶନିକ ସମସ୍ୟାଗୁଡ଼ିକର ସମ୍ମୁଖୀନ ହୋଇଥାଉ । ତେଣୁ ଦର୍ଶନକୁ ଆମ ଅଧ୍ୟୟନର ବିଷୟଗୁଡ଼ିକ ମଧ୍ୟରେ ଗୋଟିଏ ବିଷୟ - ବିଶେଷ ବୋଲି ଧରିନେବା ଏକ ପ୍ରମାଦପୂର୍ଣ୍ଣ ଧାରଣା । ଦର୍ଶନ, ଉଚିତ ଅର୍ଥରେ , ଅଧ୍ୟୟନର ସକଳ ବିଷୟଗୁଡ଼ିକର ଆତ୍ମଗତ ବିଷୟ ଅଟେ।

ଅନ୍ୟାନ୍ୟ ବିଦ୍ୟାଠାରୁ ଦର୍ଶନ ବିଦ୍ୟାର ଏକ ପାର୍ଥକ୍ୟ ଲକ୍ଷ୍ୟ କରାଯାଇପାରେ । "ପଦାର୍ଥ ବିଦ୍ୟା ବା ରସାୟନ ବିଦ୍ୟା କଅଣ ?" ଏହି ପ୍ରଶ୍ନର ମୀମାଂସା ପଦାର୍ଥ ବିଦ୍ୟା କିମ୍ବା ରସାୟନ ବିଦ୍ୟାର ବିଷୟବସ୍ତୁଗତ ବିଷୟ ନୁହେଁ । କିନ୍ତୁ "ଦର୍ଶନ କଅଣ ?" ଏହି ପ୍ରଶ୍ନର ମୀମାଂସା ଦର୍ଶନର ବିଷୟବସ୍ତୁଗତ ବିଷୟ । ଦର୍ଶନର ସଂଜ୍ଞା ନିରୂପଣ କଥା ଦୂରେଥାଉ ଏପରିକି ସଂଜ୍ଞାର ସଂଜ୍ଞା ନିରୂପଣ କରିବାକୁ ଚେଷ୍ଟା କରିବ ? ଏଥିରୁ ସ୍ପଷ୍ଟ ପ୍ରତୀତ ହେଉଛି ଯେ, ଦାର୍ଶନିକ ବିଷୟବସ୍ତୁ ହେଉଛି "ସମୟ ବିଷୟ" କିନ୍ତୁ ଏହି ମନ୍ତବ୍ୟର ସତ୍ୟାସତ୍ୟ ନିର୍ଣ୍ଣୟ ମଧ୍ୟ ଏକ ଦାର୍ଶନିକ ବିଷୟ। ତେଣୁ କୌଣସି ଗୋଟିଏ ସିଦ୍ଧାନ୍ତରେ ଦାର୍ଶନିକମାନେ ଏକମତ ହେବେ, ଏହା ନିର୍ବିବାଦରେ କୁହାଯାଇ ନ ପାରେ। ଏକମତ ନ ହେବା ପାଇଁ ସତେ ଯେପରି ଦାର୍ଶନିକମାନେ ଏକମତ ହୋଇଛନ୍ତି। ଏଥିପାଇଁ ଦର୍ଶନର ବିଚାର କ୍ଷେତ୍ରକୁ "ଚିର ଅମୀମାଂସିତ ରଣାଙ୍ଗନ" ବୋଲି ଆଖ୍ୟାତ କରାହୋଇଛି। କେହି କେହି କହନ୍ତି, ଏ ଅବସ୍ଥା ହେଉଛି ଦର୍ଶନର ଚରମ ନୈରାଶ୍ୟ । ବୈଜ୍ଞାନିକ କ୍ଷେତ୍ରରେ ବୈଜ୍ଞାନିକମାନେ ଏକମତ ହେବା ପାଇଁ ବିଚାର ବିଶ୍ଳେଷଣରେ ପ୍ରବୃତ୍ତ ହୋଇଥା'ନ୍ତି । ସାର୍ବଜନୀନ ସିଦ୍ଧାନ୍ତଗୁଡ଼ିକୁ ଉଦ୍‌ଘାଟନ କରି ତହିଁରେ ଏକମତ ହେବା ବୈଜ୍ଞାନିକମାନଙ୍କର ଉଦ୍ଦେଶ୍ୟ। କିନ୍ତୁ କୌଣସି ସିଦ୍ଧାନ୍ତରେ ଏକମତ ନ ହେବା ପାଇଁ ବରଂ ବ୍ୟବସ୍ଥା କରିବା ସତେ ଯେପରି ଦାର୍ଶନିକମାନଙ୍କର ଉଦ୍ଦେଶ୍ୟ । ଏଥିରୁ ବୈଜ୍ଞାନିକ ଓ ଦାର୍ଶନିକମାନଙ୍କ ମଧ୍ୟରେ ଯେତେ ଭେଦ ସୂଚିତ ହେଉନାହିଁ, ବିଜ୍ଞାନ ଓ ଦର୍ଶନ ମଧ୍ୟରେ ତତୋଽଧିକ ଭେଦ ସୂଚିତ ହେଉଛି । ଦର୍ଶନ ବିଜ୍ଞାନ ନୁହେଁ । ତେଣୁ ବିଜ୍ଞାନଠାରୁ ଆମେ ଯାହା ଆଶାକରୁ, ଦର୍ଶନଠାରୁ ତାହା ଅଶା କଲେ ଆମକୁ ନିରାଶ ହେବାକୁ ପଡିବ ।

ତେବେ ପ୍ରଶ୍ନ ହେବ, "ଦର୍ଶନ କଅଣ ?" କେହି କେହି ଦାର୍ଶନିକ କହନ୍ତି, ଦର୍ଶନ ହେଉଛି ବିଜ୍ଞାନ । ବୈଜ୍ଞାନିକ ପଦ୍ଧତି ହେଉଛି ଦାର୍ଶନିକ ପଦ୍ଧତି । ଆଉ କେହି କେହି କହନ୍ତି ଯେ, ଦର୍ଶନ ହେଉଛି ଏକ ଅପ-ବିଜ୍ଞାନ। ଦାର୍ଶନିକ ସମସ୍ୟାଗୁଡ଼ିକ ବୈଜ୍ଞାନିକ ସମସ୍ୟା ପରି ସମାଧାନ ଯୋଗ୍ୟ ନୁହନ୍ତି । ସେଗୁଡ଼ିକ ଅପ ସମସ୍ୟା। ତେଣୁ ସେଗୁଡ଼ିକର ସମାଧାନ ନ ଲୋଡ଼ି ସେଗୁଡ଼ିକୁ ନିରାକରଣ କରିବା ଆମର କାର୍ଯ୍ୟ । ଅନ୍ୟ ପକ୍ଷରେ ଦାର୍ଶନିକମାନେ କହନ୍ତି, ଦର୍ଶନ ହେଉଛି ପରା-ବିଜ୍ଞାନ । ଏହି ପରା-ବିଜ୍ଞାନ ବଳରେ ପରା-ବସ୍ତୁଗୁଡ଼ିକର ସନ୍ଧାନ ମିଳିଥାଏ । ପ୍ରାକୃତ ଜଗତରେ ପ୍ରାକୃତିକ ବିଜ୍ଞାନର ଯେଉଁ ଅଧିକାର ଅତି-ପ୍ରାକୃତ ବା ପରା-ପ୍ରାକୃତ ଜଗତରେ ଦର୍ଶନର ସେହି ଅଧିକାର ରହିଛି । ନୈତିକ ଓ ଆଧାତ୍ମିକ ବିଷୟରେ ମୀମାଂସା ପାଇଁ ଦର୍ଶନ ଉଦ୍ଦିଷ୍ଟ । ଆଉ କାହାରି ମତରେ, ଦର୍ଶନ ହେଉଛି ଗଣିତ। ଦାର୍ଶନିକ ପଦ୍ଧତି ହେଉଛି ଗାଣିତିକ ପଦ୍ଧତି । କେହି କେହି କହନ୍ତି, ଦର୍ଶନ ହେଉଛି ସାହିତ୍ୟ । ସାହିତ୍ୟିକର ଦୃଷ୍ଟି ଓ ସୃଷ୍ଟିପରି ଦାର୍ଶନିକ ଦୃଷ୍ଟି ଓ ସୃଷ୍ଟିର ନିଜସ୍ୱ-ସ୍ୱତନ୍ତ୍ରତା ରହିଛି । ଏହି

ସମସ୍ତ ମତବାଦ ଓ ମନ୍ତବ୍ୟକୁ ବସ୍ତୁ କରି ବିଚାର-ବିଶ୍ଳେଷଣାରେ ପ୍ରବୃତ୍ତ ହେବା ମଧ୍ୟ ଦର୍ଶନ । ଦର୍ଶନର ସ୍ୱରୂପ, ପଦ୍ଧତି ଓ ସିଦ୍ଧାନ୍ତଗତ ମତବାଦଗୁଡ଼ିକର ସମୀକ୍ଷଣ ମଧ୍ୟ ଏକ ଦାର୍ଶନିକ କାର୍ଯ୍ୟ ।

ତେଣୁ ଦର୍ଶନ କ୍ଷେତ୍ରର ବହିର୍ଭୂମିରେ ଠିଆ ହୋଇ ଆମେ ଦର୍ଶନକୁ ବିଚାର କରିପାରିବ ନାହିଁ । ଦର୍ଶନର ବହିରଙ୍ଗ ସମାଲୋଚନା ବା ସମୀକ୍ଷା ସମ୍ଭବପର ନୁହେଁ । ଦର୍ଶନ ବିଷୟରେ କିଛି କହିବାକୁ ଚେଷ୍ଟା କରିବାକ୍ଷଣି ଆମକୁ ଦର୍ଶନରେ ହିଁ ପ୍ରବେଶ କରିବାକୁ ପଡ଼ିବ । ପାଣିରେ ନ ପଶି ପହଁରିବା ସମ୍ଭବପର ହେବ ନାହିଁ । ଯେଉଁମାନେ ଦର୍ଶନ ବା ଦାର୍ଶନିକମାନଙ୍କ ବିଷୟରେ କିଛି ନା କିଛି ମନ୍ତବ୍ୟ ଦିଅନ୍ତି, ସେମାନେ ମଧ୍ୟ ଆମର "ଦାର୍ଶନିକ ଭାଇ" । ସେମାନେ ଆମ ଦାର୍ଶନିକ ଭ୍ରାତୃଗୋଷ୍ଠୀର ସଭ୍ୟ । ବାସ୍ତବବାଦ, ପ୍ରତ୍ୟୟବାଦ, ମତାନ୍ଧବାଦ, ସଂଶୟବାଦ, ଅଜ୍ଞେୟବାଦ, ଶୂନ୍ୟବାଦ, ପୂର୍ଣ୍ଣବାଦ, ଆପେକ୍ଷିକବାଦ, ପରମବାଦ, ପ୍ରତ୍ୟକ୍ଷବାଦ, ପରୋକ୍ଷବାଦ, ଦ୍ୱୈତବାଦ, ଅଦ୍ୱୈତବାଦ, ଜଡ଼ବାଦ, ଆଧାତ୍ମବାଦ ଆଦି ସକଳବାଦ ହେଉଛି ଦର୍ଶନର ଅନ୍ତର୍ବର୍ତ୍ତୀ । ସତେ ଯେପରି ଦର୍ଶନ ହେଉଛି ଏକ ସୁବିଶାଳ ବୌଦ୍ଧିକ ସାଧାରଣତନ୍ତ୍ର ଯାହା ସକଳ ପ୍ରକାର 'ବାଦ'ର ନିର୍ବିବାଦ ବିଶ୍ରାମ ଓ ସଂଗ୍ରାମ ଭୂମି ।

ଏହି ସୁବିଶାଳ ବୌଦ୍ଧିକ ସାଧାରଣତନ୍ତ୍ରର ବହୁରଙ୍ଗ ଶୋଭିତ କଳେବର ହେଉଛି ଦର୍ଶନଶାସ୍ତ୍ରର ଇତିହାସ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସମ୍ମିଳିତ ସମ୍ଭାବନାରେ ପରିପୁଷ୍ଟ, ନିତ୍ୟ ବର୍ଦ୍ଧିଷ୍ଣୁ, ପ୍ରବହମାନ ଇତିହାସର ଏକ ଅବିଚ୍ଛେଦ୍ୟ ଅଙ୍ଗ । ସୁପ୍ରାଚୀନ ଗ୍ରୀକ୍ ଦର୍ଶନ ରୂପେ ଏହାର ଉଦ୍ଭବ ଘଟିଛି ପ୍ରାୟ ଅଢ଼େଇ ହଜାର ବର୍ଷ ତଳେ । ନାନା "ବାଦ" ର କ୍ରିୟା, ପ୍ରତିକ୍ରିୟା, ସଂଘର୍ଷ ଓ ସମନ୍ୱୟ ଫଳରେ ପାଶ୍ଚାତ୍ୟ ଦର୍ଶନ ଇତିହାସର ମାର୍ଗ ପ୍ରସ୍ତୁତ ହୋଇଛି । ପାଶ୍ଚାତ୍ୟ ଦର୍ଶନର ଆଧୁନିକ କାଳର ଏକ ଅଧ୍ୟୟନ ଉପସ୍ଥାପନ କରିବା ପାଇଁ ଏ ଗ୍ରନ୍ଥ ଉଦ୍ଦିଷ୍ଟ । ବେକନ୍‌ଙ୍କଠାରୁ କଣ୍ଟ୍‌ଙ୍କ ପର୍ଯ୍ୟନ୍ତ ଆଠଜଣ ସୁପ୍ରସିଦ୍ଧ ଦାର୍ଶନିକଙ୍କ ଚିନ୍ତାଧାରାକୁ ସୁସମ୍ବଦ୍ଧ ଭାବରେ ପ୍ରଥମଥର ଲାଗି ଓଡ଼ିଆ ଭାଷାରେ ପ୍ରକାଶ କରିବାକୁ ଏ ଗ୍ରନ୍ଥର ଲେଖକ ଦ୍ୱୟଙ୍କୁ ବହୁଶ୍ରମ ସ୍ୱୀକାର କରିବାକୁ ପଡ଼ିଛି । ଅଧ୍ୟୟନ ଲିପ୍‌ସୁ ତରୁଣ ଛାତ୍ରସମାଜ, ଜିଜ୍ଞାସୁ ଉଦୀୟମାନ ଦାର୍ଶନିକମାନଙ୍କ ପ୍ରୟୋଜନକୁ ଏ ଗ୍ରନ୍ଥ ଆସିପାରିଲେ ଲେଖକଦ୍ୱୟ ତା'ଙ୍କ ଶ୍ରମ ସାର୍ଥକ ମଣିବେ ।

ପାଶ୍ଚାତ୍ୟ ଦର୍ଶନର ଇତିହାସର ପ୍ରଣେତା ହେଗେଲର, ଏଡ଼ମାନ୍ ଫଲକେନ୍‌ବର୍ଗ ରସେଲ, କୋପଲ୍‌ଷ୍ଟନ୍ ଆଦି ପଥପ୍ରଦର୍ଶକମାନଙ୍କୁ ଏ ଗ୍ରନ୍ଥର ଲେଖକଦ୍ୱୟ ନିଜର କୃତଜ୍ଞତା ଜ୍ଞାପନ କରୁଅଛନ୍ତି । ଯେଉଁ ଗ୍ରନ୍ଥକାରମାନଙ୍କ ରଚନାରୁ ଆମେ ଉପାଦାନ ଆହରଣ କରିଛୁ, ଏ ଗ୍ରନ୍ଥର ପାଦଟୀକାରେ ସେମାନଙ୍କ ନାମକୁ କୃତଜ୍ଞତାର ସହିତ ଉଲ୍ଲେଖ କରିଛୁ । ପୂର୍ବସୂରି ସ୍ୱର୍ଗତ ରତ୍ନାକର ପତିଙ୍କ ପବିତ୍ର ସ୍ମୃତି ଲେଖକଙ୍କ ପାଇଁ ପ୍ରେରଣାର ଉତ୍ସ ରୂପେ କାର୍ଯ୍ୟ କରିଛି ।

ଉତ୍କଳ ବିଶ୍ୱବିଦ୍ୟାଳୟ ଦର୍ଶନ ବିଭାଗର ମୁଖ୍ୟ ଅଧ୍ୟାପକ ଡ଼କ୍ଟର ଗଣେଶ୍ୱର ମିଶ୍ର, ଏମ.ଏ., ପିଏଚ୍.ଡ଼ି, କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗ ମୁଖ୍ୟ ଅଧ୍ୟାପକ ଡ଼କ୍ଟର ରମାକାନ୍ତ ତ୍ରିପାଠୀ ଏମ୍.ଏ., ଡ଼ି.ଲିଟ୍, ଏବଂ କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ଅବସରପ୍ରାପ୍ତ ଗାଏକୋବାଡ଼ ଅଧ୍ୟାପକ ଡ଼କ୍ଟର ଟି.ଆର.ଭି.ମୂର୍ତ୍ତି ଏମ୍.ଏ.ଡ଼ି.ଲିଟ୍.ଙ୍କ ଚରଣତଳେ ବସି ଲେଖକ ଦ୍ୱୟ ଏକଦା ଦର୍ଶନଶାସ୍ତ୍ରର ଇତିହାସ ଅଧ୍ୟୟନର ସୌଭାଗ୍ୟ ଲାଭ କରିଥିଲେ । ଏହି ଗ୍ରନ୍ଥ ପ୍ରକାଶ ଅବସରରେ ଗୁରୁମାନଙ୍କ ପ୍ରତି ଲେଖକଦ୍ୱୟ ଗଭୀର କୃତଜ୍ଞତା ଜ୍ଞାପନ କରୁଛନ୍ତି ।

ଏଗ୍ରନ୍ଥର ସମୀକ୍ଷକ ଅଧ୍ୟାପକ ସ୍ମୃତିରଞ୍ଜନ ମୁଖାର୍ଜୀ ଓ ଭାଷାବିଶେଷଜ୍ଞ ଡ଼କ୍ଟର ଧନେଶ୍ୱର ମହାପାତ୍ର ଏମ.ଏ., ପି.ଏଚ୍.ଡ଼ି.ଙ୍କ ପ୍ରତି ଲେଖକଦ୍ୱୟ ଚିରକୃତଜ୍ଞ ।

ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାର ପୂର୍ବତନ ନିର୍ଦ୍ଦେଶକ, ଆମର ଶିକ୍ଷାଗୁରୁ ଡ଼କ୍ଟର ଶ୍ରୀନିବାସ ସାହୁ ଏମ.ଏ., ଡ଼ି.ଫଲ୍.ଙ୍କ ସସ୍ନେହ-ତାଡ଼ନା ଓ ପ୍ରୋତ୍ସାହନ ଫଳରେ ଏ ଗ୍ରନ୍ଥ ଯେ ଦିବାଲୋକ ଦର୍ଶନ କରିଛି, ଏହା କୃତଜ୍ଞତାର ସହିତ ଆମେ ଲିପିବଦ୍ଧ କରୁଛୁ । ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାର ଅଧୁନା ନିର୍ଦ୍ଦେଶକ ଡ଼କ୍ଟର ଗଦାଧର ମିଶ୍ର ଏମ୍.ଏ., ପି.ଏଚ୍.ଡ଼ି ଆମର ବହୁମନ୍ତେ ଧନ୍ୟବାଦାର୍ହ ଅଟନ୍ତି । ପ୍ରେସ୍‌ର ଯେଉଁ କର୍ମଚାରୀମାନେ ଏ ଗ୍ରନ୍ଥର ମୁଦ୍ରଣ କାର୍ଯ୍ୟ ଆଗ୍ରହର ସହିତ ସମ୍ପାଦନ କରିଛନ୍ତି, ତା'ଙ୍କୁ ଆମେ ଧନ୍ୟବାଦ ଅର୍ପଣ କରୁଛୁ ।

ଏକାଧିକ ଲେଖା ମିଳିତଭାବରେ ଦର୍ଶନ ବିଷୟକ ଗ୍ରନ୍ଥ ରଚନା କରିବା ଅନେକ ସମୟରେ ସୁବିଧାଜନକ ନୁହେଁ; କିନ୍ତୁ ସମମନୋବୃତ୍ତି, ସମଶିକ୍ଷା ଓ ସର୍ବୋପରି ସହୃଦୟତାଜନିତ ପାରସ୍ପରିକ ବୁଝାବଣା ହେତୁ ଏ ଗ୍ରନ୍ଥର ଲେଖକଦ୍ୱୟ କୌଣସି ଅସୁବିଧାର ସମ୍ମୁଖୀନ ହୋଇ ନାହାନ୍ତି । ଏ ଗ୍ରନ୍ଥର ପ୍ରତ୍ୟେକ ଅଂଶ ପାଇଁ ଉଭୟ ଲେଖକ ସମଭାବରେ ଦାୟୀ । ଯଥାସାଧ୍ୟ ଯତ୍ନ ସତ୍ତ୍ୱେ କେତେକ ମୁଦ୍ରଣଗତ ପ୍ରମାଦ ହୁଏତ ରହିଥାଇପାରେ । ସେଥିପାଇଁ ସୁଧୀଜନ ଆମକୁ କ୍ଷମା ଦେବେ ବୋଲି ଆଶା ।

ଆମେ ଲେଖକଦ୍ୱୟ ନିଜର ଯୋଗ୍ୟତା ଓ ସାମର୍ଥ୍ୟର ସସୀମତା ପ୍ରତି ପୂର୍ଣ୍ଣ ଅବହିତ ରହି ବିନୟର ସହିତ ଗ୍ରନ୍ଥକୁ ସହୃଦୟ ପାଠକ ପାଠିକାଙ୍କ ହାତରେ ଅର୍ପଣ କରୁଛୁ । ଆଶାକରୁ, ଏହା ସାଦରେ ଗୃହୀତ ହେବ ।

ଶ୍ରୀ ହୃଦାନନ୍ଦ ରାୟ
ଶ୍ରୀ ଗଣେଶ୍ୱର ଦାସ

ଯାହା ଲେଖି ହୋଇଗଲା, ଲେଖି ହୋଇଗଲା
ହୁଏତ ଏହା ଆହୁରି ଭଲ ହୋଇପାରିଥା'ନ୍ତା — ବାଇରନ

What is Writ is Writ
Would it Been Worthier — Byron




ବିଦ୍ୟା ଶିକ୍ଷାର ପର୍ଯ୍ୟାୟବାଚୀ ଶବ୍ଦ ହୋଇପାରେ : କିନ୍ତୁ ଏହାର ଇଂରାଜୀ ଅନୁବାଦ ଆଦୌ ଏଡୁକେସନ୍ ନୁହେଁ ।ଏଡୁକେସନ୍ ମାଧ୍ୟମରେ ଛାତ୍ରଛାତ୍ରୀଙ୍କୁ ଆମେ ଭୌତିକ ଶିକ୍ଷା ଦେଉଛୁ : କିନ୍ତୁ ବିଦ୍ୟା ଦ୍ୱାରା ମଣିଷ ଭିତରେ ଥିବା ପ୍ରଜ୍ଞାର ବିସ୍ଫୋରଣ ହୁଏ ଏବଂ ତା' ଭିତରେ ପରିପୂର୍ଣ୍ଣତାର ପରିପ୍ରକାଶ ହୁଏ । ସେଥିପାଇଁ ସ୍ୱାମୀ ବିବେକାନନ୍ଦ କହୁଥିଲେ "ଶିକ୍ଷା ମାନେ ମଣିଷ ଭିତରେ ପରିପୂର୍ଣ୍ଣତାର ପ୍ରକାଶ" ।

ସମାଜ ଚିନ୍ତାକଣ୍ଠ - ୧୩.୦୪.୨୦୦୧

University education in India is in a state of crisis. It is not a crisis of lack of resources. It is deterioration is quality.-

**Nobel Laureate Amartya Sen.**

Education Produces good men and good men act nobly.

**- Plato.**

"Anyone looking at Viswa Bharati will agree that is has, as a result of centralisation, lost whatever philosophical vision Rabindra Nath Tagore had put forward when he established it. The same fate has overtaken BHU also because of its having to toe the line laid down by the UGC for its funding."

From the article on "Uniformity kills initiatives for innovation and excellence." by Anand Swarup Former Secretary, Education, Govt. of India

# ମୁଖବନ୍ଧ

ଉଚ୍ଚଶିକ୍ଷା ଓ ଆନୁଷଙ୍ଗିକ କେତେକ ବିଷୟରେ ଲେଖା ହୋଇଥିବା ବହୁ ମୂଲ୍ୟବାନ ତଥ୍ୟ-ସମ୍ବଳିତ "ନୂତନ ଆହ୍ୱାନ, ଜଗତୀକରଣ ଓ ଆଧୁନିକ ଉଚ୍ଚଶିକ୍ଷା" ବହିଟି ଖୁବ୍ ଆନନ୍ଦର ସହିତ ପଢ଼ିଲି । ଲେଖକ ଗଣେଶ୍ୱର ବାବୁ ଦର୍ଶନଶାସ୍ତ୍ରର ଜଣେ ବରିଷ୍ଠ ଅଧ୍ୟାପକ ତଥା ଜଣେ ଦକ୍ଷ ଅଧ୍ୟକ୍ଷ ଭାବରେ ଅବସର ନେଲେ । ଆଜି ଓଡ଼ିଶାର ଅଗଣିତ ପାଠକ ଓ ବୁଦ୍ଧିଜୀବିଙ୍କ ଆଖିରେ ସେ ଜଣେ ବିଜ୍ଞ ଓ ବିଚକ୍ଷଣ ପତ୍ରକାର । ମୋ ପାଇଁ ସେ ଅର୍ଦ୍ଧ ଶତାବ୍ଦୀର ଊର୍ଦ୍ଧ୍ୱକାଳର ଅତି ନିଜର ବନ୍ଧୁ । କଟକ ରେଭେନ୍ସା କଲେଜରେ ୪ ବର୍ଷ ଏକାଠି ପଢ଼ିଥିଲୁ । ତା'ପରେ ସେ ଗଲେ ବି.ଏଚ.ୟୁ (ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ) ଦର୍ଶନଶାସ୍ତ୍ରରେ ଏମ୍.ଏ ପଢ଼ିବା ପାଇଁ । ମୁଁ ରହିଲି ରେଭେନ୍ସାରେ । ତା'ପରେ କିଛି ସମୟ ପାଇଁ ଉଭୟେ ରେଭେନ୍ସା କଲେଜରେ ଅଧ୍ୟାପକ ଥିଲୁ ।

କିଛି ବର୍ଷ ତଳେ ବାଣୀବିହାରରେ ମୋର ଅବସ୍ଥାନ କାଳରେ ପୁଣି ଦେଖା ସାକ୍ଷାତର ସୁଯୋଗ ମିଳିଲା । ତାଙ୍କର ଅନେକ ଗୁଡ଼ିଏ ଲେଖା ପଢ଼ିବାର ଓ ବିଭିନ୍ନ ବିଷୟରେ ତାଙ୍କ ସହିତ ଆଲୋଚନା କରିବାର ସୁଯୋଗ ପାଇ ମୁଁ ଖୁବ୍ ଖୁସି ହେଲି । କେତୋଟି ଲେଖା ଏକାଠି କରି ଆଜି ଏ ବହିଟି ସୃଷ୍ଟି ହୋଇଛି । ମୋ ପାଇଁ ତାହା ଖୁବ୍ ଆନନ୍ଦ ଓ ଗର୍ବର କଥା । ଅନେକ ସୁଧୀ ପାଠକ ଏ ବହିଟି ପଢ଼ି ନିଶ୍ଚୟ ଉପକୃତ ହେବେ ।

ଓଡ଼ିଶା ପ୍ରଦେଶ ତଥା ଭାରତବର୍ଷର ଉଚ୍ଚଶିକ୍ଷା ଅନୁଷ୍ଠାନମାନଙ୍କରେ ଉପୁଜିଥିବା ଆଜିର ପରିସ୍ଥିତି, ଛାତ୍ର, ଛାତ୍ରୀ ଓ ଅଧ୍ୟାପକ ଅଧ୍ୟାପିକାମାନଙ୍କର ମାନସିକ ବାତାବରଣ, ଉଚ୍ଚଶିକ୍ଷା ସମାପ୍ତ ପରେ ଯୁବସମାଜର ଭବିଷ୍ୟତ ଓ ଉଚ୍ଚଶିକ୍ଷା ପ୍ରାପ୍ତିରୁ ବଞ୍ଚିତ ହୋଇଥିବା ଅସଂଖ୍ୟ ଜନସମାଜର ମାନସିକତା ଇତ୍ୟାଦି କେତେକ ପ୍ରୟୋଜନୀୟ ବିଷୟର ଅନୁଶୀଳନ ଏ ବହିରେ ଥିବା ସୂଚନାଗୁଡ଼ିକରେ ଦେଖିବାକୁ ମିଳେ । ଲେଖକଙ୍କର ଆଲୋଚନାର ଶୈଳୀ ସରଳ, ସଂଯତ ଏବଂ ତୀକ୍ଷ୍ଣ । କେଉଁ କେଉଁ ସମସ୍ୟା ଉପରେ ତାଙ୍କର ଆଲୋଚନା ଓ ବ୍ୟକ୍ତିଗତ ମନ୍ତବ୍ୟ ସହିତ କେହି କେହି ଏକମତ ନ ହୋଇପାରନ୍ତି । ମାତ୍ର ତାଙ୍କର ସୁସ୍ପଷ୍ଟ ଆଲୋଚନାର ବିଶାଳତା ମାଧ୍ୟମରେ ପାଠକର ମନ ଭିତରେ ବିକଳ୍ପ ସମ୍ଭାବନାର ସୃଷ୍ଟି ହୁଏ ଯେଉଁଥି ପାଇଁ କି ମତାମତର ବିଭିନ୍ନତା ସତ୍ତ୍ୱେ ସେ ଆମର କୃତଜ୍ଞତାର ପାତ୍ର । ଉଦାହରଣ ସ୍ୱରୂପ, ଅଧ୍ୟାପକ ଦାସଙ୍କ ମତରେ ସଭ୍ୟତାର ବିକାଶ ପାଇଁ ପ୍ରାକୃତିକ ଓ ଭୌତିକ ସମ୍ବଳ ଅପେକ୍ଷା ମାନବ ସମ୍ବଳର ଆବଶ୍ୟକତା ଅଧିକ ଗୁରୁତ୍ୱପୂର୍ଣ୍ଣ । କେହି ପାଠକ ଭାବିପାରନ୍ତି, ପ୍ରାକୃତିକ ସମ୍ବଳର ଅଭାବରେ ମାନବ ସମ୍ବଳର ସର୍ବାଙ୍ଗ ବିକାଶ ସମ୍ଭବ ହୋଇ ନ ପାରେ । ପ୍ରାକୃତିକ, ଭୌତିକ ଓ ମାନବିକ କ୍ଷେତ୍ରରେ ସମନ୍ୱିତ ବିକାଶ ପାଇଁ ଉଦ୍ୟମ ହେବା ଉଚିତ । ଏ ବିକଳ୍ପ ଉପସଂହାରକୁ ଅଧ୍ୟାପକ ଦାସ ସ୍ୱାଗତ କରିବେ ବୋଲି ମୋର ବିଶ୍ୱାସ ।

ଅନୁରୂପ ଆଉ ଏକ ଚିନ୍ତାର ବିଷୟ ହେଲା ଉଚ୍ଚଶିକ୍ଷା କ୍ଷେତ୍ରରେ "ଜଗତୀକରଣ"ର ପ୍ରଭାବ । ଏ ପ୍ରଶ୍ନର ବିସ୍ତୃତ ଆଲୋଚନା ଅଧ୍ୟାପକ ଦାସ ତାଙ୍କ ବହିରେ କରିଛନ୍ତି । ଲେଖକ ଓ ଦାର୍ଶନିକ ଭାବରେ (ମୋ ଦୃଷ୍ଟିରେ) ସେ ଜଣେ ଆକାଂକ୍ଷିତ ଆଶାବାଦୀ । ଦୃଢ଼ମନରେ ଉପଯୁକ୍ତ ପ୍ରସ୍ତୁତିର ସହିତ ମିଳିତ ଭାବରେ ଆମେ ଆଗେଇ ଯାଇପାରିଲେ ଆସନ୍ତା ୧୪/୧୫ ବର୍ଷ ଭିତରେ ଓଡ଼ିଶା ତଥା ଭାରତବର୍ଷରେ ଆନ୍ତର୍ଜାତିକ ସ୍ତରର ବିକାଶ ଉପଲବ୍ଧି ହୋଇପାରିବାର ସୂଚନା ସେ ପାଇଛନ୍ତି । 'ଜଗତୀକରଣ' ପ୍ରକ୍ରିୟାର ବିଶିଷ୍ଟ ସମାଲୋଚକମାନେ ଅଧ୍ୟାପକ ଦାସଙ୍କର କଳ୍ପନା ସହିତ ହୁଏତ ଏକମତ ହୋଇନପାରନ୍ତି । ସେମାନଙ୍କ ମତରେ ସାଂସ୍କୃତିକ କ୍ଷେତ୍ରରେ 'ଜଗତୀକରଣ'ର ପ୍ରଭାବ ଏକ ପ୍ରକାର ଅଙ୍କୁଶ ପରି । ହେଲେ 'ଜଗତୀକରଣ' ବାତାବରଣ ମଧ୍ୟରୁ ଆମେ ଅଲଗା ହୋଇଯାଇ ଆମର ଅର୍ଥନୈତିକ ବା ସାଂସ୍କୃତିକ ବିଭିନ୍ନତାର ସୁରକ୍ଷା ହାସଲ କରି ପାରିବା ନାହିଁ, ଏଥିରେ ସନ୍ଦେହ ନାହିଁ ।

ଅଧ୍ୟାପକ ଦାସଙ୍କ ମତରେ ଭାରତବର୍ଷର ଲୋକସଂଖ୍ୟା ଅନୁପାତରେ ଆଜିର ପ୍ରତିଷ୍ଠିତ ଉଚ୍ଚଶିକ୍ଷା ଅନୁଷ୍ଠାନମାନଙ୍କର

ସଂଖ୍ୟା ଖୁବ୍ କମ୍। ଆସନ୍ତା କିଛି ବର୍ଷ ଭିତରେ ଆଉ ଅଧିକ କେତେକ ବିଶ୍ୱବିଦ୍ୟାଳୟର ସ୍ଥାପନା ହେବା ଉଚିତ। ଏଇ ସୁଚିନ୍ତିତ ମତ ଗ୍ରହଣ କରିବାରେ ଅନ୍ୟ କାହାରି ହୁଏତ ଦ୍ୱିଧା ହୋଇପାରେ । କେହି କହିପାରନ୍ତି ଉଚ୍ଚଶିକ୍ଷା ଅନୁଷ୍ଠାନରେ ଆଜି ଅଧ୍ୟାପନା ବା ଗବେଷଣା କରାଯାଉଥିବା ବିଷୟସୂଚୀର ଆଧୁନିକୀକରଣ ହେବା ଉଚିତ। ମହାବିଦ୍ୟାଳୟମାନଙ୍କରେ ଆଧୁନିକ ଧରଣର ପାଠାଗାର ଓ ବିଜ୍ଞାନ କର୍ମଶାଳାର ସୁବିଧା ରହିବା ଆବଶ୍ୟକ ..... ଇତ୍ୟାଦି। ଆଜିର ଛାତ୍ରଛାତ୍ରୀ ଆମ୍ଭମାନଙ୍କଠାରୁ ଅଧିକ ଅନୁସନ୍ଧିତ୍ସୁ ଓ ଜିଜ୍ଞାସୁ। ଏହା ସ୍ୱାଭାବିକ କଥା । ସେହି ଦୃଷ୍ଟିରୁ ଉଚ୍ଚଶିକ୍ଷା ଅନୁଷ୍ଠାନମାନଙ୍କରେ ଯଥେଷ୍ଟ ସଂଖ୍ୟାରେ 'ଇଣ୍ଟରନେଟ୍' ଓ ଆନୁଷଙ୍ଗିକ ଉପାଦାନ ଗଚ୍ଛିତ ରହିବା ଉଚିତ।

ସାହିତ୍ୟ, ଦର୍ଶନ ସମାଜ ବିଜ୍ଞାନ ତଥା ବିଭିନ୍ନ ପ୍ରୟୋଗମୂଳକ ବିଜ୍ଞାନ କ୍ଷେତ୍ରରେ ପ୍ରକାଶ ପାଉଥିବା ଅନେକ ଉତ୍କୃଷ୍ଟ ପତ୍ରିକା ସବୁ ଉଚ୍ଚଶିକ୍ଷା ଅନୁଷ୍ଠାନରେ ପ୍ରାପ୍ତ ହେବା ଆବଶ୍ୟକ। ଅଧ୍ୟାପନା କରିବା ପାଇଁ ଓ ଗବେଷଣାର ନେତୃତ୍ୱ ନେବା ପାଇଁ ଆନ୍ତର୍ଜାତିକ କୃତି ପ୍ରାପ୍ତ ଅଧ୍ୟାପକ ଓ ଅଧ୍ୟାପିକାଙ୍କୁ ନିଯୁକ୍ତି ମିଳିବା ଆବଶ୍ୟକ । ଅର୍ଥର ଅଭାବରେ ଏ ସବୁ ସମ୍ଭବ ହୁଏ ନାହିଁ। ଆମ ଦେଶରେ ଥିବା ଉଚ୍ଚଶିକ୍ଷା ଅନୁଷ୍ଠାନକୁ ଛାଡ଼ି ଦେଇ ବିଦେଶରେ ଅନ୍ୟ ଅନୁଷ୍ଠାନରେ ନିଯୁକ୍ତି ଖୋଜିବା ଓ ପାଇବା ସାଧାରଣ କଥା ହୋଇଯାଇଛି। ଖାଲି ଓଡ଼ିଶା ବା ଭାରତ କାହିଁକି ମୋ' ଜାଣିବାରେ ଅକ୍ସଫୋର୍ଡ, କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ଅଧ୍ୟାପକମାନେ ଆମେରିକା ଓ ଅନ୍ୟାନ୍ୟ ଦେଶକୁ ଯାଇଛନ୍ତି । ଏହି ସ୍ଥିତିରେ ପରିବର୍ତ୍ତନ ଆଣିବା ସେତେ ସମ୍ଭବ ନୁହେଁ।

ଆମ ଦେଶରେ ଏମିତି ଦିନ ଥିଲା ଯେତେବେଳେ କୌପୁନି ପିନ୍ଧି ମୁନିଋଷିମାନେ ଅଗାଧ ଜ୍ଞାନ ଆହରଣ ଓ ବିତରଣ କରୁଥିଲେ। ଯାଜ୍ଞବଲ୍କଙ୍କଠାରୁ ଅଧିକ ଜିଜ୍ଞାସା ଥିବା ବ୍ୟକ୍ତି ଦୁନିଆରେ ବିରଳ। ମାତ୍ର ଯୁଗ ପରିବର୍ତ୍ତନରେ ସେ ଦିନ ଆଜି ଆଉ ନାହିଁ। ନୂଆ ଯୁଗର ନୂଆ ଓ ଶକ୍ତ ଆହ୍ୱାନ ଆମକୁ, ବିଶେଷ କରି ଆମର କନିଷ୍ଠ ପ୍ରତିଭାଶାଳୀ ଛାତ୍ରଛାତ୍ରୀଙ୍କୁ ଗ୍ରହଣ କରିବାକୁ ପଡିବ।

ଓଡ଼ିଶାର ତଥା ଭାରତବର୍ଷର ଅର୍ଥନୈତିକ ସମସ୍ୟା ଖୁବ୍ ଜଟିଳ। ଆମେ ଆଗ ଭୋକିଲା ଜନତା ପାଇଁ ଖାଦ୍ୟ ଯୋଗାଇବା ବା ଅସୁସ୍ଥ ଶିଶୁ ଓ ମହିଳାଙ୍କର ଚିକିତ୍ସା ବନ୍ଦୋବସ୍ତ କରିବା, ନା କୌଣସି ଦୁସ୍ଥ ମହାବିଦ୍ୟାଳୟ ବା ବିଶ୍ୱବିଦ୍ୟାଳୟର ପାଠାଗାରକୁ ଉପାଦେୟ ବହି ଓ ପତ୍ରପତ୍ରିକା ଯୋଗାଇ ଦେବା - କେଉଁ ସମସ୍ୟାର ଗୁରୁତ୍ୱ ଅଧିକ ? ଅର୍ଥନୈତିକ ଓ ସାମାଜିକ ଏଇ ଗୋଲକଧନ୍ଦା ଭିତରେ ନିରୁପାୟ ବା ନିଷ୍କ୍ରିୟ ହୋଇ ଆମ ଯୁବ ସମାଜର ବୌଦ୍ଧିକ ବିକାଶର ତଥା ସେ ପ୍ରକ୍ରିୟାରେ ସଂଯୁକ୍ତ ଥିବା ଉଚ୍ଚଶିକ୍ଷାନୁଷ୍ଠାନ ସବୁର ଭବିଷ୍ୟତକୁ ଆମେ ଜଳାଞ୍ଜଳି ଦେଇପାରିବା କି ?

ଶହେବର୍ଷରୁ ଅଧିକ ହୋଇଗଲାଣି - କଟକ ରେଭେନ୍ସା କଲେଜର କୋଠାଘର ତିଆରି ହେଉଥିବା ସମୟର କଥା। କୋଠା ନିର୍ମାଣ କାର୍ଯ୍ୟ ସମ୍ବନ୍ଧରେ ଉତ୍କଳମଣି ଗୋପବନ୍ଧୁ ଏତେଗୁଡାଏ ଅର୍ଥ ବ୍ୟୟ ହେଉଥିବାରୁ ସେ ଯୋଜନାର ସମାଲୋଚନା କରିଥିଲେ। କାହିଁକି ନା ଗାଁ ମାନଙ୍କରେ ଦୀପ ଜାଳିବା ପାଇଁ ଲୋକଙ୍କର ସମ୍ବଳ ନଥିଲା ସେତେବେଳେ।

ଆଜି ସେଇପରି ସନ୍ଦିଗ୍ଧ ଅବସ୍ଥାରେ ଆମର କର୍ତ୍ତବ୍ୟ କ'ଣ ? ବେଳେବେଳେ ମନ ଭିତରେ ମୁଁ ପ୍ରଶ୍ନ କରେ, ରେଭେନ୍ସା କଲେଜର ସେଇ ସୁରମ୍ୟ ଇଟା କାନ୍ଥର ପରିସର ଭିତରକୁ ଯଦି ଉତ୍କଳମଣି ପ୍ରବେଶ ନ କରିଥାନ୍ତେ ତାଙ୍କର ଉଜ୍ଜ୍ୱଳତା ସର୍ବଭାରତୀୟ ପରିସରରୁ ଚମକତା ପାଇପାରିଥାନ୍ତା କି ? ବନ୍ଧୁ ଗଣେଶ୍ୱର ବାବୁଙ୍କର ପ୍ରବନ୍ଧଗୁଡ଼ିକ ପଢିଲେ ସଂଶୟ କେତେକାଂଶରେ ଦୂର ହୋଇଯାଏ। ଆମ ପ୍ରଦେଶ ବା ଦେଶର ଉଦୀୟମାନ ଅନୁଷ୍ଠାନ ଓ ଯୁବସମାଜ ସହିତ ଆଗକୁ ପାଦ ପକେଇବା ପାଇଁ ଦମ୍ଭ ଆସେ।

**ଗୌର କିଶୋର ଦାସ**
**ପୂର୍ବତନ କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ**

# ବିଦ୍ୟାରମ୍ଭେ ଗୁରୁଶ୍ରେଷ୍ଠ

ପ୍ରଫେସର ଗଣେଶ୍ୱର ଦାସ ଜଣେ ଆଦର୍ଶ ଶିକ୍ଷକ, ଉପାଧ୍ୟକ୍ଷ ଓ ଶେଷରେ ପ୍ରଫେସର ପ୍ରମୋଶନ ପାଇ ଏକ ପ୍ରମୁଖ କଲେଜର ଅଧ୍ୟକ୍ଷ ଭାବରେ ସଫଳତାର ସହିତ କର୍ମ ସମାପନ କରି ଦୀର୍ଘ ପନ୍ଦର ବର୍ଷ ତଳେ ଅବସର ଗ୍ରହଣ କରିଛନ୍ତି । ଅବସର ଜୀବନର ଆରମ୍ଭରୁ ଏ ଅବଧି ସେ ଶିକ୍ଷକ ଜୀବନର ଧାରାରୁ ଅବ୍ୟାହତି ନେଇନାହାନ୍ତି । ଜଣେ ଅଭିଜ୍ଞ ପରାମର୍ଶଦାତା ଭାବରେ ଶିକ୍ଷା, ଶିକ୍ଷକ, ଶିକ୍ଷାୟତନ ଓ ବିଶ୍ୱସ୍ତରୀୟ ଶିକ୍ଷାର ପରିବର୍ତ୍ତନ ଧାରା ସମ୍ପର୍କରେ ରାଶି ରାଶି ପ୍ରବନ୍ଧ ପ୍ରକାଶ କରିଚାଲିଛନ୍ତି। ନିଜେ ଅନୁଭବ କରିଥିବା ଓ ଅଗ୍ରଦୃଷ୍ଟିରେ ଦେଖିପାରୁଥିବା ଅବସ୍ଥାକୁ ନିଜ ମନରେ ତଉଲି ତଉଲି ପ୍ରବନ୍ଧ ରଚନା କରନ୍ତି ସେ।

ପ୍ରଫେସର ଦାସଙ୍କ ସାତ ବର୍ଷରୁ ଅଧିକ ଅଧ୍ୟକ୍ଷ କାର୍ଯ୍ୟକାଳର ମୁଁ ପ୍ରତ୍ୟକ୍ଷ ସାକ୍ଷୀ । ରାଉରକେଲା ସରକାରୀ ମହାବିଦ୍ୟାଳୟ ଓଡ଼ିଶାର ଅନ୍ୟତମ ପ୍ରମୁଖ କଲେଜ। ଅତୀତରେ ଗୋଟିଏ ବର୍ଷ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଆଇ.ଏସ୍‌ସି. ପରୀକ୍ଷାର ପ୍ରଥମ ଦଶ ଜଣଙ୍କ ସ୍ଥାନ ଏହି କଲେଜର ଛାତ୍ରଛାତ୍ରୀ ଅଧିକାର କରିଥିଲେ । କିନ୍ତୁ ପ୍ରଫେସର ଦାସ କାର୍ଯ୍ୟଭାର ଗ୍ରହଣ କରିବା ସମୟରେ କଲେଜର ଅବସ୍ଥା ଶୋଚନୀୟ ହୋଇପଡ଼ିଥିଲା, କେବଳ ଶିକ୍ଷକ ଛାତ୍ରଛାତ୍ରୀ ନୁହନ୍ତି କାର୍ଯ୍ୟାଳୟର କର୍ମଚାରୀ ଓ ହିସାବ କିତାବରେ ମଧ୍ୟ ଅନେକ ଅବ୍ୟବସ୍ଥା ଉପୁଜିଥିଲା । ଗୋଟିଏ ଅସଜଡା କଲେଜକୁ ଅଧ୍ୟକ୍ଷ ଦାସ କେବଳ ସଜାଡିଲେନି ବରଂ ଡ଼ଃ ମାନସିଂହ, ଜି.ଏମ. କଲେଜକୁ ନୂଆ ରୂପ ଦେବା ପରି, ସେ ସଜାଡିବାକୁ ଲାଗିଲେ । ଶିକ୍ଷାଦାନ, କଲେଜ ପରିଚାଳନା, ଛାତ୍ର ଶୃଙ୍ଖଳାରେ ଏହି ସାତ ବର୍ଷରେ କଲେଜ ବେଶ୍ ଉପରକୁ ଉଠିଲା । କଲେଜର ଛାତ୍ରଛାତ୍ରୀମାନଙ୍କର ଟ୍ୟାଲେଣ୍ଟ ସର୍ଚ୍ଚ କରି କଲେଜର ସମସ୍ତ ମନୋରଞ୍ଜନ କାର୍ଯ୍ୟକ୍ରମ, ଯନ୍ତ୍ରସଙ୍ଗୀତ ଓ କଣ୍ଠ ସଙ୍ଗୀତରେ କେବଳ କଲେଜ ପିଲାଙ୍କ ଦ୍ୱାରା ଯାହା ବ୍ୟବସ୍ଥା ପ୍ରଫେସର ଦାସ କରାଇଥିଲେ, ତାଙ୍କ ଅବସର ଗ୍ରହଣ ପରେ ବି ଅନେକ ବର୍ଷ ପର୍ଯ୍ୟନ୍ତ ଚାଲିଥିଲା ।

ପ୍ରଫେସର ଦାସ ସ୍ୱଳ୍ପାହାରୀ, ସ୍ୱଳ୍ପ-ଭାଷୀ, ମାତ୍ର ମନରବଳ ତାଙ୍କର ଅସୀମ, ଧୈର୍ଯ୍ୟ ବି ଅସୀମ, କର୍ମ କରିବାର ପ୍ରବଣତା ବି ଅସୀମ । ନିଜର ଅଧ୍ୟୟନ, ଅନୁଭୂତି ଓ ଦୃଷ୍ଟି-ଦର୍ଶନକୁ ନେଇ ସେ ସବୁ ସମୟରେ କିଛି ନୂଆ କରିବାରେ ଆନନ୍ଦ ଅନୁଭବ କରିଛନ୍ତି । ନିଜର ପରିବାର ସମ୍ପର୍କରେ ଗୋଟିଏ ଚମତ୍କାର ବହି "ବୈକୁଣ୍ଠ ସମାନ ଆହା ଅଟେ ସେହି ଘର" ସଂକଳନ କରିଛନ୍ତି । ଏଥିରେ ଏକ ପରିପୂର୍ଣ୍ଣ ନୀଡ଼ର ଛବି କଥା ଓ ଗୀତରେ ଆଙ୍କିଛନ୍ତି ଯାହା ଏକ ନୂତନ ଧରଣର ସୃଷ୍ଟି । ନିଜ ଶିକ୍ଷକ ଜୀବନ, ଅଧ୍ୟକ୍ଷ ଜୀବନ, ପାଠପଢ଼ା ସମୟର ସ୍କୁଲ ଜୀବନ, ପିଲାବେଳର ପାରିପାର୍ଶ୍ୱିକ ପରିବେଶ କ୍ରମରେ ପିଲାଦିନର କଟକ ନଗରରେ ଯେଉଁ ଧବଳ ଟଗରର ସ୍ମୃତି ଦେଖାଦେଇଥିଲା, ଏବେ ତାହା କିପରି ନାଳନର୍ଦ୍ଦମାର ସହର ପାଲଟିଛି ଓ ପରିବର୍ତ୍ତିତ ସହରୀ ଜୀବନରେ ସାଇ ସଂସ୍କୃତି ଭାଇଚାରା ପାଣିଚିଆ ହୋଇଯାଇଛି ସେସବୁ ନିଜର ଆତ୍ମଜୀବନୀ "ମନେପଡ଼େ" ରେ ପ୍ରଦାନ କରିଛନ୍ତି। ତାହା ଅନେକ ପାଠକଙ୍କର ବେଶ୍ ରୁଚିକର ହୋଇ ବିଦେଶରେ ପ୍ରସାର ଲାଭ କରିଚାଲିଛି ।

ନୂତନ ଆହ୍ୱାନ : ଜଗତୀକରଣ ଓ ଆଧୁନିକ ଉଚ୍ଚଶିକ୍ଷା" ପୁସ୍ତକରେ ଜଣେ ଶିକ୍ଷକଙ୍କର ମର୍ମାନ୍ତିକ ବେଦନା, ଶିକ୍ଷାରେ ଭବିଷ୍ୟତ ପାଇଁ ଯୋଜନା ତଥା ମୋ ଦେଶର ଶିକ୍ଷାରେ କିପରି ପରିବର୍ତ୍ତନ ହେବ, ଗଠନଗତ ସଂସ୍କାର ହୋଇପାରିବ, କେବଳ ମନ ଦେଇପାରିଲେ କିପରି ସମ୍ଭବ ହୋଇପାରିବ ସେ ଚିତ୍ର ପ୍ରଦାନ କରିଛନ୍ତି । ଶିକ୍ଷାବିତ୍ ପ୍ରଫେସର ଦାସ କେବଳ ନିଜ ଅନୁଭୂତିର ଚିତ୍ର ପ୍ରଦାନ କରିନାହାନ୍ତି, ଭବିଷ୍ୟତରେ ଶିକ୍ଷାର ସ୍ୱରୂପ କିପରି ହେବ, ଦେଶ ବିଦେଶରେ ଶିକ୍ଷାନୁଷ୍ଠାନରେ ସ୍ୱରୂପ ସମ୍ପର୍କରେ ତଥ୍ୟଭିତ୍ତିକ ଆଲୋଚନା ପ୍ରଦାନ କରିଛନ୍ତି । ୧୯୯୨ ମସିହାରେ ସରକାରୀ କଳରୁ ମୁକ୍ତିଲାଭ କଲାପରେ ସାଧୀନ ଭାବରେ ନିଜର ଚିନ୍ତନକୁ ସମ୍ବାଦପତ୍ର ଓ ଆକାଶବାଣୀ ମାଧ୍ୟମରେ ପ୍ରକାଶ କରିଚାଲିଛନ୍ତି। ତାଙ୍କ ଦୃଷ୍ଟିରେ ଶିକ୍ଷା କର୍ମଭିତ୍ତିକ ଓ ସମାଜନିଷ୍ଠ ହେବା ଆବଶ୍ୟକ ବୋଲି ସେ ପ୍ରକାଶ କରିଛନ୍ତି ।

ପ୍ରଫେସର ଗଣେଶ୍ୱର ଦାସ ଜଣେ ଗୁରୁ । ବିଶ୍ୱବିଦ୍ୟାଳୟ, ମହାବିଦ୍ୟାଳୟ, ଉଚ୍ଚବିଦ୍ୟାଳୟ ଶିକ୍ଷାଧାରା ପରିବର୍ତ୍ତନ

ପାଇଁ ସେ ନିଜ ଅନୁଭୂତିରୁ ଦୃଷ୍ଟାନ୍ତ ଦେଇ ଆଲୋଚନା କରିଛନ୍ତି । ମାତ୍ର ସବୁଠାରୁ ଗୁରୁତ୍ୱ ଦେଇଛନ୍ତି ଦେଶର ମୂଳଦୁଆ ପ୍ରାଥମିକ ଶିକ୍ଷା ଉପରେ । ଆମ ଦେଶରେ ପ୍ରାଥମିକ ଶିକ୍ଷା ହିଁ ସବୁଠାରୁ ଅବହେଳିତ । "ଆମ ସରକାର ପ୍ରାଥମିକ ଶିକ୍ଷାକୁ ନଜର ନ ଦେଇ ବୟସ୍କମାନଙ୍କ ଶିକ୍ଷାପାଇଁ (ଜାତୀୟ ଶିକ୍ଷା ମିଶନ୍ ଜରିଆରେ) ପର୍ଯ୍ୟାପ୍ତ ଅର୍ଥ ବ୍ୟୟ କରିବାରେ ଲାଗିଛନ୍ତି, ଫଳରେ ସମ୍ପୂର୍ଣ୍ଣ ସାକ୍ଷର ଯୋଜନା ପାଇଁ ପ୍ରାଥମିକ ଶିକ୍ଷାକୁ ମନକୁ ମନ ଅବହେଳା କରାଯାଉଛି ।" ଶ୍ରେଷ୍ଠଗୁରୁଙ୍କ ନିକଟରୁ ବିଦ୍ୟା ଆରମ୍ଭ କରିଥିଲେ ମୂଳଦୁଆ ମଜଭୁତ ହୋଇଥାଏ । ଆଗେ କେବଳ ପ୍ରାଥମିକ ବିଦ୍ୟା ହିଁ ବିଦ୍ୟାରମ୍ଭର ପ୍ରଥମ ପାହାଚ ଥିଲା । ଏବେ କିନ୍ତୁ ଅଲଗା । ଉଚ୍ଚବିଦ୍ୟାଳୟ, ମହାବିଦ୍ୟାଳୟ, ଏପରିକି ବୈଷୟିକ ବିଦ୍ୟାଳୟରେ ବି ଅନେକ ନୂଆ ବିଦ୍ୟା ଆରମ୍ଭ କରାଯାଇଛି । ତଥାପି ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷା ମଜଭୁତ ନ ଥିଲେ ଉପର ପାହାଚ ଚଢ଼ିବା କେବେ ସହଜ ହୋଇପାରେନା ।

ପ୍ରଫେସର ଦାସ ଶିକ୍ଷା ସମ୍ପର୍କରେ ଥିବା ଜଟିଳ ସମସ୍ୟାକୁ ସରଳ ତରଳ ଭାଷାରେ ଜନସାଧାରଣଙ୍କ ବୋଧଗମ୍ୟ ହେବା ଶୈଳୀରେ ପ୍ରକାଶ କରନ୍ତି । ଜଟିଳ ସମସ୍ୟାକୁ ହୃଦୟଙ୍ଗମ କରି ପ୍ରଚଳିତ ଭାଷାରେ ଉପସ୍ଥାପନା କରିବା କିଛି କମ୍ କଥା ନୁହେଁ । ସେ ପ୍ରକାର ସାଧନା ଅବ୍ୟାହତ ରଖିଥିବାରୁ ମୁଁ ସାର୍‌ଙ୍କୁ ପ୍ରଣାମ ଜଣାଉଛି । ସମ୍ବାଦପତ୍ରରେ ପ୍ରକାଶିତ ଲେଖା ଯେତେ ଉଚ୍ଚକୋଟୀର ହୋଇଥିଲେ ବି ପରବର୍ତ୍ତୀ ସମୟ ପାଇଁ ଉପଯୋଗୀ ହୋଇପାରେ ନାହିଁ । ପୁସ୍ତକ ଭାବରେ ସଂକଳିତ ହେଲେ ତାର ଭବିଷ୍ୟତ ଉପଯୋଗିତା ଅନୁଭବ କରାଯାଇପାରେ । ସେ ଦୃଷ୍ଟିରୁ ଏ ପୁସ୍ତକର ପ୍ରକାଶନକୁ ସାଧୁବାଦ ଜଣାଉଛି ।

**ଡକ୍ଟର ଶ୍ରୀଚରଣ ମହାନ୍ତି**

ରିଡର, ଓଡ଼ିଆ ବିଭାଗ

ଜାତୀୟ କବି ବୀରକିଶୋର ସରକାରୀ କଲେଜ, କଟକ

# କିଛିଟା ସୂଚନା

ଜୀବନର ଦୀର୍ଘ ସମୟ ଉଚ୍ଚଶିକ୍ଷା ସାଙ୍ଗରେ ସମ୍ପୃକ୍ତ ରହି ଯାହାକିଛି ଅଭିଜ୍ଞତା ଲାଭ କରିଥିଲି ସେସବୁ ମୋ ଅବସର କାଳର ସମ୍ପଦ ବୋଲି ମଣି ବିଭିନ୍ନ ସମୟରେ ବିଭିନ୍ନ ପ୍ରବନ୍ଧ ଜରିଆରେ କିଛିଟା ତଥ୍ୟ ଏବଂ କିଛିଟା ମତାମତ ପାଠକମାନଙ୍କୁ ପାଖରେ ପହଞ୍ଚାଇଥିଲି। ଅବସର ସମୟର ୧୫/୧୬ ବର୍ଷ ବିତି ଗଲାଣି । ଏହି ସମୟ ଭିତରେ ମଧ୍ୟ ଉଚ୍ଚଶିକ୍ଷାର କେତେ ନୂତନ ଆଭିମୁଖ୍ୟ ପ୍ରକାଶ ପାଇଲାଣି। ଆମ ଶିକ୍ଷିତ ବ୍ୟକ୍ତିଟିଏ ଓଡିଶାର ବିଶ୍ୱବିଦ୍ୟାଳୟ ଓ କଲେଜମାନଙ୍କରେ ଆବଦ୍ଧ ଥିବା ଉଚ୍ଚଶିକ୍ଷାକୁ ଭାରତବର୍ଷର ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କ ପରିସର ଭିତରକୁ ପ୍ରବେଶ କରାଇ ଜଗତୀକରଣର ଆହ୍ୱାନରେ ତାହାର ନୂଆ ରୂପକୁ ଗ୍ରହଣ କରି ସମଗ୍ର ପୃଥିବୀକୁ ସହଜରେ କରଗତ କରିବାର ପ୍ରଚେଷ୍ଟାରେ ନିଜକୁ ସାମିଲ କରିସାରିଲେଣି । ନିକଟରେ ରାଷ୍ଟ୍ରପତି ପଦରୁ ବିଦାୟ ନେଇଥିବା ବିଜ୍ଞ ଓ ବିଦ୍ୱାନ ପ୍ରଫେସର ଅବଦୁଲ କାଲାମଙ୍କର ସ୍ୱପ୍ନ ବାସ୍ତବରେ ପରିଣତ ହେବା ଲାଗି ବେଶୀ ସମୟ ବାକି ନାହିଁ । ତାଙ୍କ ଭାଷାରେ "A developed India by 2020, or even earlier, is not a dream. It need not even be a mere vision in the mind of many Indians. It is a mission we can all take up". କେବଳ ପ୍ରାକୃତିକ ସମ୍ପଦର ଆଧିକ୍ୟ କିମ୍ବା ଧନର ପ୍ରାଚୁର୍ଯ୍ୟ ଗୋଟିଏ ଦେଶକୁ ଉନ୍ନତ ରାଷ୍ଟ୍ରରେ ପରିଣତ କରି ନ ଥାଏ । ବିଭିନ୍ନ ରାଷ୍ଟ୍ରମାନଙ୍କ ତୁଳନାତ୍ମକ ସମୀକ୍ଷାରୁ ସ୍ପଷ୍ଟ ସୂଚିତ ହୁଏ ଯେ ଶିକ୍ଷାର ଗୁଣାତ୍ମକ ପରିବୃଦ୍ଧି ଗୋଟିଏ ଦେଶର ଉନ୍ନତି ସାଙ୍ଗରେ ସିଧାସଳଖ ଯୋଡ଼ା ହୋଇଥାଏ । ଦେଶବାସୀମାନେ ହିଁ ଦେଶର ସମ୍ପତ୍ତି । ଦେଶର ଉନ୍ନତି ଦେଶବାସୀଙ୍କର ଶିକ୍ଷା ଉପରେ ହିଁ ନିର୍ଭର କରିଥାଏ । ବର୍ତ୍ତମାନ ସମୟରେ ସମଗ୍ର ପୃଥିବୀ ଉଚ୍ଚଶିକ୍ଷା କ୍ଷେତ୍ରରେ ବିରାଟ ବିପ୍ଳବର ସମ୍ମୁଖୀନ ହୋଇଅଛି । ଉଚ୍ଚଶିକ୍ଷା ଆଉ ଏକ ବିଳାସର ଉପାଦାନ ହୋଇ ରହିନାହିଁ। ମାନବ ସମାଜର ସ୍ଥିତି ପାଇଁ ଏହା ଏକାନ୍ତ ଆବଶ୍ୟକ।

"ଅବହେଳିତ ଉଚ୍ଚଶିକ୍ଷା ଜାତୀୟ ପ୍ରଗତିର ବାଧକ" ପ୍ରବନ୍ଧଟିରେ ଅନ୍ୟ ଉନ୍ନତ ରାଷ୍ଟ୍ରମାନଙ୍କ ତୁଳନାରେ ଭାରତବର୍ଷର ଉଚ୍ଚଶିକ୍ଷା କି ଦୟନୀୟ ଅବସ୍ଥା ଦେଇ ଗତି କରୁଛି ତାହା ବିଭିନ୍ନ ତଥ୍ୟମାନଙ୍କ ଜରିଆରେ ପ୍ରକାଶ କରିଅଛି । ଓଡ଼ିଶାରେ ଗତ ୨୫ ବର୍ଷ ଭିତରେ ଅନେକ ଉଚ୍ଚଶିକ୍ଷା ଅନୁଷ୍ଠାନ ଗଢିଉଠିଛି ଯେଉଁଠାରେ କି ଆବଶ୍ୟକ ଉପକରଣ, ଭିତିଭୂମି, ଏବଂ ଉପଯୁକ୍ତ ସଂଖ୍ୟକ ଅଧ୍ୟାପକଙ୍କର ଘୋର ଅଭାବ ପରିଲକ୍ଷିତ ହୁଏ । ଆବଶ୍ୟକ ଯୋଗ୍ୟତାର ଅଭାବ ଥାଇ ମଧ୍ୟ ଛାତ୍ରମାନେ ଉଚ୍ଚଶିକ୍ଷା ଲାଭ ଆଶାରେ ଶିକ୍ଷାନୁଷ୍ଠାନ ମାନଙ୍କରେ ନାମ ଲେଖାଇ ପାରୁଛନ୍ତି । ଫଳରେ ବହୁ ସଂଖ୍ୟକ ଛାତ୍ର ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଉପଯୁକ୍ତ ନିଯୁକ୍ତିର ଅଭାବରେ ସମାଜରେ ଅନେକ ଅନାବଶ୍ୟକ ଏବଂ ବିପଜ୍ଜନକ ସମସ୍ୟା ସୃଷ୍ଟି କରୁଛନ୍ତି । ଅନେକ ଶିକ୍ଷାନୁଷ୍ଠାନରେ ନାମ ଲେଖାଇବା ପାଇଁ ଉଚ୍ଚଦରର ଦରମା ସାଙ୍ଗକୁ ଉଚ୍ଚଦରର ଚାନ୍ଦା ଆଦାୟ କରାଯାଉଅଛି । ରାଜନୈତିକ ପ୍ରଭାବରେ ପ୍ରଭାବିତ ଛାତ୍ରମାନେ ଶିକ୍ଷାନୁଷ୍ଠାନର ଶାନ୍ତି ନଷ୍ଟ କରୁଛନ୍ତି । ଶିକ୍ଷାନୁଷ୍ଠାନର ଛାତ୍ରପ୍ରତିନିଧି ନିର୍ବାଚନ ସମ୍ପୂର୍ଣ୍ଣ ଭାବେ ରାଜନୈତିକ ପ୍ରଣୋଦିତ ହୋଇଯାଉଅଛି । କିଛି ନା କିଛି ଗଣ୍ଡଗୋଳ ସୃଷ୍ଟି ଫଳରେ ଛାତ୍ରମାନଙ୍କର ସ୍ଥିରିକୃତ ପାଠପଢା ଦିନମାନଙ୍କର ସଂଖ୍ୟା କମିଯାଉଛି । ଛାତ୍ର ବିଶୃଙ୍ଖଳା ଫଳରେ ଶିକ୍ଷାନୁଷ୍ଠାନର ମୂଲ୍ୟବାନ ସମ୍ପତ୍ତି ନଷ୍ଟ ହେଉଅଛି । ଅଧ୍ୟାପକ ମାନଙ୍କର ନିଯୁକ୍ତିରେ ନିରପେକ୍ଷତା ଅବଲମ୍ବନ କରାଯାଇ ପାରୁନାହିଁ । ଅଧ୍ୟାପନାରେ ମଧ୍ୟ ବିଶୃଙ୍ଖଳା ପରିଲକ୍ଷିତ ହେଉଅଛି । ଯଦିଓ ସୁଅଧ୍ୟାପନା ଅଧ୍ୟାପକମାନଙ୍କ ପ୍ରଥମ ଏବଂ ଜରୁରୀ ଦାୟୀତ୍ୱ, ଅଧ୍ୟାପନା ପାଇଁ ନିତାନ୍ତ ଆବଶ୍ୟକଥିବା ଗବେଷଣା କାର୍ଯ୍ୟକୁ ଅବହେଳା କରାଯାଇ ନ ପାରେ । ପରୀକ୍ଷା ସଂସ୍କାର ବିଷୟରେ ବିଜ୍ଞବ୍ୟକ୍ତି ମାନଙ୍କର ଅନେକ ବିଜ୍ଞ ଆଲୋଚନା ଏବଂ ମୂଲ୍ୟବାନ ରିପୋର୍ଟ ମାନଙ୍କ ସତ୍ତ୍ୱେ ବି ପରୀକ୍ଷା ପରିଚାଳନାରେ ବିଶୃଙ୍ଖଳା ପରିଲକ୍ଷିତ ହେଉଅଛି । ପରୀକ୍ଷା ଖାତା ମୂଲ୍ୟାୟନ ଏପରି ତ୍ରୁଟିପୂର୍ଣ୍ଣ ହେଉଅଛି ଯେ, ପରୀକ୍ଷାର୍ଥୀମାନଙ୍କୁ ନ୍ୟାୟ ପାଇଁ କୋର୍ଟ କଚେରୀକୁ ଯିବାକୁ ପଡୁଛି । ଅସଂଖ୍ୟ ଟ୍ୟୁଟରିଆଲ ହୋମ୍ ଏବଂ ଘରୋଇ ଟ୍ୟୁସନ ଉଭୟ ଛାତ୍ର ଓ ଅଧ୍ୟାପକମାନଙ୍କୁ ମହାବିପଦର ପରିସର ଭିତରକୁ ଟାଣି ଆଣୁଛି । ଟ୍ୟୁସନ ସମସ୍ୟା ଅଧ୍ୟାପକମାନଙ୍କୁ ବଦଳିଜନିତ ସମସ୍ୟା ସାଙ୍ଗରେ ଏପରି ଜଡ଼ିତ ହୋଇଯାଇଛି ଯେ, ଟ୍ୟୁସନ ବନ୍ଦ ଲାଗି ସରକାରୀ ନିର୍ଦ୍ଦେଶନାମା ଅନେକ ବର୍ଷ ଧରି କାମ କରିପାରୁନାହିଁ । ଆମ ରାଜ୍ୟରେ ସଂପ୍ରତି ଗୋଟିଏ ଛାତ୍ରୀର ଆତ୍ମହତ୍ୟା ଏବଂ ମୃତ୍ୟୁ ପୂର୍ବରୁ ରଖିଯାଇଥିବା ଲିଖିତ ଟିପ୍ପଣୀ ଅଧ୍ୟାପକମାନଙ୍କର ଅଧ୍ୟାପନାର ଦାୟିତ୍ୱ ଉପରେ ପ୍ରଶ୍ନ ଉଠାଇଅଛି । ଅଧ୍ୟାପକମାନଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ଲେସନ୍ ପ୍ଲାନ୍ ଓ ଲେସନ୍ ନୋଟ୍‌ର ଉଚିତ ସମୀକ୍ଷା ସରକାରଙ୍କର ପ୍ରତି ସ୍ତରରେ ନିୟମିତ ଭାବରେ ହେଉଥିଲେ ହୁଏତ ଅଧ୍ୟାପନାର ଉନ୍ନତି ସାଙ୍ଗକୁ ଟ୍ୟୁସନ ର୍‍ୟାକେଟ୍ ଦୁର୍ବଳ ହୋଇପଡ଼ନ୍ତା ।

ଜଣେ ଅଧକ୍ଷ ଭାବରେ ପରୀକ୍ଷା ଏବଂ ପରୀକ୍ଷା ଖାତା ମୂଲ୍ୟାୟନର ପରିଚାଳନାରେ ବିଶୃଙ୍ଖଳିତ ବିଶ୍ୱବିଦ୍ୟାଳୟ ଏବଂ ସରକାରୀସ୍ତର କିପରି ସମସ୍ୟାମାନ ସୃଷ୍ଟି କରୁଥିଲେ ସେ ବିଷୟରେ ମୁଁ ନିଜର ଉପାୟହୀନ ସଚେତନତା ଏବଂ ନେଉଥିବା କିଛିଟା ପଦକ୍ଷେପ ବିଷୟରେ କେତେକ ପ୍ରବନ୍ଧରେ ଉଲ୍ଲେଖ କରିଅଛି । ବିଶ୍ୱବିଦ୍ୟାଳୟର କୁଳପତି ମାନଙ୍କର ଦୟନୀୟ ଅବସ୍ଥା ମୋ ଚାକିରି କାଳ ଭିତରେ ମୋତେ ବିଶେଷ ଭାବରେ ଆନ୍ଦୋଳିତ କରିଥିଲା । ମୋ ମତରେ କୁଳପତିମାନେ ବ୍ୟକ୍ତିଗତ ମହତ୍ୱ ପ୍ରତିପାଦନରେ ଚେଷ୍ଟିତ ନ ରହି ଗୋଟିଏ ଶୃଙ୍ଖଳିତ ବ୍ୟବସ୍ଥା ବା ଧାରା ସୃଷ୍ଟି କରିଗଲେ ତାହା ପରବର୍ତ୍ତୀ କୁଳପତିମାନଙ୍କ ଲାଗି ସହାୟକ ହେବ । ବ୍ୟକ୍ତିଗତ ପ୍ରତିଷ୍ଠା ଅପେକ୍ଷା ଗୋଟିଏ ପଦ୍ଧତି ବା ଧାରାର ପ୍ରତିଷ୍ଠା ବିଶ୍ୱବିଦ୍ୟାଳୟ ପାଇଁ ଅଧିକ ମୂଲ୍ୟବାନ୍। କେଉଁ ପରିସ୍ଥିତିରେ ସରକାରଙ୍କର ଜଣେ ଆର୍.ଡ଼ି.ସି ବିଶ୍ୱବିଦ୍ୟାଳୟର ବିଶୃଙ୍ଖଳା ବିଷୟରେ ଅନୁସନ୍ଧାନ କରିବାକୁ ଯାଇ କୁଳପତିଙ୍କ ବିରୁଦ୍ଧରେ ଅଶାଳୀନ ମନ୍ତବ୍ୟମାନ ଦେବାକୁ ସାହାସ କରିପାରୁଛନ୍ତି ତାହା ପ୍ରଣିଧାନ ଯୋଗ୍ୟ ବୋଲି ମୁଁ କେତେକ ପ୍ରବନ୍ଧ ଏବଂ "ସମ୍ପାଦକଙ୍କୁ ପତ୍ର" ସ୍ତମ୍ଭରେ ଦର୍ଶାଇଥିଲି । ସମାଜରେ କୁଳପତିଙ୍କର ସମ୍ମାନ ଜଣେ ରାଜ୍ୟପାଳ ବା ହାଇକୋର୍ଟ ବିଚାରପତିଙ୍କଠାରୁ କିଛି କମ୍ ନୁହେଁ । କିନ୍ତୁ ରାଜ୍ୟପାଳ ବା ବିଚାରପତିଙ୍କ ଦୁର୍ନୀତି କୌଣସି ଆର୍.ଡ଼ି.ସି.ଙ୍କ ଦ୍ୱାରା ଅନୁସନ୍ଧାନ କରାନଯାଉଥିବାବେଳେ କୁଳପତିଙ୍କର ଦୁର୍ନୀତି ବିଷୟରେ ଏପରି ଅନୁସନ୍ଧାନର ବ୍ୟବସ୍ଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଲାଗି ମୁଁ କୁଳପତିମାନଙ୍କୁ ଆହ୍ୱାନ ଦେଇଥିଲି । ଆବଶ୍ୟକ ହେଲେ ସମ୍ବିଧାନର ସଂଶୋଧନ କରାଯିବା ଉଚିତ୍ ।

ସମୟ ଆସି ପହଞ୍ଚିଛି ଯେତେବେଳେ କି ଉଚ୍ଚଶିକ୍ଷାର ଘରୋଇକରଣ ଆବଶ୍ୟକ ହୋଇପଡ଼ିଛି । ଶିଳ୍ପପତିମାନେ ବିଶ୍ୱବିଦ୍ୟାଳୟ ଗଢ଼ିବା ଲାଗି ଆଗେଇ ଆସୁଛନ୍ତି । ଅଧାପନାର ଉତ୍ତରଦାୟିତ୍ୱ ସରକାରୀ ସ୍ତରରେ ନ ରହି ଘରୋଇ ପରିଚାଳନାକୁ ଆସିଯାଉଛି । ଉଲ୍ଲେଖଯୋଗ୍ୟ ଯେ ଉଚ୍ଚଶିକ୍ଷା ପ୍ରଦାନରେ ଅଧାପକମାନଙ୍କର ଅଧାପନାର ବିଚାରକ ହେବେ ଶିକ୍ଷାଲାଭ କରୁଥିବା ଛାତ୍ରଛାତ୍ରୀମାନେ । ଓଡ଼ିଶାର ଅନେକ ଶିକ୍ଷାନୁଷ୍ଠାନରେ (ବିଶେଷତଃ ବୈଷୟିକ ଶିକ୍ଷାନୁଷ୍ଠାନ ମାନଙ୍କରେ) ଅଧାପନାର ମୂଲ୍ୟାୟନ ଛାତ୍ରମାନଙ୍କ ଦ୍ୱାରା କରାହେବା ଆରମ୍ଭ ହୋଇଗଲାଣି । ଏସବୁ କ୍ଷେତ୍ରରେ ସରକାର ସବୁ ଦାୟିତ୍ୱ ନିଜ ଉପରୁ ଖସାଇ ଘରୋଇ ସଂସ୍ଥାମାନଙ୍କ ଉପରେ ଲଦି ଦେବା ଉଚିତ୍ ହେବନାହିଁ, କାରଣ ଘରୋଇ ସଂସ୍ଥାମାନେ ନିଜେ ଯାହା ଉଚିତ୍ ମନେ କରିବେ ଶିକ୍ଷାକୁ ସେହିପରି ଭାବରେ ପରିଚାଳିତ କରିବେ । ତେଣୁ ସରକାର ସମ୍ପୂର୍ଣ୍ଣ ଭାବରେ ଘରୋଇ ସଂସ୍ଥାକୁ ଦାୟିତ୍ୱ ସମର୍ପି ଦେବା ଉଚିତ୍ ହେବନାହିଁ । ଆନ୍ତର୍ଜାତିକ ସ୍ତରରେ ଅବସ୍ଥାର ପରୀକ୍ଷଣ ରିପୋର୍ଟରୁ ଜଣାପଡ଼େ କୌଣସି ଉନ୍ନତ ରାଷ୍ଟ୍ରରେ ଶିକ୍ଷାର ସମ୍ପୂର୍ଣ୍ଣ ଘରୋଇକରଣ ବ୍ୟବସ୍ଥା ପ୍ରଚଳିତ ହେଉନାହିଁ । ଅଧିକାଂଶ ଦେଶରେ ଉଭୟ ସରକାର ଏବଂ ଘରୋଇ ସଂସ୍ଥାଙ୍କର ମିଳିତ ପରିଚାଳନାରେ ଉଚ୍ଚଶିକ୍ଷା ଅଗ୍ରସର ହେଉଅଛି । ଅବଶ୍ୟ ଭାରତବର୍ଷରେ ବିଶେଷ କରି ବୈଷୟିକ ଶିକ୍ଷା କ୍ଷେତ୍ରରେ ଘରୋଇ ସଂସ୍ଥାମାନଙ୍କ ସହଯୋଗ ପ୍ରଶଂସନୀୟ । ସରକାରଙ୍କ ତରଫରୁ ସେମାନଙ୍କୁ ଶିକ୍ଷାନୁଷ୍ଠାନ ପରିଚାଳନାରେ ଭାଗ ନେବା ଲାଗି ଉତ୍ସାହିତ କରିବା ଉଚିତ୍ ।

ସୁଖର ବିଷୟ ଉଚ୍ଚଶିକ୍ଷା କ୍ଷେତ୍ରରେ ଭାରତବର୍ଷର ଅବସ୍ଥା ବଦଳି ଆସୁଛି । ସଂଖ୍ୟାଧିକ ଭାରତୀୟ ଛାତ୍ର ଉଚ୍ଚଶିକ୍ଷା ଲାଭ କରୁଛନ୍ତି ଏବଂ ପୃଥିବୀର ଉନ୍ନତ ରାଷ୍ଟ୍ରମାନେ ସେମାନଙ୍କ ଉଚ୍ଚ ପଦବୀରେ ନିଯୁକ୍ତି ଦେଉଅଛନ୍ତି । ଜଗତୀକରଣ ପରିପ୍ରେକ୍ଷୀରେ ଶିକ୍ଷିତ ଭାରତୀୟ ଯୁବକଙ୍କର ଚାହିଦା ବଢ଼ି ବଢ଼ି ଚାଲିଛି । ଯଦି ଏହିପରି ଭାବରେ ଶିକ୍ଷିତ ଯୁବକମାନେ ଅନ୍ୟ ଉନ୍ନତ ରାଷ୍ଟ୍ରମାନଙ୍କରେ ନିଯୁକ୍ତି ପାଇ ସେହି ଦେଶର ନାଗରିକ ହୋଇଯାଆନ୍ତି ସେହି କ୍ଷେତ୍ରରେ ଭାରତବର୍ଷର ଭବିଷ୍ୟତ ଅବସ୍ଥା ବିଷୟ ଚିନ୍ତା କରାଯିବା ନିତାନ୍ତ ଆବଶ୍ୟକ ।

ଇଣ୍ଟରନେଟ୍ ମାଧମରେ ଗବେଷଣା ଜଗତରେ ପ୍ରବେଶ, ବିଭିନ୍ନ ଦେଶର ଛାତ୍ରମାନଙ୍କ ସାଙ୍ଗରେ ଇ-ମେଲ୍ ଜରିଆରେ ସଂଯୋଗ ସ୍ଥାପନ, ଶ୍ରେଣୀ ଗୃହରେ ଲ୍ୟାପ୍‌ଟପ୍ ବ୍ୟବହାର, ଗୋଟିଏ ବିଶ୍ୱବିଦ୍ୟାଳୟର ଅଧାପକ ବିଦେଶର ବିଶ୍ୱବିଦ୍ୟାଳୟର ଛାତ୍ରମାନଙ୍କୁ ଶିକ୍ଷାଦାନ କରିବା ପ୍ରଭୃତି ନୂତନ ଶିକ୍ଷାଦାନ ପ୍ରଣାଳି ସହିତ ସଂପୃକ୍ତି ରହି ଜଗତୀକରଣ ପ୍ରକ୍ରିୟା ସାଙ୍ଗରେ ନିଜକୁ ସାମିଲ କରିବା ପ୍ରତି ଛାତ୍ର ଓ ଅଧାପକଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ ହୋଇପଡ଼ିଛି । ଆର୍ନ୍ତଜାତୀୟ ସ୍ତରରେ ପହଞ୍ଚିବାର ଉଦ୍ଦେଶ୍ୟ ରଖି ଆମ ଉଚ୍ଚଶିକ୍ଷାର ଗତିକୁ ବଦଳାଇବାକୁ ପଡୁଛି ।

ଉଚ୍ଚଶିକ୍ଷାର ଗତି ଯେଉଁ ଆଡ଼କୁ ଯାଉପଛେ, ମଣିଷ ଗଢ଼ିବା ଲକ୍ଷ୍ୟରୁ ତାକୁ ବିଚ୍ୟୁତ କରାଯାଇପାରିବ ନାହିଁ । ଚରିତ୍ର ଗଠନ, ମାନସିକ ଦୃଢ଼ତା, ବୁଦ୍ଧିର ସମ୍ପ୍ରସାରଣ ଏବଂ ମାନବିକ ମୂଲ୍ୟବୋଧ ପ୍ରଭୃତି ଯଦି ଉଚ୍ଚଶିକ୍ଷାର ଲକ୍ଷ୍ୟ ନ ହୁଏ

ଯାବତୀୟ ଅତ୍ୟାଧୁନିକ ଶିକ୍ଷା ପ୍ରଣାଳୀ ଏବଂ ଶିକ୍ଷାନୀତି ରାଷ୍ଟ୍ରର ଉନ୍ନତିର ସହାୟକ ହୋଇପାରିବ ନାହିଁ । ଉତ୍ତମ ଉଚ୍ଚଶିକ୍ଷା ଉତ୍ତମ ବ୍ୟକ୍ତି ସୃଷ୍ଟି କରିବ ଏବଂ ଉତ୍ତମ ବ୍ୟକ୍ତି ହିଁ ମାନ୍ୟତାର ସହିତ କାର୍ଯ୍ୟ କରିବ । ମୂଲ୍ୟବୋଧ ଭିତ୍ତିକ ଶିକ୍ଷା ପ୍ରଦାନ ଅତୀତରେ ଭାରତବର୍ଷରେ ହିଁ ଆରମ୍ଭ ହୋଇଥିଲା । ମାନବିକତାର ଉନ୍ନତି ଥିଲା ଏହି ଶିକ୍ଷାର ଲକ୍ଷ୍ୟ । ସେତେବେଳର ତକ୍ଷଶୀଳା ଏବଂ ନାଳନ୍ଦା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ଲାଗି ପୃଥିବୀର ବିଭିନ୍ନ ଦେଶରୁ ଛାତ୍ରମାନେ ଆସୁଥିଲେ ଯଦିଓ ସେଠାକୁ ଯାତାୟତର କୌଣସି ସୁବିଧା ନ ଥିଲା । ସେତେବେଳେ ମଧ ଶିକ୍ଷାର ମହାନ ମୂଲ୍ୟ ଭାରତବାସୀ ବୁଝି ପାରିଥିଲେ। ଶିକ୍ଷା ଗଢି ତୋଳୁଥିଲା ମାନବର ଚରିତ୍ର, ବ୍ୟବହାର ଓ ବ୍ୟକ୍ତିତ୍ୱକୁ । ଏବେ ଜଗତୀକରଣ ପ୍ରକ୍ରିୟାରେ ସାରା ପୃଥିବୀରେ ମଣିଷ ଖୋଜି ବୁଲୁଛି ସେହି ଶିକ୍ଷା ଯାହାକି ତା'ଠାରେ ଭରିଦେବ ପୂର୍ଣ୍ଣମାତ୍ରାରେ ମାନବିକତା । ଯଥାର୍ଥରେ କୁହାହୋଇଛି, "Learning gives humility, humility makes one deserving, the deserving gets wealth. Wealth gives Dharma and Dharma is the source of all relief and peace.

ଗୋଟିଏ ମନୋନୀତ ବୃତ୍ତି ପାଇଁ କିଛି ବର୍ଷ ଶିକ୍ଷାଲାଭ କରି ସାରାଜୀବନ ଲାଗି ନିଯୁକ୍ତି ଉପଭୋଗ କରିବାର ଦିନ ଆଉ ନାହିଁ। ବୈଷୟିକ ଶିକ୍ଷାର ଅଗ୍ରଗତି ସାଙ୍ଗକୁ ଜଗତୀକରଣ ପ୍ରକ୍ରିୟା ଦ୍ୱାରା ଅଧିକ ପ୍ରତିଯୋଗିତାରେ ସାମିଲ କରିବା ପାଇଁ ବ୍ୟକ୍ତିକୁ ସାରାଜୀବନ ଶିକ୍ଷାଲାଭ କରିବାକୁ ପଡ଼ିବ ନଚେତ ପ୍ରତିଯୋଗିତାରେ ସେ ପଛକୁ ପଡ଼ିଯିବ। ବିଶ୍ୱବିଦ୍ୟାଳୟ ଏବଂ ଉଚ୍ଚଶିକ୍ଷା ଅନୁଷ୍ଠାନମାନଙ୍କୁ ମୁକ୍ତ ଅନୁଷ୍ଠାନ ହୋଇ ବ୍ୟକ୍ତିକୁ ସାରାଜୀବନ ଶିକ୍ଷା ଦେବାର ସୁଯୋଗ ଦେବାକୁ ପଡ଼ିବ। ଅଧିକାଂଶ ଅନୁଷ୍ଠାନ ସ୍ୱୟଂଚାଳିତ ହେବେ ଏବଂ ଅଧାପନା ପାଇଁ ସମାଜ ଏବଂ ଛାତ୍ରମାନଙ୍କ ପାଖରେ ଉତ୍ତରଦାୟୀ ହେବାକୁ ପଡିବ। ଅଳ୍ପରେ କହିବାକୁ ଗଲେ, ଜାତୀୟ ଶିକ୍ଷା ଯୋଜନାମାନ ଆନ୍ତର୍ଜାତୀୟ ଯୋଜନାରେ ପରିଣତ ହେବେ। ଆନ୍ତର୍ଜାତୀୟ ସ୍ତରରେ କମ୍ପାନୀମାନେ ନିଯୁକ୍ତି ଯୋଗାଇବା ଲାଗି ଗୁଣାତ୍ମକ ଶିକ୍ଷା ପ୍ରଦାନ କରୁଥିବା ଅନୁଷ୍ଠାନମାନ ଖୋଜି ବୁଲୁଛନ୍ତି। ପ୍ରତିଯୋଗିତାରେ ଆଉ ସହର ଜିଲ୍ଲା, ରାଜ୍ୟ ବା ଦେଶ ସ୍ତରରେ ଆବଦ୍ଧ ନ ରହି ଆନ୍ତର୍ଜାତୀୟ ସ୍ତରରେ ମେଧାବୀ ଛାତ୍ରର ସନ୍ଧାନ କରିବ।

ଦୀର୍ଘ ୧୬ ବର୍ଷ ଅବସର ଜୀବନର ବିଭିନ୍ନ ସମୟରେ ଏହି ପୁସ୍ତକରେ ଆଲୋଚିତ ପ୍ରବନ୍ଧମାନ ଲେଖାଯାଇଅଛି, ତେଣୁ ସମୟର ପ୍ରଭାବ ଅନୁସାରେ ପ୍ରତ୍ୟେକ ପ୍ରବନ୍ଧର ବିଷୟବସ୍ତୁ ଓ ଶୈଳୀ ଅନ୍ୟ ପ୍ରବନ୍ଧଠାରୁ ଭିନ୍ନ ହୋଇଅଛି । ଦୈନିକ ସମ୍ବାଦପତ୍ରରେ ପ୍ରକାଶ ପାଉଥିବା ହେତୁ କୌଣସି ଗୋଟିଏ ବିଷୟ ବସ୍ତୁର ବିସ୍ତୃତ ଆଲୋଚନା ବା ସମାଲୋଚନା ସମ୍ଭବପର ହୋଇପାରିନାହିଁ। ଗୋଟିଏ ପୁସ୍ତକରେ ଆବଦ୍ଧ ଥିଲେ ମଧ ଗୋଟିଏ ଧାରାରେ ସବୁ ପ୍ରବନ୍ଧ ଗୁଡ଼ିକ ଲେଖା ହୋଇନାହିଁ। ଏତଦ୍‌ବ୍ୟତୀତ ସମ୍ବାଦପତ୍ରର ସାଧାରଣ ପାଠକମାନଙ୍କ ପାଇଁ ଲେଖା ହୋଇଥିବା ଦୃଷ୍ଟିରୁ ଅଧିକ ବିଜ୍ଞତାର ପରିଚୟ କୌଣସି ପ୍ରବନ୍ଧରେ ମିଳିବ ନାହିଁ। ଯାହା ଯେଉଁ ସମୟରେ ମନକୁ ଆସିଛି ଲେଖା ହୋଇଯାଉଛି। ସେହି ଦୃଷ୍ଟିରୁ ପୁସ୍ତକଟିର ପାଠକମାନେ ଅଧିକ ଆଶା ନ କରିବାକୁ ଅନୁରୋଧ।

ପୁସ୍ତକଟିରେ ଆଲୋଚିତ ଅଧିକାଂଶ ପ୍ରବନ୍ଧ ଦୈନିକ 'ସମାଜ'ରେ ବିଭିନ୍ନ ସମୟରେ ପ୍ରକାଶ ପାଇଅଛି। ପ୍ରବନ୍ଧଗୁଡ଼ିକ ପ୍ରକାଶଯୋଗ୍ୟ ବୋଲି ବିଚାର କରୁଥିବା ଦୃଷ୍ଟିରୁ ତତ୍‌କାଳୀନ ସମ୍ପାଦକ ଅଧାପିକା ଶ୍ରୀମତୀ ମନୋରମା ମହାପାତ୍ର ଏବଂ ବର୍ତ୍ତମାନର ସମ୍ପାଦକ ଶ୍ରୀଯୁକ୍ତ ଶରତଚନ୍ଦ୍ର ମିଶ୍ରଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଅଛି । ଉଭୟଙ୍କର ନିପୁଣ ସାମ୍ବାଦିକତା ପାଠକମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଆସିଅଛି । ଉତ୍କଳମଣି ଗୋପବନ୍ଧୁଙ୍କ ଦ୍ୱାରା ପ୍ରତିଷ୍ଠିତ ଦୈନିକ 'ସମାଜ' ଏବଂ ସମାଜ ପ୍ରତିଷ୍ଠାନର ଉତ୍ତରୋତ୍ତର ଉନ୍ନତି ପାଇଁ ଭଗବାନଙ୍କଠାରେ ପ୍ରାର୍ଥନା କରୁଅଛି ।

"ଜଗତୀକରଣ ପରିପ୍ରେକ୍ଷୀରେ ଆମେ ଓ ଆମ ସମାଜ" ପ୍ରବନ୍ଧଟି ଦୈନିକ 'ସମ୍ବାଦ'ରେ ପ୍ରକାଶ ପାଇଥିଲା । ସେଥିପାଇଁ ସମ୍ପାଦକ ଶ୍ରୀ ସୌମ୍ୟ ରଞ୍ଜନ ପଟ୍ଟନାୟକଙ୍କୁ ଆନ୍ତରିକ ଧନ୍ୟବାଦ୍ ଅର୍ପଣ କରୁଅଛି । ଉଚ୍ଚକୋଟୀର ସାମ୍ବାଦିକତା ପାଇଁ ସେ ଓ ଜେନେରାଲ୍ ମ୍ୟାନେଜର ଶ୍ରୀ ଗୌରହରି ଦାସ ସାଧାରଣରେ ପରିଚିତ ଏବଂ ପ୍ରତିଷ୍ଠିତ ।

ମୋର ଅବସର ଗ୍ରହଣର କିଛି ବର୍ଷ ପରେ ସାକ୍ଷାତ ହେଲା ପୁରାତନ ଛାତ୍ର ଅଧାପକ ଶ୍ରୀ ପାର୍ଥସାରଥୀ ଅଜୟ ବାରିକଙ୍କ ସାଙ୍ଗରେ । ସଚ୍ଛଳ ଆର୍ଥିକ ଅବସ୍ଥାର ଅଭାବରେ ମଧ ସେ ସାହସର ସହିତ ଅଧାପକ ଚାକିରୀ ତ୍ୟାଗ କରି 'ଚିରସଂଧାନ' ନାମକ ସାପ୍ତାହିକ ପତ୍ରିକାଟିଏ ପ୍ରକାଶ କଲେ । ସ୍ୱଳ୍ପ ସମୟ ଭିତରେ ଉକ୍ତ ପତ୍ରିକାର ସଫଳ ପ୍ରକାଶନ ସାଙ୍ଗକୁ 'ବିଜୟା ଭାରତୀ' ନାମରେ ଏକ ମାସିକ ମାଗାଜିନ୍ ପ୍ରକାଶ କଲେ । ମୋର ଅନେକ ଲେଖା ତାଙ୍କର ଉଭୟ ପତ୍ରିକାରେ ପ୍ରକାଶ କରିବା ଦ୍ୱାରା ମୋର ତାଙ୍କ ପ୍ରତି ଥିବା ସ୍ନେହକୁ ଲିପିବଦ୍ଧ କଲେ ।

କଲେଜରେ ପଢିବା ଦିନରୁ ଯେଉଁ ଅନ୍ତରଙ୍ଗ ବନ୍ଧୁ ଆତ୍ମୀୟତାର ପ୍ରଭାବରେ ମୋତେ ଓ ମୋର ଦରିଦ୍ର ହୃଦୟକୁ ଭଲ ଭାବରେ ଜାଣିପାରୁଥିଲେ ସେହି ବିଦ୍ୱାନ ବନ୍ଧୁ ପୂର୍ବତନ କୁଳପତି ପ୍ରଫେସର ଡ଼କ୍ଟର ଗୌର କିଶୋର ଦାସ ସୁଦୂର ଦିଲ୍ଲୀରେ ରହୁଥିଲେ ମଧ ବହୁମୂଲ୍ୟ ସମୟ ଦେଇ ଏହି ଏଣୁତେଣୁ ପ୍ରବନ୍ଧଗୁଡ଼ିକ ପଢି ଗୋଟିଏ ସୁସଜିତ ଚିନ୍ତାଧାରାରେ ସେମାନଙ୍କୁ ସଜାଇ ଦି' ପଦ ନିଜ କଥା କହିବାକୁ ରାଜିହେଲେ ତାହା ଏହି କ୍ଷୁଦ୍ର ପୁସ୍ତକ ପାଇଁ ବହୁତ କିଛି । ଭାଷା ମାଧମରେ ତାଙ୍କୁ କୃତଜ୍ଞତା ଜଣାଇ ହେବ ନାହିଁ । ଭାରତୀୟ ଉଚ୍ଚଶିକ୍ଷାକୁ ଆଜିର ସ୍ତରରେ ପହଞ୍ଚାଇବାରେ ଯାହାର ବିଦ୍ୟା, ବୁଦ୍ଧି, ବିଚାର ଅନେକ ପରିମାଣରେ ଦାୟୀ ତାଙ୍କ ପାଖରେ ଉଚ୍ଚଶିକ୍ଷା ସମ୍ବନ୍ଧୀୟ ଏହି ପ୍ରବନ୍ଧଗୁଡ଼ିକ କଣ ବା ଅଧିକ କହିବେ ?

ଉଚ୍ଚଶିକ୍ଷାର ଯେଉଁ ଗୋଟିଏ କ୍ଷୁଦ୍ର ଯନ୍ତ୍ର ମୋ ହାତରେ ଦିଆଯାଇଥିଲା ଏବଂ ତାକୁ ଚଳାଇ ନ ଜାଣିଥିବା ମୁଁ ଯେତେବେଳେ ଚଳାଇବାର ପ୍ରଚେଷ୍ଟା କରୁଥିଲି ମୋ ଅସହାୟତାକୁ ହୃଦୟଙ୍ଗମ କରି ଯେ ମୋତେ ମୋ ପ୍ରଚେଷ୍ଟାର କେତେକ ପଦରେ ସାହାଯ୍ୟ କରିଥିଲେ ସେହି ହୃଦୟବାନ୍ ସୁଲେଖକ ଜ୍ଞାନୀବନ୍ଧୁ ପ୍ରଫେସର ଡ଼କ୍ଟର ଶ୍ରୀଚରଣ ମହାନ୍ତି (ଅଧୁନା କଟକ ଜେ.କେ.ବି.କେ. କଲେଜର ଅଧାପକ) ଲିଖିତ ପ୍ରବନ୍ଧମାନଙ୍କର ଜ୍ୱଳନ୍ତ ସାକ୍ଷ୍ୟ ଦେଇ ମୋତେ ବିଚାରାଳୟରୁ ମୁକ୍ତି ଦେଇଛନ୍ତି ।

ଅତୀତ ବହୁତ ଅତୀତ ହୋଇଯାଇଛି । ଯେତେବେଳେ ସେ କୁହନ୍ତି ସେ ଥିଲେ ମୋ ଛାତ୍ର । ଆଜିର ଯେଉଁ ଗୁରୁଙ୍କ ପାଇଁ ସମାଲୋଚନା ଓ ଭର୍ତ୍ସନା ହେଉଛି ଗୁରୁଦକ୍ଷିଣା, ସେଠି ପୁଣି ଅତୀତର ଜଣେ ଛାତ୍ର ଆଗେଇ ଆସିଛନ୍ତି ଅତି ଆଗ୍ରହର ସହିତ ଗୁରୁବନ୍ଦନା ପାଇଁ । ଅତୀତର ସେଇ ଛାତ୍ର ଶ୍ରୀ ଲକ୍ଷ୍ମୀ ନାରାୟଣ ପାଢୀ ସଯତ୍ନେ ସାଇତି ରଖିଛନ୍ତି ତାଙ୍କ ଗୁରୁଙ୍କୁ । ସମ୍ବାଦପତ୍ରରେ ପ୍ରକାଶିତ ପ୍ରବନ୍ଧମାନଙ୍କୁ ପୁସ୍ତକ ଆକାରରେ ଛପାଇବା ଲାଗି ଶ୍ରୀ ପାଢୀଙ୍କର ଏକାନ୍ତ ଅନୁରୋଧକୁ ମୁଁ ଏଡ଼ାଇ ପାରିଲି ନାହିଁ । ପୁସ୍ତକଟି ପ୍ରକାଶ କରିବାର ସମ୍ପୂର୍ଣ୍ଣ ଦାୟିତ୍ୱ ନେଇଥିଲେ ଶ୍ରୀ ପାଢୀ । ଶ୍ରୀ ପାଢୀଙ୍କୁ ମୋର ଆନ୍ତରିକ ସାଧୁବାଦ ଜଣାଉଅଛି ।

ମୋ ଜ୍ୱାଇଁ ଡକ୍ଟର ମନୁ ପଟ୍ଟନାୟକଙ୍କର ଉଚ୍ଚକୋଟୀର ଗବେଷଣାତ୍ମକ ନିବନ୍ଧମାନଙ୍କ ଜରିଆରେ ଆନ୍ତର୍ଜାତିକ କ୍ଷେତ୍ରରେ ବହୁ ସମ୍ମାନ ଲାଭ କରିବା ମୋ ମନ ଭିତରେ ସର୍ବଦା ଉତ୍ସାହ ଭରି ଦେଉଥିଲା ଉଚ୍ଚଶିକ୍ଷା ସମ୍ବନ୍ଧୀୟ ପ୍ରବନ୍ଧମାନ ଲେଖିବା ପାଇଁ । ରାଉରକେଲାରେ ନିଜର ଦୁଇଟି ବଡ ଡାକ୍ତରଖାନାର ସମ୍ପୂର୍ଣ୍ଣ ଦାୟିତ୍ୱ ନେଇ ମଧ ପାଠପଢା ଏବଂ ଗବେଷଣା କ୍ଷେତ୍ରରେ ସମଗ୍ର ପୃଥିବୀରେ ସୁନାମ ଅର୍ଜନ କରିବା ହିଁ ମୋ ଅବସର ଜୀବନର ବ୍ୟସ୍ତବହୁଳ କାର୍ଯ୍ୟପନ୍ଥାକୁ ଅଧିକ ଶୃଙ୍ଖଳିତ କରିପାରୁଥିଲା । ଏ କ୍ଷୁଦ୍ର ପୁସ୍ତକଟି ଅନେକାଂଶରେ ତାଙ୍କ ପାଖରେ ଋଣୀ ।

ମୋ ପୁଅ ସୁମନ୍ ପ୍ରଥମରୁ ଲୋଭନୀୟ ପାର୍ଲ୍ୟାମେଣ୍ଟ ଚାକିରୀ ଛାଡି ଅଧାପନାରେ ଯୋଗଦେବା ଏବଂ ନିଜର ବିଦ୍ୟା, ବୁଦ୍ଧି ପ୍ରୟୋଗରେ ଗୋଟିଏ ଛାତ୍ରବତ୍ସଳ ଅଧାପକ ଭାବରେ ସୁନାମ ଅର୍ଜନ କରିବା ମୋ ଉଚ୍ଚଶିକ୍ଷା ସହିତ ଥିବା ସଂପୃକ୍ତିକୁ ଅଧିକ ଶକ୍ତିଶାଳୀ କରି ବିଭିନ୍ନ ସମୟରେ ଉଚ୍ଚଶିକ୍ଷା ସମ୍ବନ୍ଧୀୟ ପ୍ରବନ୍ଧମାନ ଲେଖିବା ପାଇଁ ମୋ ମନରେ ଆଗ୍ରହ ସୃଷ୍ଟି କରିପାରୁଥିଲା ।

ମୋ ସାନପୁଅ ସୁଶାନ୍ତ ଦାସ ଅନେକ ବର୍ଷ ଧରି ଅନ୍ୟ ସରକାରୀ ଚାକିରୀରେ ରହି ଏକରକମ ଶୂନ୍ୟତା ଉପଲବ୍ଧି କରିବାରୁ ସେ ଚାକରୀର ମୋହ ତ୍ୟାଗ କରି ଅଧାପନାରେ ଯୋଗ ଦେଇ ଆଧୁନିକ ଉଚ୍ଚଶିକ୍ଷାର ନୂତନ ଆହ୍ୱାନରେ ନିଜକୁ ସାମିଲ କରିପାରିଲା । ଏହାହିଁ ଥିଲା ମୋ ପାଇଁ ଉତ୍ସାହର ଆଉ ଗୋଟିଏ ଦିଗ ।

ପରିଣତ ବୟସରେ ମୋ ସ୍ୱପ୍ନକୁ ସାକାର କରିବା ଲାଗି ଏବଂ ବିଦ୍ୟା ଜଗତରେ ବଞ୍ଚି ରହିବା ଲାଗି ଅଶେଷ ଶ୍ରଦ୍ଧା ଓ ଭକ୍ତିର ସହ ସାହାଯ୍ୟ ଓ ସହଯୋଗ କରିଥିଲେ ମୋର ପୁତ୍ରବତ୍ ମେଧାବୀ ଯୁବକ ବନ୍ଧୁ ଡକ୍ଟର ସୁକାନ୍ତ ଚନ୍ଦ୍ର ସ୍ୱାଇଁ । ସେ ଏବେ ମାଙ୍ଗାଲୋରରେ ଥିବା ICFAI Business School ରେ ଅର୍ଥନୀତିରେ ପ୍ରଫେସର ଅଛନ୍ତି । ଭୁବନେଶ୍ୱର ମ୍ୟାନେଜମେଣ୍ଟ ଇନ୍‌ଷ୍ଟିଚ୍ୟୁଟ୍‌ରେ ଆସିଷ୍ଟାଣ୍ଟ ପ୍ରଫେସର ଥିବାବେଳେ ସେ ମୋ ସହିତ ଉଚ୍ଚଶିକ୍ଷାର ଅନେକ ସମସ୍ୟା ବିଷୟରେ ଆଲୋଚନା କରୁଥିଲେ । ସମ୍ବାଦପତ୍ରରେ ପ୍ରକାଶିତ ପ୍ରବନ୍ଧଗୁଡ଼ିକୁ ପୁସ୍ତକ ଆକାରରେ ପ୍ରକାଶ କରିବା ଲାଗି ସେ ହିଁ ମତେ ବହୁତ ଅନୁରୋଧ କରିଥିଲେ । 'ପୁତ୍ରବତ୍' ଲେଖିବା ପରେ ତାଙ୍କ ପାଇଁ ଔପଚାରିକ ଧନ୍ୟବାଦ୍ ଦେବା ଦୋଷରେ ପରିଣତ ହୋଇଯିବ ।

ମୋର ଏକମାତ୍ର ଝିଅ ସୀମା, ଏବଂ ଦୁଇ ବୋହୂ ସୁଜାତା ଓ ଦୀପ୍ତିଙ୍କର ନିରବଚ୍ଛିନ୍ନ ଉଦ୍‌ବେଗ ଏବଂ ଯଥାର୍ଥ ଯତ୍ନ ବିନା ପଢାପଢି ଓ ଲେଖାଲେଖି ପାଇଁ ଆବଶ୍ୟକ ଶାରୀରିକ ଓ ମାନସିକ ଶାନ୍ତି ଲାଭ ସମ୍ଭବ ହୋଇ ନଥାଆନ୍ତା । ତେଣୁ ଏ ପୁସ୍ତକଟି ସେମାନଙ୍କ ପାଖରେ ସମଭାବରେ ଋଣୀ ।

ଆଉ କେତେ ମାସ ପରେ ଡ଼ାକ୍ତର ହେବାକୁ ଯାଉଥିବା ନାତି ଦୀପମ୍‌ଜ୍ୟୋତି, ଡ଼ାକ୍ତରୀ ବିଦ୍ୟା ଆରମ୍ଭ କରିବା ଲାଗି ନିଜକୁ ପ୍ରସ୍ତୁତ କରୁଥିବା ନାତୁଣୀ ସାୟମ୍‌ସ୍ମୃତି, ଉଚ୍ଚଶିକ୍ଷା ପାହାଚର ନିକଟବର୍ତ୍ତୀ ହୋଇଥିବା ଏବଂ ସରଳତାର ମୂର୍ତ୍ତିମନ୍ତ ପ୍ରତୀକ ନାତି ସୁକ୍ରୀତ୍ ଏବଂ ତୀକ୍ଷ୍ଣ ବୁଦ୍ଧି ସମ୍ପନ୍ନା ନାତୁଣୀ ଶରଣ୍ୟା - ସେମାନଙ୍କର ସ୍ୱୀୟ ପ୍ରତିଭା ଏବଂ ସ୍ନେହ ଚାତୁରୀରେ ମତେ ବଞ୍ଚାଇ ରଖିଥିବାରୁ ସିନା ଯାହା କିଛି ଏଣୁ ତେଣୁ ଲେଖିପାରୁଛି । ତେଣୁ ଏ ପୁସ୍ତକଟି ସେମାନଙ୍କୁ ନିଜ ବିବରଣୀରୁ ବାଦ୍ ଦେବ ବା କିପରି ?

ସୁଦୂର ଜର୍ମାନୀରେ ଥାଇ ନାନାଦି ପୁସ୍ତକ, ପ୍ରବନ୍ଧ, ଗବେଷଣାତ୍ମକ ନିବନ୍ଧ ପ୍ରଭୃତି ଜରିଆରେ ମୋର ଉଚ୍ଚଶିକ୍ଷା ସମ୍ବନ୍ଧୀୟ ଜ୍ଞାନକୁ ବୃଦ୍ଧି କରି ଚାଲିଛନ୍ତି ବିଶିଷ୍ଟ ଇଞ୍ଜିନିୟର ବନ୍ଧୁ ଡ଼କ୍ଟର ରାଜେନ୍ଦ୍ର ନାରାୟଣ ଦାସ । ତାଙ୍କ ପ୍ରତିଭାର ତୁଳନା ନାହିଁ । ଉଭୟ ମେଟାଲର୍ଜିକାଲ ଇଞ୍ଜିନିୟରିଂ ଏବଂ ଓଡ଼ିଆ ସାହିତ୍ୟରେ ଗବେଷଣା କରି ଦୁଇଟି ପି ଏଚ.ଡ଼ି. ଡିଗ୍ରୀ ଲାଭ କରିଥିବା ଡ଼କ୍ଟର ଦାସଙ୍କର ଆହୁରି ଅନେକ ବିଷୟରେ ଅନେକ ଜ୍ଞାନର କଳନା କରିହୁଏ ନାହିଁ । ଜ୍ଞାନ ବିତରଣ କରିବା ସେ ସମୟ ବା ଅର୍ଥ ବ୍ୟୟ କରିବାରେ ଟିକେ ବି କୁଣ୍ଠିତ ହୁଅନ୍ତି ନାହିଁ । ଜର୍ମାନୀରୁ ଚିଠି, ପାର୍ସଲ, ଇ-ମେଲ, ଫ୍ୟାକ୍ସ ପ୍ରଭୃତି ଜରିଆରେ ଅନେକ ସୂଚନା ସେ ଯୋଗାନ୍ତି । ମୁଁ କଟକ ରେଭେନ୍ସା କଲେଜରେ ୧୯୫୮-୫୯ ମସିହାରେ ଅଧ୍ୟାପକ ଥିବା ସମୟରେ ସେ ବି.ଏସ ସି. ପଢୁଥିଲେ । ସେତେବେଳେ ବିଜ୍ଞାନ ଛାତ୍ରମାନଙ୍କୁ ମଧ ସାଧାରଣ ଶିକ୍ଷା ବା ଜେନେରାଲ ଏଜୁକେସନ ବିଷୟ ପଢାଇବାକୁ ପଡୁଥିଲା । ସେଇ ପରିପ୍ରେକ୍ଷୀରେ ମୁଁ ହୁଏତ ତାଙ୍କର ୫/୬ଟା କ୍ଲାସ ନେଇଥିବି । ସେତିକିରେ ତାଙ୍କର ଗୁରୁଭକ୍ତିର ସୀମା ସେ ଟପି ସାରିଛନ୍ତି । ମୋର କୃତଜ୍ଞତାକୁ ତାଙ୍କର ଅସୀମ ନମ୍ରତା ଏବଂ ଉଦାରତା ଗ୍ରହଣ କରିବ ତ ?

**ଗଣେଶ୍ୱର ଦାସ**

୭୫ ବର୍ଷ ବୟସରେ ପଦାର୍ପଣ କରିଥିବା ଗଣେଶ୍ୱର ଦାସ ଜଣେ ଅବସରପ୍ରାପ୍ତ ପ୍ରିନ୍‌ସିପାଲ । ଭୁବନେଶ୍ୱର ବି.ଜେ.ବି. କଲେଜ ଏବଂ ରାଉରକେଲା ସରକାରୀ ମହାବିଦ୍ୟାଳୟର ପ୍ରିନ୍‌ସିପାଲ୍ ଭାବରେ ବହୁବର୍ଷ କାର୍ଯ୍ୟ କରି ଗତ ୧୬ ବର୍ଷ ତଳେ ଅବସର ଗ୍ରହଣ କରିଥିଲେ । ପ୍ରିନ୍‌ସିପାଲ୍ ହେବା ପୂର୍ବରୁ ବହୁ ବର୍ଷ ଧରି ତର୍କ ଶାସ୍ତ୍ର ଏବଂ ଦର୍ଶନ ଶାସ୍ତ୍ରରେ ଅଧ୍ୟାପନା କାର୍ଯ୍ୟ କରି ଆସିଥିଲେ। ଅବସର ଗ୍ରହଣ ପରେ ପଢ଼ାପଢ଼ି ଓ ଲେଖାଲେଖିରେ ନିଜକୁ ସଂପୂର୍ଣ୍ଣ ଭାବରେ ବ୍ୟସ୍ତ ରଖି ଆସିଛନ୍ତି ଶ୍ରୀଯୁକ୍ତ ଦାସ । ଭୁବନେଶ୍ୱର ୨୯ ନମ୍ବର ଫରେଷ୍ଟ ପାର୍କ ସ୍ଥିତ ନିଜ ବାସଭବନରେ ସେ ସପରିବାର ରହୁଛନ୍ତି । ଟେଲିଫୋନ୍ ନମ୍ବର ୨୫୩୧୬୭୩ ।

## ଆଗରୁ ଯାହା ଲେଖା ହୋଇଯାଇଛି

୧. **ପାଶ୍ଚାତ୍ୟ ଦର୍ଶନର ଇତିହାସ (ଆଧୁନିକ ଯୁଗ)** - ଶ୍ରୀ ହୃଦାନନ୍ଦ ରାୟଙ୍କ ସାଙ୍ଗରେ ମିଳିତ ଭାବେ ।

ସତେ ଯେପରି ଦର୍ଶନ ହେଉଛି ଏକ ସ୍ମୃତିଶାଳ ବୌଦ୍ଧିକ ସାଧାରଣତନ୍ତ୍ର, ଯାହା ସକଳ ପ୍ରକାର 'ବାଦ'ର ନିର୍ବିବାଦ ବିଶ୍ରାମ ଓ ସଂଗ୍ରାମଭୂମି" ।

୨. **'ମନେ ପଡ଼େ'** ଆତ୍ମଜୀବନୀର ସମୀକ୍ଷାରୁ ଅଳ୍ପ କିଛି :

ପୂର୍ବତନ କୁଳପତି ତଥା ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପୂର୍ବତନ ଇଂରାଜୀ ପ୍ରଫେସର ଡକ୍ଟର ଗୌର କିଶୋର ଦାସଙ୍କ ଚିଠିରୁ : 'ମନେପଡ଼େ' (ଫକୀର ମୋହନଙ୍କର କ୍ଷୁଦ୍ର ଆତ୍ମଚରିତ ପରି) ଛୋଟ ବହିଟିଏ ହେଲେ ବି ଖୁବ୍ ଚିତ୍ତାକର୍ଷକ ହୋଇଛି । ***** ଆପଣଙ୍କ ଲେଖାର ସବୁଠୁ ବଡ ଗୁଣ ହେଉଛି ହୃଦୟର ଗହୀରିଆ ଭାବର ସଚ୍ଛ ପ୍ରକାଶ । ***** ଏ ପ୍ରକାର ଲେଖାର ଉପଯୁକ୍ତ ପ୍ରତିଦାନ ହେଉଛି ପାଠକ ହୃଦୟର ସ୍ପନ୍ଦନ ଯାହା କି କବି / ଲେଖକଙ୍କୁ ଭାଷାରେ ପ୍ରକାଶ କରି ହୁଏ ନାହିଁ ।

*****

ପୂର୍ବତନ କୁଳପତି ତଥା ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ ଦର୍ଶନଶାସ୍ତ୍ର ପ୍ରଫେସର ତଥା ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପୂର୍ବତନ ଏମିରିଟସ୍ ପ୍ରଫେସର ଡକ୍ଟର ଗୌରାଙ୍ଗ ଚରଣ ନାୟକଙ୍କ ପ୍ରବନ୍ଧ "ନମସ୍ୟ ଗଣେଶ୍ୱର ଦାସ ଓ ତାଙ୍କର ଆତ୍ମଜୀବନୀ'ରୁ -

"ଅପରର ଗୁଣଗାନରେ ପଞ୍ଚମୁଖ ହୋଇ, ଅପରକୁ ଶୀର୍ଷ ସ୍ଥାନରେ ବସାଇ ନିଜେ ବାସ୍ତବରେ ବଡ଼ ହେବାର ଏ ଯେଉଁ ବିରଳ ପ୍ରତିଭାର ଅଧିକାରୀ ସେ, ସେଇଥିଲାଗି ସେ ନମସ୍ୟ ଏବଂ ସେଇଥି ପାଇଁ ତାଙ୍କର ଯଥାର୍ଥ ମୂଲ୍ୟାୟନ ଏତେ ସହଜ ନୁହେଁ । ***** ଅଳ୍ପରେ ଗଭୀର ଭାବ ପ୍ରକାଶର ଚମତ୍କାରିତା ଏ ଆତ୍ମଜୀବନୀର ଏକ ବୈଶିଷ୍ଟ୍ୟ । **** ଅଧ୍ୟାପକ ଦାସଙ୍କର ଆତ୍ମଜୀବନୀ ଆମ ଭଳି ଚିରସଂଘର୍ଷରତ ସାଧାରଣ ମଣିଷଟିର ଆତ୍ମକାହାଣୀ - ଯେଉଁଠି ସାଧାରଣ ମଣିଷଟିଏ ତା'ର ନିଷ୍ଠା ତଥା ସାଧନା ବଳରେ ଅସାଧାରଣ ସିଦ୍ଧି ପାଇପାରିଛି ।" *****

**ଦୈନିକ "ସମ୍ବାଦ"** - ****** "ବହିଟିକୁ ଲେଖକ ଅନ୍ତରଙ୍ଗ ଶୈଳୀରେ ଲେଖିଛନ୍ତି, ଯାହା ପଢ଼ିଲେ ବହିର ବର୍ଣ୍ଣିତ ପୃଷ୍ଠାଗୁଡ଼ିକ ଫାଙ୍କରୁ ଜଣେ ବିନୟୀ, ଦାୟିତ୍ୱ ସମ୍ପନ୍ନ ଏବଂ ଛାତ୍ରବତ୍ସଳ ଅଧ୍ୟାପକଙ୍କ ମୂର୍ତ୍ତି ଭାସିଉଠେ ।" *****

୩. **"ବୈକୁଣ୍ଠ ସମାନ ଆହା ଅଟେ ସେହି ଘର"** - ସମ୍ପୂର୍ଣ୍ଣଭାବେ ପାରିବାରିକ କବିତା ସଂକଳନରୁ କିଛି ଟିକେ -

"ବାକି ସପ୍ନ ସବୁ ଦେଇଗଲି ତତେ - ମୋ ସମ୍ପତ୍ତିର ଉତ୍ତରାଧିକାରୀକୁ - ମୋ ସପ୍ନହୀନ ଜୀବନ ଯେତେବେଳେ ଗତିହୀନ ହେବ - ବୋହିନେବୁ କାନ୍ଧରେ ତୋର, ସୁନା ପୁଅ ମୋର ।"

"Bijon, you should be living at this hour - Physics has a need of your virtue and power - Men of Science await your devotion - Scholars wonder, where are you gone".

୪. **Value Sysem** - Joint author Dibakar Sahoo.

"A Science without the touch of ethics is like a sail without a sailor. And religion without ethical foundation leads to fanaticism and terrorism".




## ସଂକ୍ଷେପରେ....

- ଉଚ୍ଚଶିକ୍ଷା ଲାଭ ପାଇଁ ଗୁଡ଼ିଏ ଶିକ୍ଷାନୁଷ୍ଠାନ ଖୋଲି ଖାଲି ଅଧିକ ସୁଯୋଗ ସୃଷ୍ଟି କରିଦେଲେ ଚଳିବ ନାହିଁ, ଉକ୍ତ ସୁଯୋଗ ସାଙ୍ଗକୁ ନିଯୁକ୍ତି ସୁଯୋଗ ଯୋଗାଇବା ମଧ୍ୟ ଏକାନ୍ତ ଆବଶ୍ୟକ ।
- ଶିକ୍ଷାର ଗୁଣାତ୍ମକମାନ ରକ୍ଷା କରିବା କେବେ ଅଧକ୍ଷ, ଅଧାପକ ବା କର୍ମଚାରୀବୃନ୍ଦଙ୍କ ଦାୟିତ୍ୱ ନୁହେଁ । ବରଂ ଏହା ଅଧିକ ଫଳପ୍ରଦହେବ ଯଦି ଉଚ୍ଚଶିକ୍ଷାର ମୁଖ୍ୟ ଅଂଶୀଦାର ଛାତ୍ରମାନଙ୍କର ସହଯୋଗ ଲୋଡ଼ାଯାଏ ।
- ଉଚ୍ଚଶିକ୍ଷାନୁଷ୍ଠାନ ମାନଙ୍କୁ ବିଶ୍ୱବିଦ୍ୟାଳୟ ବା ସ୍ୱୟଂଚାଳିତ ଅନୁଷ୍ଠାନରେ ପରିଣତ କରିବା ବିଷୟରେ ୨ ୦ ୦ ୨ ନଲେଜ କମିସନଙ୍କ ମତ ବାସ୍ତବିକ ଏକ ନୂତନ ଆହ୍ୱାନ, ସେହି ଦିଗରେ ସରକାର ଏବଂ ଘରୋଇ ସଂସ୍ଥାମାନଙ୍କର ଉଦ୍ୟମ ଏକାନ୍ତ ଆବଶ୍ୟକ ।
- ଦେଶରେ ଥିବା ୫୫ କୋଟି ଯୁବକଙ୍କ ଜରିଆରେ ଦେଶକୁ ଦାରିଦ୍ର୍ୟରୁ ସମୃଦ୍ଧ ସ୍ତରକୁ ଆଣି ପୃଥିବୀର ବିକାଶଶୀଳ ରାଷ୍ଟ୍ରମାନଙ୍କ ସହିତ ସ୍ଥାନ ଦେବାକୁ ପଡ଼ିବ ।
- ମା ପିଲାକୁ ଶିକ୍ଷାଦାନ କରିବା ପୂର୍ବରୁ ତା ନିଜର ଅଧିକାର, ସମାଜରେ ନିଜର ପରିଚୟ ସାବ୍ୟସ୍ତ କରିବା ନିତାନ୍ତ ଜରୁରୀ ।
- ଭାରତ ସରକାରଙ୍କର ଶିକ୍ଷାନୀତି ଭୋଟ ପାଇବା ଦୃଷ୍ଟିରୁ ସୁବିଧାଜନକ ହୋଇପାରିଥାଏ, କିନ୍ତୁ ଭାରତୀୟ ଶିକ୍ଷା ପଦ୍ଧତିର ମାନ ନିର୍ଦ୍ଧାରଣ ପାଇଁ ନୁହେଁ ।
- ମାନସିଂହଙ୍କ ଉଇଲ ଏବଂ ସୁଯୋଗ୍ୟ ପୁତ୍ରମାନଙ୍କ ଦ୍ୱାରା ଉଇଲର କାର୍ଯ୍ୟକାରୀତା ବୋଧହୁଏ ଅନେକ ଧନଶାଳୀ ବାପା ଏବଂ ପିତୃଧନ ଲୋଭୀ ପୁଅମାନଙ୍କ ପାଇଁ ଶିକ୍ଷାଗତ ପ୍ରଶ୍ନବାଚୀ ହୋଇ ରହିଯିବ ।
- ଆଗାମୀ ଶତାବ୍ଦୀରେ ଭାରତବର୍ଷ ତା'ର ଅତୀତ ଗୌରବକୁ ସ୍ମରଣ କରି ଗୋଟିଏ ଅଦ୍ୱିତୀୟ ବୌଦ୍ଧିକ ଏବଂ ଅର୍ଥନୈତିକ ଶକ୍ତି ହୋଇଉଠିବ ।

**Dr. Srinivas Sahu, I.A.S. (Retd.)**
Member, Odisha State Commission for Backward Classes
Ex-Vice-Chancellor, Utkal & Sambalpur University
Ex- Director, Higher Education, Odisha.

# ମୁଖବନ୍ଧ

ମୁଁ ଅତ୍ୟନ୍ତ ଆନନ୍ଦିତ ଯେ ମୋର ଅତି ପ୍ରିୟ ଛାତ୍ର ଗଣେଶ୍ୱର ଅବସର ନେବା ପରେ ମଧ ଦୀର୍ଘ ଅଠର ବର୍ଷ କାଳ ବିଭିନ୍ନ ବିଷୟରେ ନିଜ ଚିନ୍ତାଧାରା ସମାଜ, ସମ୍ବାଦ ପରି ଲୋକପ୍ରିୟ ଉତ୍କୃଷ୍ଟ ଦୈନିକ ତଥା ଅନ୍ୟାନ୍ୟ ପତ୍ର ପତ୍ରିକା ମାଧମରେ ଜନସାଧାରଣଙ୍କ ପାଖରେ ପହଞ୍ଚାଇ ପାରୁଛି । ମଣିଷ ନିଜ ଜୀବନ କାଳ ମଧରେ ଯେତେ ଧନ ଓ ମାନ ପାଇଥିଲେ ମଧ ସମାଜର ଅନେକ ସମସ୍ୟା ଦ୍ୱାରା ପ୍ରଭାବିତ ହୋଇଥାଏ । ସେଇ ସମସ୍ୟା ସବୁର ସମାଧାନ ଦିଗରେ ଗଣେଶ୍ୱରର ଲେଖାମାନ ନିଶ୍ଚିତ ଭାବରେ ଏକ ଦିଗ ପ୍ରଦର୍ଶନ କରିବ ।

ସୂଚନା ପ୍ରଯୁକ୍ତିର ପ୍ରଗତି ହେତୁ ସୃଷ୍ଟି ହୋଇଥିବା ଜଗତୀକରଣ ପ୍ରକ୍ରିୟା ସମାଜର ବାଣିଜ୍ୟ, ବ୍ୟବସାୟ, ସମାଚାର ବିନିମୟ, ପ୍ରଭୃତି କ୍ଷେତ୍ରରେ ଏପରି ଆଲୋଡ଼ନ ଆଣିଛି ଯାହା ଫଳରେ ଉଚ୍ଚଶିକ୍ଷା ଓ ବିଶ୍ୱବିଦ୍ୟାଳୟର ଗଠନ ସହ ପରିଚାଳନାରେ ପରିବର୍ତ୍ତନ ନିତାନ୍ତ ଆବଶ୍ୟକ ହୋଇ ପଡ଼ିଛି । ସାମାଜିକ ପରିସ୍ଥିତିଠାରୁ ଦୂରରେ ରହି ବିଶ୍ୱ ବିଦ୍ୟାଳୟ ମାନେ କେବଳ ଶିକ୍ଷାକେନ୍ଦ୍ର ହୋଇ ରହିବା ଆଉ ସମ୍ଭବ ହେଉ ନାହିଁ । ସମାଚାର ବିନିମୟ ପ୍ରଯୁକ୍ତିର ପ୍ରଭାବରେ ବିଶ୍ୱ ବିଦ୍ୟାଳୟ ମାନେ ପାଠ୍ୟକ୍ରମରେ ପରିବର୍ତ୍ତନ ଏବଂ ଶିକ୍ଷାର ଗୁଣାତ୍ମକ ଅଭିବୃଦ୍ଧି ଉପରେ ଦୃଷ୍ଟି ରଖୁଛନ୍ତି । ଅକ୍ସ୍‌ଫୋର୍ଡ୍, ହାର୍ବାଡ୍, କେମ୍ବ୍ରିଜ୍, ପରି ବିଶ୍‌ବିଦ୍ୟାଳୟ ମାନଙ୍କର ଶିକ୍ଷା ଓ ଗବେଷଣାର ଯେଉଁ ପରମ୍ପରା ସୃଷ୍ଟି କରାଯାଇଥିଲା ଏବଂ ଉକ୍ତ ବିଶ୍ୱ ବିଦ୍ୟାଳୟ ମାନଙ୍କରେ ପାଠ ପଢିବା ଲାଗି ଯେପରି ଆଗ୍ରହ ପ୍ରକାଶ ପାଉଥିଲା ସେ ସବୁ ପରିବର୍ତ୍ତିତ ପରିସ୍ଥିତିରେ କ୍ରମଶଃ ଲୋପ ପାଇଯାଇଛି । ଶିକ୍ଷାରେ ପରିବର୍ତ୍ତନକୁ ଲକ୍ଷ୍ୟ କରି ଦାର୍ଶନିକ ହ୍ୱାଇଟ୍ ହେଡ୍ (Whitehead) ଲେଖିଥିଲେ ("Where is the wisdom we lost in knowledge, where is the knowledge we lost in information ? ") ଉଚ୍ଚଶିକ୍ଷା ସମ୍ବନ୍ଧରେ ଯେଉଁ ପ୍ରଶ୍ନବାଚୀ ପ୍ରକାଶ ପାଇଛି ଏ ଦିଗରେ ଗଣେଶ୍ୱର ଲେଖିଥିବା ପ୍ରବନ୍ଧ ମାନ କିଛିଟା ସମାଧାନ ଦେଇ ପାରିବ ବୋଲି ମୋର ଆଶା । ଶିକ୍ଷା ଜଗତରେ ତଥାକଥିତ ପରିବର୍ତ୍ତନ କେବଳ ଆଲୋଡ଼ନ ସୃଷ୍ଟି କରୁଛି । ଏପରିକି ପରୀକ୍ଷାର ଅବଶ୍ୟକତା ନେଇ ସନ୍ଦେହ ସୃଷ୍ଟି କରୁଛି । ଛାତ୍ର ଓ ଅଧାପକଙ୍କ ଭିତରେ ଥିବା ସଂପର୍କରେ ପରିବର୍ତ୍ତନ ଲକ୍ଷ୍ୟ କରାଗଲାଣି । ଛାତ୍ରଙ୍କ ପାଇଁ ଅଧାପକ ଆଉ ଆଦର୍ଶ ହୋଇ ରହି ନାହିଁ । ପଇସା ଖର୍ଚ୍ଚ କରୁଥିବା ଛାତ୍ର ପଇସାର ମୂଲ୍ୟ ପାଇବାରେ ହକ୍‌ଦାର ବୋଲି ସେ ନିଜେ ଅନୁଭବ କରୁଛି । ଏହିସବୁ ଦୃଷ୍ଟିରୁ ବିଶ୍‌ବିଦ୍ୟାଳୟ ମାନଙ୍କରେ ଶୁଦ୍ଧ ଗବେଷଣା ପାଇଁ ଆଉ ଛାତ୍ର ଆସୁନାହାନ୍ତି । ଅଳ୍ପ କିଛି ବର୍ଷ ପରେ ଏହି ପରିବର୍ତ୍ତନର ପ୍ରଭାବରେ ଆମ ମହାବିଦ୍ୟାଳୟ ମାନଙ୍କରେ ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଇତିହାସ, ସାହିତ୍ୟ, ଦର୍ଶନ ପ୍ରଭୃତି ବିଷୟରେ ଅଧାପନା ଲାଗି ଅଧାପକ ମିଳିବେ ନାହିଁ । ପୃଥିବୀର ସର୍ବଶ୍ରେଷ୍ଠ ପୁରସ୍କାର ନୋବେଲ ପ୍ରାଇଜ୍ ପାଇଁ ମଧ ଅନେକ ବିଷୟରେ ଉପଯୁକ୍ତ ବ୍ୟକ୍ତି ମିଳୁ ନାହାନ୍ତି । ଏହା ଏକ ଦୁର୍ଭାଗ୍ୟ । ଯଦି ଚେର ଶୁଖିଯାଏ ଫୁଲ ଫୁଟିବ କେମିତି ? ଏପରି ଗୁରୁତର ସମସ୍ୟା ମାନଙ୍କୁ ନେଇ ଗଣେଶ୍ୱର ତା'ର ପ୍ରବନ୍ଧ ମାନଙ୍କ ଜରିଆରେ ଯେପରି ଆଲୋଚନା କରିଛି ତାହା ଅତି ଉପାଦେୟ ଓ ପ୍ରଭାବଶାଳୀ ।

ଛାତ୍ରାବସ୍ଥାରେ ଗଣେଶ୍ୱର ଜଣେ ମେଧାବୀ ଛାତ୍ର ଥିଲେ । ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଅଧକ୍ଷ ଭାବରେ ମୁଁ ଓ ପ୍ରାଧାପକ ଭାବରେ ସେ ଛାତ୍ରମାନଙ୍କୁ ଦର୍ଶନ ଶାସ୍ତ୍ର ପଢାଉଥିଲୁ । ତା'ର ଉଚ୍ଚକୋଟୀର ଅଧାପନାରେ ଛାତ୍ରମାନେ ଅତି ଉପକୃତ ହେଉଥିଲେ । ଉଚ୍ଚଶିକ୍ଷା ସମ୍ବନ୍ଧୀୟ ଗଣେଶ୍ୱର ଲେଖିଥିବା କେତୋଟି ଉପାଦେୟ ପ୍ରବନ୍ଧର ସମାହାରରେ ପୂର୍ବରୁ ଗୋଟିଏ ପୁସ୍ତକ, "ନୂତନ ଆହ୍ୱାନ - ଜଗତୀକରଣ ଓ ଭାରତୀୟ ଉଚ୍ଚଶିକ୍ଷା" ପ୍ରାୟ ୨/୩ ବର୍ଷ ତଳେ ପ୍ରକାଶ ପାଇ ସାରିଛି । ଦୀର୍ଘ ସମୟ ଧରି ଗୁରୁତ୍ୱପୂର୍ଣ୍ଣ ଅଧାପକ ଓ ଅଧକ୍ଷ ପଦବୀରେ ରହି ଉଚ୍ଚଶିକ୍ଷା ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥାଇ ନିଜ ଅଭିଜ୍ଞତା ଓ ବିଚାରକୁ ପ୍ରବନ୍ଧ ଜରିଆରେ ପାଠକ ମାନଙ୍କ ନିକଟରେ ପହଞ୍ଚାଇବାକୁ ଗଣେଶ୍ୱର ଚେଷ୍ଟା କରିଛି ଉକ୍ତ ପୁସ୍ତକଟିରେ ।

ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ଇଂରାଜୀ ପ୍ରଫେସର ଏବଂ ପୂର୍ବତନ କୁଳପତି ପ୍ରଫେସର ଡକ୍ଟର ଗୌରକିଶୋର ଦାସ ଉକ୍ତ ପୁସ୍ତକଟି ପାଇଁ ମୁଖବନ୍ଧ ଲେଖିଛନ୍ତି ।

ଏବେ ପ୍ରକାଶ ପାଉଥିବା ପୁସ୍ତକଟିରେ ଗଣେଶ୍ୱର ଧର୍ମଦର୍ଶନ ସମ୍ବନ୍ଧୀୟ କେତୋଟି ପ୍ରବନ୍ଧ ଲେଖିଛନ୍ତି । ଏହି ପ୍ରବନ୍ଧ ଗୁଡ଼ିକ ମଧ୍ୟରୁ କେତେଗୁଡ଼ିଏ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଅଛି । ଦର୍ଶନ ବିଷୟଟି ମଣିଷକୁ ଆଦିମ ଯୁଗରୁ ଆକୃଷ୍ଟ କରିଛି । ଯେ କୌଣସି ବ୍ୟାପାରରେ ଗଭୀର ତଥା ସାର୍ବିକ ଅନୁଧ୍ୟାନକୁ ସାଧାରଣତଃ ଦର୍ଶନ ସମ୍ବନ୍ଧୀୟ ବୋଲି ଗ୍ରହଣ କରାଯାଇଛି । "ନାନା ମୁନି ନାନା ମତ" ସଦୃଶ ଦର୍ଶନ ଚର୍ଚ୍ଚାରେ ମଧ୍ୟ ବିଭିନ୍ନ ମତବାଦ ସୃଷ୍ଟି ହୋଇଛି ଏବଂ ତାହା ଅସ୍ୱାଭାବିକ ନୁହେଁ । ଯେ କୌଣସି ନିର୍ଦ୍ଦିଷ୍ଟ ବିଷୟ (କଳା ବା ବିଜ୍ଞାନ)ର ଚର୍ଚ୍ଚାରେ ମତଭେଦ ସୃଷ୍ଟି ହୁଏ । ଆଜି ଯାହାକୁ କୌଣସି ସମସ୍ୟାର ଶେଷ ସମାଧାନ ବୋଲି ସ୍ୱୀକାର କରାଯାଏ, ଭିନ୍ନ ପରିସ୍ଥିତିରେ ଅଥବା ଅନ୍ୟ କିଛି ତଥ୍ୟ ଉନ୍ମୋଚନ ହେଲେ, ତାହାର ସଂଶୋଧନ କରିବା ଆବଶ୍ୟକ ହୁଏ । ତେଣୁ କୌଣସି ବିଷୟରେ ଚର୍ଚ୍ଚାରେ ସିଦ୍ଧାନ୍ତ ଅକାଟ୍ୟ, ଅଲଂଘନୀୟ ବା ଅପରିବର୍ତ୍ତନୀୟ ବୋଲି ବିଚାରିବା ଉଚିତ୍ ନୁହେଁ । ସେହି ଦୃଷ୍ଟିରୁ ଦାର୍ଶନିକ ପରିସରରେ ମଧ୍ୟ ନାନା ସିଦ୍ଧାନ୍ତ ସମ୍ଭବ ହୁଏ ଏବଂ ବିଶ୍ଳେଷଣାତ୍ମକ ଅନୁଶୀଳନ ମାଧ୍ୟମରେ ତନ୍ମଧ୍ୟରୁ ଗୋଟିକୁ ସାମୟିକ ଭାବେ ଗ୍ରହଣ କରାଯାଏ, ଯେପର୍ଯ୍ୟନ୍ତ ଅନ୍ୟ କିଛି ଅନାଲୋଚିତ ଦିଗ ସେ କ୍ଷେତ୍ରରେ ଉନ୍ମୋଚିତ ହୋଇନାହିଁ । ଏହି ପରିପ୍ରେକ୍ଷୀରେ ଭାରତୀୟ ଦାର୍ଶନିକ ପରମ୍ପରାରେ ମଧ୍ୟ "ବାଦେ ବାଦେ ଜାୟତେ ତତ୍ତ୍ୱବୋଧ" ଉକ୍ତିଟିର ସମର୍ଥନ କରାଯାଇଛି । ଯେକୌଣସି ବ୍ୟାପାରରେ ଦାର୍ଶନିକ ଅନୁଧ୍ୟାନ ସମ୍ଭବ । ସେଥିପାଇଁ କଳା ହେଉ ବା ବିଜ୍ଞାନ ହେଉ ଅଥବା ଧର୍ମ ହେଉ କିମ୍ବା ତତ୍ତୁଲ୍ୟ ଯେକୌଣସି ବିଷୟ ନେଇ ଦାର୍ଶନିକ ବିଚାର କରାଯାଇପାରେ । ଦାର୍ଶନିକ ଅନୁଧ୍ୟାନ ସତର୍କତାର ସହ ସମସ୍ତ ଦିଗ ପ୍ରତି ସଜାଗ ହେବା ଉଚିତ୍ । ବିଶେଷ କରି ସାମ୍ପ୍ରତିକ ବାତାବରଣ ବ୍ୟବସ୍ଥା ଏବଂ ସର୍ବୋପରି ମାନବୀୟ ସାମାଜିକ ବ୍ୟବସ୍ଥିତି ମାଧ୍ୟମରେ ବିଚାରବୁଦ୍ଧି ପ୍ରୟୋଗ ଦ୍ୱାରା ଦାର୍ଶନିକ ଆଲୋଚନା ନିୟୋଜିତ ହୋଇଥାଏ । ଦର୍ଶନ ସମ୍ବନ୍ଧୀୟ ଏହି ଭାବଧାରାକୁ ଗଣେଶ୍ୱର ତାର ପ୍ରବନ୍ଧ ମାନଙ୍କରେ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଓଡ଼ିଶାରେ ଦର୍ଶନ ଚିନ୍ତାଧାରା କିପରି ଭାବରେ ଗତି କରି ଆସିଛି ଏବଂ ବର୍ତ୍ତମାନ ସମୟରେ ମଧ୍ୟ ଉକ୍ତ ଚିନ୍ତାଧାରା ସମାଜକୁ କିପରି ପ୍ରଭାବିତ କରୁଅଛି ତାହାର ଆଲୋଚନା କରିଅଛି ।

**ଶ୍ରୀନିବାସ ସାହୁ**

**Prof. Dr. Gouranga Charan Nayak**
M.A. (Alld.) Ph.D. (Bristol)
Ex-Vice-Chancellor, Sri Jagannath Sanskrit University
Professor of Philosophy, Utkal University
Ex-U.G.C. Emeritus Fellow, Banaras Hindu University

## ଅଭିମତ

ଏବେ ଖବର କାଗଜ ତଥା ଇଲେକ୍ଟ୍ରୋନିକ୍ ମିଡ଼ିଆର ବହୁଳ ପ୍ରୟୋଗ ଯୋଗୁଁ କେତେ ଗୁଡ଼ିଏ ଶବ୍ଦ ଆମର ସୁପରିଚିତ ହୋଇସାରିଲେଣି - ଯଥା, ସେଲିବ୍ରିଟି (celebrity), ଲିଟରାଟି (literati), ଗ୍ଲିଟରାଟି (glitterati), ଇଲିଟି (elite), ଆଇକନ୍ (icon), ଆଦି । କେତେକ ବୁଦ୍ଧିଜୀବି, ଶିକ୍ଷାବିତ୍, ଆଧୁନିକ ଆଧ୍ୟାତ୍ମ-ଗୁରୁ, ରାଜ-ନେତା, ସଙ୍ଗୀତ, ସାହିତ୍ୟ, କ୍ରୀଡା ଜଗତ, ଚଳଚ୍ଚିତ୍ର ଆଦିର ସୁପରଷ୍ଟାର ଗଣ - ଏ ସମସ୍ତେ ବିଭିନ୍ନ ରୂପେ ଏହାର ଅନ୍ତର୍ଭୁକ୍ତ ବୋଲି ଧରି ନିଆଯାଏ । ଏମାନେ ସମସ୍ତେ ହେଲେ ସମାଜର "ବଡ଼ ବଡ଼ିଆ", ଭିନେ କାଟିଗୋରି (category)ର ମଣିଷ ଏମାନେ । ମୁଁ ଏଠାରେ ସର୍ବପ୍ରଥମେ ମୋ ନିଜ ସମ୍ପର୍କରେ ଦିପଦ କହିବା ଉଚିତ୍ ମନେକରେ ଏବଂ ତାହା କରିବାକୁ ଯାଇ ମୁଁ ସ୍ପଷ୍ଟ କରିଦେବାକୁ ଚାହେଁ ଯେ ମୁଁ ଉପରୋକ୍ତ କୌଣସି ଗୋଷ୍ଠୀର ଲୋକ ନୁହେଁ ଏବଂ ଏହା ହେବା ମୋ ପକ୍ଷରେ ସମ୍ଭବ ମଧ୍ୟ ନୁହେଁ । ମୁଁ ସାମାନ୍ୟ ଦିଅକ୍ଷର ପାଠ ପଢ଼ିଛି ସତ, ତା' କିନ୍ତୁ ମୋର ୰ପିତା, ମାତାଙ୍କ ଅକ୍ଲାନ୍ତ ଉଦ୍ୟମ ଓ ଅକଳନୀୟ ଆତ୍ମତ୍ୟାଗ ଯୋଗୁଁ ହିଁ ସମ୍ଭବ ହୋଇ ପାରିଛି । ପୁଣି ବୃତ୍ତିରେ କେବେ କେଉଁଠି ପାଠ ପଢେଇବା କର୍ମରେ ନିଯୁକ୍ତି ପାଇଛି, କେଉଁଠି ଅବା ଶିକ୍ଷା କ୍ଷେତ୍ରର ପ୍ରଶାସନ ସଙ୍ଗେ ହୁଏତ ସାମୟିକ ସମ୍ପର୍କରେ ଆସିଛି - ମାତ୍ର ଏସବୁ ମୋର ଅତୀତ ଏବଂ ବୃତ୍ତିଗତ ହୋଇଥିବାରୁ ଏହାକୁ ମୁଁ ମୋର ସ୍ୱାଭାବିକ ପରିଚୟ ରୂପେ ସ୍ୱୀକାର କରେନାହିଁ । ମୁଁ ବାସ୍ତବରେ ଜଣେ "ଶିକ୍ଷାର୍ଥୀ", ଏହାହିଁ ମୋର ହୃଦ୍‌ବୋଧ ହୋଇଛି - ଏବଂ ଏହାହିଁ ମୋର କାମଚଳା ପରିଚୟ ବୋଲି ମୁଁ କହିବି । ଏବେ ମଧ୍ୟ ମୋ କ୍ଷୁଦ୍ରବୁଦ୍ଧିରେ ଏ ବିଶାଳ ବିଶ୍ୱବ୍ରହ୍ମାଣ୍ଡର ରହସ୍ୟକୁ ଯଥାଶକ୍ତି ବୁଝିବା ଲାଗି ମୋର ପ୍ରୟାସ ଜାରି ରହିଛି । ଆଉ ଯା ଭିତରେ "ମଣିଷ"କୁ ବୁଝିବା ଲାଗି ମୋର ଦୁର୍ଦ୍ଦମନୀୟ ଅଭିଳାଷ ଦିନକୁ ଦିନ ଅଧିକରୁ ଅଧିକ ପ୍ରବଳ ହେବାରେ ଲାଗିଛି - ମୋର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ । ଏପରି ସ୍ଥଳେ ଏବେ ମୋର ପରିଣତ ବୟସରେ ମୁଁ ଯେତେବେଳେ ସୁନାମଧନ୍ୟ ପ୍ରଫେସର ଗଣେଶ୍ୱର ଦାସଙ୍କ ସଙ୍ଗେ ନିକଟ ସମ୍ପର୍କରେ ଆସିଲି, ତାଙ୍କର ମହନୀୟତା ମତେ ଆଚମ୍ବିତ ତଥା ବିମୁଗ୍ଧ କରି ପକାଇବା କିଛି ବିଚିତ୍ର ନଥିଲା । ମଣିଷଟିଏ "ଅହଙ୍କାର-ବିମୂଢ଼ାତ୍ମା" ନହୋଇ ଏତେ ସହଜରେ "ଅହଙ୍କାର-ବିମୁକ୍ତାତ୍ମା" (କେହି ଯଦି ମନେକରନ୍ତି - ଅନ୍ତତଃ କାମଚଳା ହେଉ ପଛକେ) ହୋଇପାରେ, ଏହା ଥିଲା ମୋ ଲାଗି ଏକ ଅପୂର୍ବ ଅନୁଭୂତି । ମୁଁ ମୋ ଢଙ୍ଗରେ ତାଙ୍କଠୁ କିଛି ଶିଖିବାକୁ ଚେଷ୍ଟାକଲି, ସେ ମଧ୍ୟ ମତେ ନୂଆ ନୂଆ ପ୍ରେରଣା ଯୋଗାଇ ଦେଲେ; ଏପରି ସ୍ଥଳେ କୌଣସି ଶିକ୍ଷାନୁଷ୍ଠାନରେ ମତେ ପ୍ରତ୍ୟକ୍ଷ ଭାବେ ଶିକ୍ଷା ନ ଦେଇ ମଧ୍ୟ ସେ ହୋଇଗଲେ ମୋର ପୂଜ୍ୟ ଶିକ୍ଷାଗୁରୁ -ସ୍ୱାଭାବିକ ଭାବରେ । ଆଉ ଯେତେବେଳେ ସେ ତାଙ୍କର ସଦ୍ୟ ପ୍ରକାଶିତ ହେବାକୁ ଯାଉଥିବା ଗ୍ରନ୍ଥ ସଂପର୍କରେ ଦିପଦ ଲେଖିବା ପାଇଁ ମତେ ତାଙ୍କ ସ୍ୱଭାବ ସୁଲଭ ଢଙ୍ଗରେ ବିନମ୍ର ଅନୁରୋଧ ଜଣାଇଲେ, ତାହାଥିଲା ମୋ ଲାଗି ପୂଜ୍ୟ ଗୁରୁଙ୍କର ଅଭ୍ରାନ୍ତ ନିର୍ଦ୍ଦେଶ ଏବଂ ସେଥିଲାଗି ମୁଁ ବାସ୍ତବରେ ତାଙ୍କ ନିକଟରେ ଋଣୀ ହୋଇ ରହିଗଲି । କିଏ ଏଭଳି ସୁଯୋଗ ହାତଛଡ଼ା କରିପାରେ ।

ପ୍ରଫେସର ଦାସଙ୍କର "ଶିକ୍ଷାଦର୍ଶନ ଓ ସମାଜ-ଚେତନା" ନାମକ ଏହି ଗ୍ରନ୍ଥଟି ଓଡ଼ିଆ ଓ ଇଂରାଜୀ ଭାଷାରେ ରଚିତ ତାଙ୍କର ଲେଖାଗୁଡ଼ିକର ଏକ ସୁନ୍ଦର ସଂକଳନ, ଏବଂ ଯେଉଁ ଭଦ୍ରବ୍ୟକ୍ତି ଏହି ସଂକଳନ ପ୍ରକାଶ କରିବା ଲାଗି ପ୍ରଫେସର ଦାସଙ୍କୁ ପ୍ରେରଣା ଯୋଗାଇଲେ, ସେ ଆମ ସମସ୍ତଙ୍କ ଅଶେଷ ଉପକାର ସାଧନ କଲେ, ଏଥିରେ ଦ୍ୱିମତର ଅବକାଶ ନାହିଁ । ଏହାଦ୍ୱାରା ପ୍ରଫେସରଙ୍କ ବହୁମୁଖୀ ପ୍ରତିଭାର ଏକତ୍ର ସମାବେଶ, ଯାହା ଆମ ଲାଗି ଏଯାବତ୍ ଦୁର୍ଲଭ ଥିଲା, ତାହା ଉକ୍ତ ଭଦ୍ରବ୍ୟକ୍ତି ଆମ ପାଇଁ ସୁଲଭ କରିଦେଲେ; ତେଣିକି ଆମେ ଯଥାଶକ୍ତି ଏହାର କେତେଦୂର ସଦୁପଯୋଗ କରିପାରିବା, ତାହା ଆମ ଉପରେ ହିଁ ନିର୍ଭର କରେ । ଏହି ଗ୍ରନ୍ଥରେ ସନ୍ନିବେଶିତ କେତେକ ପ୍ରବନ୍ଧର ନାମକରଣରୁ ହିଁ ଏଥିରେ ଲେଖକଙ୍କର ବହୁମୁଖୀ ପ୍ରତିଭା ର ସାକ୍ଷର ବାରି ହୋଇଯାଏ - ଯଥା - "ଭାରତୀୟ ଉଚ୍ଚଶିକ୍ଷାରେ ବିରୋଧାଭାସ" "ଭାରତୀୟ ପ୍ରତିଭା" "ରାଜନୈତିକ ଚକ୍ରବ୍ୟୁହରେ ଶିକ୍ଷା", "ପ୍ରଚଳିତ ଶିକ୍ଷାନୀତି ନାରୀକୁ ସୁରକ୍ଷା ଦେଉଛି କି ?", ଶିକ୍ଷାବିତ୍ ମାନସିଂହଙ୍କ ଶେଷ ଉଇଲ୍", ଧର୍ମର

ସାମାଜିକ ମୂଲ୍ୟବୋଧ", "The Tradition of Dharma - Darshana studies in Odisha", Philosophical enquiry: Its Social implications", "Major Inter-religious Rapport in Odisha", Present day trend of Philosophy and its teaching in Odisha", ଇତ୍ୟାଦି । ଏ ଗ୍ରନ୍ଥଟିର ବହୁଳ ପ୍ରଚାର ଓ ପ୍ରସାର ହେବ ବୋଲି ମୋର ଦୃଢ଼ ବିଶ୍ୱାସ ।

ପ୍ରଫେସର ଦାସ ହେଉଛନ୍ତି ସଚ୍ଚା "ଆଦର୍ଶ-ବାଦ"ର ଏକ ଜୀବନ୍ତ ବିଗ୍ରହ; ଏବେକାର ସମାଜରେ ଏଭଳି ଲୋକଟିଏ ଦେଖିବାକୁ ପାଇବା ଏକ ପ୍ରକାର ସ୍ୱପ୍ନ ବୋଲି ମୁଁ କହିବି । ଏଇ କିଛି ଦିନ ତଳେ ତାଙ୍କର ଅମୂଲ୍ୟ ଆତ୍ମଜୀବନୀ "ମନେ ପଡ଼େ" ପାଠ କରି ମୋ ମନର ନିଭୃତ କୋଣରେ ଲୁଚିଥିବା ଅହମିକାର କେତେ କେତେ ସୂକ୍ଷ୍ମ ଗ୍ରନ୍ଥି ଗୋଟି ଗୋଟି ହୋଇ ଉନ୍ମୋଚିତ ହେବା ଏବେ ମଧ୍ୟ ମୋର ସ୍ପଷ୍ଟ ମନେ ଅଛି - ଅବଶ୍ୟ ନୂଆ ନୂଆ ଗ୍ରନ୍ଥିର ଆବିର୍ଭାବ ଲାଗି ମୋ ମନର ଦରଜା ସତେ ଯେପରି ସଦା ଉନ୍ମୁକ୍ତ, ଏହା ମଧ୍ୟ ସ୍ୱୀକାର ନକରି ଉପାୟ ନାହିଁ । ତେବେ ଏହା ତ ମୋ ନିଜ ମନର କଥା, ଯାହା ଏଠାରେ ହୁଏତ ଅପ୍ରାସଙ୍ଗିକ । "ଆତ୍ମଜୀବନୀ"ର ୧୧୧ ପୃଷ୍ଠାରେ ତାଙ୍କ ପୂଜ୍ୟଗୁରୁଙ୍କ ସଂପର୍କରେ ପ୍ରଫେସର ଦାସ ଯାହାକହିଛନ୍ତି, ତାହା ବାସ୍ତବରେ ଅତୁଳନୀୟ ତଥା ଅନବାଦ୍ୟ । "ସେ ଥିଲେ ମୋ ସାର୍ । ପରେ ପରେ ମୁଁ ହେଲି ଅସଂଖ୍ୟ ଛାତ୍ରଙ୍କ ସାର୍ । କିନ୍ତୁ ମୋ ସାର୍‌ଙ୍କ ପରି ସାର୍ ଆଉ ମିଳିବେ ନାହିଁ" (ମନେପଡ଼େ ୧୧୧ ପୃଷ୍ଠା) । ଏଇଥିରୁ ହିଁ ତାଙ୍କ ହୃଦୟର ଅନ୍ତରତମ ପ୍ରଦେଶରେ "ଆଦର୍ଶ" କୁ ସେ ଯେପରି ଜୀବନ୍ତ ଭାବରେ ଧରି ରଖି ପାରିଛନ୍ତି, ତାହା ଅନୁମେୟ - କାରଣ ଜଣେ ପ୍ରକୃତ "ଆଦର୍ଶବାଦୀ" ହିଁ ତା'ର ଶିକ୍ଷାଗୁରୁଙ୍କୁ ହୃଦୟ ସିଂହାସନରେ ବସାଇ ପୂଜାକରିବା ସମ୍ଭବ, ଯାହାକି ପ୍ରଫେସର ଦାସଙ୍କ ଉପରୋକ୍ତ କଥା ଦିପଦରୁ ସ୍ପଷ୍ଟ ହୁଏ - "ମୋ ସାର୍‌ଙ୍କ ପରି ସାର୍ ଆଉ ମିଳିବେ ନାହିଁ" । - ଏକଥାଟିର ମର୍ମ ସୁଗଭୀର ତଥା ସୁଦୂର ପ୍ରସାରୀ ବୋଲି ମୁଁ ମନେ କରେଁ - ଏହାର ତାତ୍ପର୍ଯ୍ୟ କେବଳ ଭାଷା - ବିଶ୍ଳେଷଣ (Linguistic analysis) କରି ବୁଝିବା ସମ୍ଭବ ନୁହେଁ । ଆଉ ଗୋଟିଏ, ଉଦାହରଣ ସ୍ୱରୂପ - ୨୦୦୮ ମସିହାରେ ପ୍ରକାଶିତ "ଶିକ୍ଷାବିତ୍ ମାନସିଂହଙ୍କ ଶେଷ ଉଇଲ୍", ଯାହାକି ଏ ସଂକଳନରେ ସନ୍ନିବେଶିତ ହୋଇଛି, ଏଇ ପ୍ରବନ୍ଧଟିରେ ମଧ୍ୟ ମୋ ମତରେ ପ୍ରଫେସର ଦାସଙ୍କ ନିଛକ "ଆଦର୍ଶବାଦ" ହିଁ ପ୍ରତିଫଳିତ ହୋଇଛି । ପ୍ରଫେସର ଦାସଙ୍କର ମତରେ - ଡ଼ଃ ମାନସିଂହ "ଆନ୍ତରିକତାର ସହିତ ଜୀବନ ଗଢୁଥିବା ବ୍ୟକ୍ତି ପାଇଁ ନିଆରା ଜୀବନ ଆଦର୍ଶ ରଖିଯାଇଛନ୍ତି । ଜଗତୀକରଣ ଯୁଗରେ ମଧ୍ୟ ମହାବିଦ୍ୟାଳୟର ଅଧ୍ୟକ୍ଷଟିଏ ଖୋଜିବୁଲେ ତାଙ୍କ ଅଧ୍ୟକ୍ଷତ୍ୱର ଆଦର୍ଶ ।" ଏଠି ପ୍ରଫେସର ଦାସ ତାଙ୍କ ନିଜ ମନର କଥା ହିଁ କହିଛନ୍ତି । ମହାବିଦ୍ୟାଳୟ ମାନଙ୍କରେ ସେ ସ୍ୱୟଂ ଅଧ୍ୟକ୍ଷତା କରିଛନ୍ତି ଏବଂ ଅଧ୍ୟକ୍ଷତା କଲାବେଳେ ସେ ନିଜେ ୰ ଡ଼ଃ ମାନସିଂହଙ୍କ ଆଦର୍ଶରେ ଗଭୀର ଭାବେ ଅନୁପ୍ରାଣିତ ହୋଇଛନ୍ତି - ଆଜିକାର ଯୁଗରେ "ଆଦର୍ଶକୁ ଖୋଜି ବୁଲିବା" କେବଳ ଜଣେ ନିଛକ ଆଦର୍ଶବାଦୀ ବ୍ୟକ୍ତି ପକ୍ଷରେ ହିଁ ସମ୍ଭବ । ସେଥିଲାଗି ସେ ୰ ଡ଼ଃ ମାନସିଂହଙ୍କ ଉଇଲ୍ ସଂପର୍କରେ କହିବାକୁ ଯାଇ ଲେଖିଛନ୍ତି - "ପିଲାମାନଙ୍କ ଭବିଷ୍ୟତ ଲାଗି ପତ୍ନୀଙ୍କର ବ୍ୟସ୍ତତାର ସରଳ ସହଜ ସମାଧାନଟିଏ କରିବା ଲାଗି ସ୍ୱଅର୍ଜିତ ଜୀବନ ଦର୍ଶନକୁ ସାଇତି ରଖିଥିଲେ ପିଲାମାନଙ୍କ ପାଇଁ । କୋଟି କୋଟି ଟଙ୍କା ବିନିମୟରେ ସେ ସଂପତ୍ତି ଲାଭ କରିହୁଏ ନାହିଁ ।" ୰ ଡ଼ଃ ମାନସିଂହଙ୍କ ଜୀବନ-ଦର୍ଶନର ଅମୂଲ୍ୟ ଆଦର୍ଶ କେବଳ ପ୍ରଫେସର ଦାସଙ୍କ ଭଳି ନିଛକ ଆଦର୍ଶବାଦୀ ଶିକ୍ଷାବିତ୍ ହିଁ ଆଜିର ଦୁନିଆଁରେ ଆମ ଆଗରେ ଉପସ୍ଥାପିତ କରିବା ସମ୍ଭବ, ଏବଂ ଏଥିପାଇଁ ସେ ଆମ ସମସ୍ତଙ୍କର ଧନ୍ୟବାଦାର୍ହ ଏଥିରେ ଦ୍ୱିମତର ଅବକାଶ ନାହିଁ ।

**ଗୌରାଙ୍ଗ ନାୟକ**

# ସାମାନ୍ୟ ଆଭାଷ

## ଶିକ୍ଷା ଓ ସମାଜ - ଚେତନା

ଦୁଇ ବର୍ଷ ତଳେ ପ୍ରକାଶକ ବନ୍ଧୁ ଶ୍ରୀ ଲକ୍ଷ୍ମୀ ନାରାୟଣ ପାଢୀଙ୍କର ଅନୁରୋଧ ଓ ପ୍ରଚେଷ୍ଟାରେ ମୋ ଦ୍ୱାରା ଲିଖିତ ଉଚ୍ଚଶିକ୍ଷା ସମ୍ବନ୍ଧୀୟ ପ୍ରବନ୍ଧ ଗୁଡ଼ିକ ମଧ୍ୟରୁ କେତୋଟିର ସମାହାରରେ "ନୂତନ ଆହ୍ୱାନ - ଜଗତୀକରଣ ଓ ଆଧୁନିକ ଉଚ୍ଚଶିକ୍ଷା" ପୁସ୍ତକଟି ପ୍ରକାଶ ପାଇଥିଲା । ସେଇ ପୁସ୍ତକର ସୂଚନା ଦେବାକୁ ଯାଇ ମୁଁ ଅବଦୁଲ୍ କଲାମ୍‌ଙ୍କର ୨୦୨୦ ମସିହା ପାଇଁ ସପ୍ନ ବିଷୟ ଉଲ୍ଲେଖ କରିଥିଲି । ଭାରତବର୍ଷ ଅତିଶୀଘ୍ର ପୃଥିବୀର ସର୍ବବୃହତ ବିକାଶଶାଳୀ ଦେଶ ରୂପେ ଗଣିତ ହେବ - ଏହା ଥିଲା ତାଙ୍କର ସପ୍ନ । ସପ୍ନ ସାକାର ହେବାକୁ ଯାଉଥିବା ବିଷୟ ପ୍ରଧାନମନ୍ତ୍ରୀ ମନମୋହନ ସିଂହ ଏବେ ମାତ୍ର ସୂଚନା ଦେଇଛନ୍ତି । ତାଙ୍କର କହିବାନୁଯାୟୀ ବିଗତ ପାଞ୍ଚବର୍ଷ ଭିତରେ ଆମ କେନ୍ଦ୍ରୀୟ ସରକାର ଶିକ୍ଷାର ଉନ୍ନତି ଦିଗରେ ଅଭୂତ ପୂର୍ବ ସଫଳତା ହାସଲ କରିଛନ୍ତି । ଏକାଦଶ ପଞ୍ଚବର୍ଷୀୟ ଯୋଜନା ବାସ୍ତବିକ ଶିକ୍ଷାର ଯୋଜନାରେ ପରିଣତ ହୋଇଅଛି ବୋଲି ପ୍ରଧାନମନ୍ତ୍ରୀ କହିଛନ୍ତି । ପାଞ୍ଚଟି ଅଧିକ ଆଇ.ଆଇ.ଟି ଅନୁଷ୍ଠାନ ଏବଂ ବହୁ ସଂଖ୍ୟାରେ ଆଇ. ଆଇ. ଏମ୍. ଅନୁଷ୍ଠାନ ଗଢି ଉଠିଛି । ଓଡ଼ିଶା ପରି ଦରିଦ୍ର ଓ ଅନୁନ୍ନତ ପ୍ରଦେଶରେ ମଧ୍ୟ ଆଇ.ଆଇ.ଟି. କୁ ମିଶାଇ ବର୍ତ୍ତମାନ ସୁଦ୍ଧା ପ୍ରାୟ ୧୫ଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହୋଇ ସାରିଲାଣି । ଜାତୀୟ ଆଇନ୍ ବିଶ୍ୱବିଦ୍ୟାଳୟ, କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ପ୍ରଭୃତିର ପ୍ରତିଷ୍ଠା ପୂର୍ବରୁ ଏପରି ବିଶ୍ୱବିଦ୍ୟାଳୟ ବିଷୟ କଳ୍ପନା କରାଯାଇ ପାରୁନଥିଲା । କିନ୍ତୁ ଦେଶର ପ୍ରତି ନାଗରିକକୁ ଉତ୍ତମ ଶିକ୍ଷାଦେବାର ଗୁରୁ ଦାୟିତ୍ୱ ଆମକୁ ସମ୍ଭାଳିବାକୁ ପଡ଼ିବ ବୋଲି ପ୍ରଧାନମନ୍ତ୍ରୀ ସତର୍କ କରାଇଦେଇଛନ୍ତି । ଏ ପର୍ଯ୍ୟନ୍ତ ଆମ ଦେଶରେ ମାଧ୍ୟମିକ ଶିକ୍ଷା ଶେଷ ହେବା ପରେ ଉଚ୍ଚଶିକ୍ଷା ଲାଭ କରିବା ପାଇଁ ଯାଉଥିବା ଛାତ୍ରଙ୍କ ସଂଖ୍ୟା ଶତକଡା ୧୨ । ଉନ୍ନତ ରାଷ୍ଟ୍ରମାନଙ୍କର ଏହି ଅନୁପାତ ୭୦ରେ ପହଞ୍ଚି ସାରିଲାଣି । ରାଜ୍ୟ ଅନୁଯାୟୀ ଏବଂ ଲିଙ୍ଗ ଅନୁଯାୟୀ ଉଚ୍ଚଶିକ୍ଷା ଲାଭର ଅନୁପାତରେ ଯଥେଷ୍ଟ ଅସମାନତା ରହିଅଛି । ସମଗ୍ର ଦେଶର ଉଚ୍ଚଶିକ୍ଷାନୁଷ୍ଠାନମାନଙ୍କ ସମୁଦାୟ ସଂଖ୍ୟାର ଅର୍ଦ୍ଧେକ କେବଳ ମାତ୍ର ପାଞ୍ଚଟି ରାଜ୍ୟରେ ଅଛି । ବୃତ୍ତି ସଂକ୍ରାନ୍ତୀୟ (ପ୍ରଫେସନାଲ୍) ଶିକ୍ଷାଲାଭ ପାଇଁ ନିର୍ଦ୍ଦିଷ୍ଟ ସ୍ଥାନ ସଂଖ୍ୟାର ଶତକଡା ୭୦ଭାଗ ଅନ୍ୟ ପାଞ୍ଚଟି ରାଜ୍ୟରେ ଅଛି । ତେଣୁ ଏପରି ଅସମାନତା ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ନିତାନ୍ତ ଜରୁରୀ । ଏହା ସାଙ୍ଗକୁ ଅନ୍ୟ ଏକ ବଡ ସମସ୍ୟା ହେଉଛି ଉଚ୍ଚଶିକ୍ଷାନୁଷ୍ଠାନମାନଙ୍କରେ ଶିକ୍ଷାର ଗୁଣାତ୍ମକ ମାନ ହ୍ରାସ ଫଳରେ ଉକ୍ତ ଶିକ୍ଷାନୁଷ୍ଠାନମାନଙ୍କରୁ ଉତ୍ତୀର୍ଣ୍ଣ ହେଉଥିବା ଛାତ୍ରଛାତ୍ରୀ ଆନ୍ତର୍ଜାତିକ ପ୍ରତିଯୋଗିତାରେ ସଫଳତା ଲାଭ କରୁନାହାନ୍ତି । ଶିକ୍ଷାନୁଷ୍ଠାନର ସଂଖ୍ୟା ବଢିଲେ ଅଥବା ଉଚ୍ଚଶିକ୍ଷାଲାଭ ପାଇଁ ନାମ ଲେଖାଉଥିବା ଛାତ୍ରଛାତ୍ରୀଙ୍କ ସଂଖ୍ୟା ବୃଦ୍ଧି କରାଗଲେ ଅଥବା ଉଚ୍ଚଶିକ୍ଷା ପାଇଁ ଅଧିକ ଅର୍ଥ ବ୍ୟୟ କରାଗଲେ ମଧ୍ୟ ଶିକ୍ଷାର ଗୁଣାତ୍ମକ ମାନ ବଢିଯାଇ ପାରିବ ନାହିଁ । ଗୁଣାତ୍ମକ ମାନ ବଢାଇବାକୁ ହେଲେ ପ୍ରତିଭା ସମ୍ପନ୍ନ ବ୍ୟକ୍ତିଙ୍କୁ ଶିକ୍ଷାଦାନ ପାଇଁ ନିଯୁକ୍ତି ଦିଆଯିବା ଆବଶ୍ୟକ । ଆମର ବିଭିନ୍ନ କମିସନ୍‌ଙ୍କ ରିପୋର୍ଟ ସବୁ ଅନୁଧ୍ୟାନ କଲେ ମନେ ହେଉଛି ଆମେ ଆମ ଉଚ୍ଚଶିକ୍ଷା ସ୍ତରରେ ଥିବା ଦୁର୍ବଳତା ବିଷୟ ଜାଣୁ ଏବଂ ପ୍ରତିକାର ବିଷୟରେ ମଧ୍ୟ ସଚେତନ ଅଛୁ, କିନ୍ତୁ କାର୍ଯ୍ୟକାରୀ କରିବା ଦିଗରେ କୌଣସି ଉଚିତ୍ ପଦକ୍ଷେପ ନେଇପାରୁ ନାହୁଁ । ଜଣେ ବିଶିଷ୍ଟ ଶିକ୍ଷାବିତ୍ ଗୋଟିଏ ସଭାରେ କହିଥିଲେ, "Knowing what to do and not caring to do it has cast a shadow on our national endeavour". ଉଚ୍ଚଶିକ୍ଷାର ଉନ୍ନତି ପାଇଁ କମିସନ୍‌ମାନେ ଦେଇଥିବା ରିପୋର୍ଟ ସବୁର ମୂଲ୍ୟାୟନ କରି କାର୍ଯ୍ୟକାରୀ କରିବା ପାଇଁ ଗୋଟିଏ ଭିନ୍ନ ସ୍ଥାୟୀ ସଂସ୍ଥା ରହିବା ଆବଶ୍ୟକ, ସବୁ ବିକଶିତ ଏବଂ ବିକାଶଶାଳୀ ରାଷ୍ଟ୍ରମାନେ ଏମିତି ଗୋଟିଏ ସ୍ଥାୟୀ ସଂସ୍ଥା ଜରିଆରେ ଶିକ୍ଷାନୀତି ସବୁକୁ କାର୍ଯ୍ୟକାରୀ କରାଇଥାଆନ୍ତି । A.I.C.T.E. ର NBA (National Board of Accreditation) ବୈଷୟକ ଶିକ୍ଷାନୁଷ୍ଠାନମାନଙ୍କର ମୂଲ୍ୟାୟନ କରୁଥିବା ସାଙ୍ଗକୁ ICAR e AB (Accreditation Board) ଏ କ୍ଷେତ୍ରରେ ଉଭୟ ସରକାରୀ ଏବଂ ଘରୋଇ ସଂସ୍ଥାମାନଙ୍କ ମଧ୍ୟରେ ଦାୟିତ୍ୱ ବଣ୍ଟନ କଲେ ହୁଏତ ମୂଲ୍ୟାୟନ କାର୍ଯ୍ୟ ଅଧିକ ସଫଳ ହୁଅନ୍ତା । ଏ ଦିଗରେ ନାସନାଲ୍ ନଲେଜ୍ କମିସନ୍‌ର ରିପୋର୍ଟ ଏବଂ ଉଚ୍ଚଶିକ୍ଷାର ନବୀକରଣ ଲାଗି ପ୍ରଫେସର ଯଶପାଲଙ୍କ ଅଧ୍ୟକ୍ଷତାରେ ଗଢାଯାଇଥିବା କମିଟି ଗଠନ ସରକାରଙ୍କ ତରଫରୁ କିଛିଟା ବଳିଷ୍ଠ ପଦକ୍ଷେପ । ତେଣୁ ନାସନାଲ୍ ନଲେଜ୍ କମିସନ୍ ରିପୋର୍ଟ ବିଷୟରେ ଆଲୋଚନା ନିତାନ୍ତ ଆବଶ୍ୟକ

ମନେ କରି ଗୋଟିଏ ପ୍ରବନ୍ଧ ଲେଖିଥିଲି ଯାହା ଏହି ପୁସ୍ତକରେ ସ୍ଥାନ ପାଇଅଛି । ଅନ୍ୟ ଦେଶମାନଙ୍କ ତୁଳନାରେ ଆମେ କିପରି ଭାବରେ ପଛରେ ପଡ଼ିଯାଉଛୁ ସେ ସବୁ ବିଷୟର କିଛିଟା ଆଲୋଚନା କରାଯାଇଛି ।

ଆମ ଭାରତୀୟ ଉଚ୍ଚଶିକ୍ଷାରେ ଏକରକମ ପାରାଡ଼କ୍ସ ବା ବିରୋଧାଭାସ ମଧ୍ୟ ଲକ୍ଷ୍ୟ କରାଯାଉଅଛି । ଗୋଟିଏ ପଟେ ଛାତ୍ରଛାତ୍ରୀମାନେ ସହଜରେ ଉଚ୍ଚଶିକ୍ଷାନୁଷ୍ଠାନମାନଙ୍କୁ ଆସିପାରିବା ପରି ଅବସ୍ଥା ସୃଷ୍ଟି କଲାବେଳକୁ ଅନ୍ୟପଟେ ଖାଲିପଡୁଥିବା ସିଟ୍ ସଂଖ୍ୟା ବଢ଼ି ଚାଲିଛି । ଏ ପାରାଡ଼କ୍ସରୁ କିପରି ରକ୍ଷା ମିଳିବ ସେ ବିଷୟର ଆଲୋଚନା ଆବଶ୍ୟକ ବୋଲି ଭାବି ତାହା ଗୋଟିଏ ପ୍ରବନ୍ଧରେ ପ୍ରକାଶ କରିଅଛି । ଭାରତବର୍ଷର ଜନସଂଖ୍ୟା ବୃଦ୍ଧି କେତେକ କ୍ଷେତ୍ରରେ ସ୍ୱାଗତଯୋଗ୍ୟ ହେଲେବି କେତେକ କ୍ଷେତ୍ରରେ ଦାୟିତ୍ୱର ବୋଝ ଲଦି ଦେଇ ଚାଲିଛି । ଏହି ଆଲୋଚନାରେ ସମ୍ପଦ ଓ ବିପଦର ଦୋଳାୟମାନ ସ୍ଥିତିରେ ଥିବା ଜନସଂଖ୍ୟା ବହୁଳ ଜାତି ପାଇଁ ଶିକ୍ଷାର ଭୂମିକା ଦର୍ଶାଯାଇଛି ।

ଯୁଗ ବଦଳିଛି । ଶିକ୍ଷାର ଗୁଣାତ୍ମକ ଅଭିବୃଦ୍ଧି ଦିଗରେ ଛାତ୍ରର ଅଂଶଗ୍ରହଣ ଜରୁରୀ ହୋଇପଡ଼ିଛି । ଶିକ୍ଷକ, ଅଭିଭାବକ, ପ୍ରଶାସନିକ କର୍ମକର୍ତ୍ତାହିଁ କେବଳ ସେମାନେ ଗଢୁଥିବା ଶିକ୍ଷାନୀତି ପ୍ରୟୋଗ କରି ଚାଲିଥିବେ ଏବଂ ଛାତ୍ର ସେଇ ଅନୁସାରେ ପରିଚାଳିତ ହେଉଥିବ, ଏହା ଆଉ ଅଧିକ କାଳ ବରଦାସ୍ତ କରି ହେଉନାହିଁ । ଯେ ଶିକ୍ଷା ପାଇବ ଶିକ୍ଷାନୀତି ପ୍ରଣୟନରେ ତା'ର ସ୍ଥାନ ନରହିବା ଦେଶର ପ୍ରଗତି ଦୃଷ୍ଟିରୁ ହିତକର ନୁହେଁ, ଶିକ୍ଷାଦାନ ପ୍ରଣାଳୀ, ଶିକ୍ଷକଙ୍କର ପଢ଼ାଇବା ଶୈଳୀ ପ୍ରଭୃତିରେ ଛାତ୍ରର ମୂଲ୍ୟାୟନ (ଫିଡ଼୍ ବ୍ୟାକ୍) କୁ ଜରୁରୀ ମନେ କରି କେତେକ ମ୍ୟାନେଜ୍‌ମେଣ୍ଟ ଶିକ୍ଷାନୁଷ୍ଠାନ ଏହାକୁ କାର୍ଯ୍ୟକାରୀ କରିଛନ୍ତି । 'ଶିକ୍ଷାନୀତି ପ୍ରଣୟନରେ ଛାତ୍ରର ଭୂମିକା' ବିଷୟ ଗୋଟିଏ ପ୍ରବନ୍ଧରେ ଆଲୋଚିତ ହୋଇଛି ।

ବିଭିନ୍ନ ପରୀକ୍ଷାରେ ଛାତ୍ରମାନଙ୍କର ଅସାଧାରଣ କୃତିତ୍ୱ ସାଙ୍ଗକୁ ସେମାନେ ସମ୍ମୁଖୀନ ହେଉଥିବା ସାମାଜିକ ବିପଦ ଉଚ୍ଚଶିକ୍ଷା ପାଇଁ ସମସ୍ୟା ସୃଷ୍ଟି କରିଅଛି । ପୁରୁଷ ପ୍ରଧାନ ପରିବାର ମାନଙ୍କରେ ମହିଳାର ସ୍ୱତନ୍ତ୍ର ପରିଚୟ ନାହିଁ । ସେ କାହାର ସ୍ତ୍ରୀ, କାହାର ଝିଅ, କାହାର ମା ହିସାବରେ ପରିଚିତ । ମହିଳା ସଶକ୍ତିକରଣ, ମହିଳା ଜାଗରଣ ଅଥବା ମହିଳା ଆନ୍ଦୋଳନ ପ୍ରଭୃତି କହିବା ଦ୍ୱାରା ମହିଳାମାନଙ୍କୁ ପରିଚୟ ବିହୀନ ଏବଂ ପୁରୁଷମାନଙ୍କ ଠାରୁ ନିକୃଷ୍ଟ ବୋଲି ଧରି ନିଆଯାଉଛି । ପ୍ରଚଳିତ ଶିକ୍ଷାନୀତି ମହିଳାମାନଙ୍କୁ କୌଣସି ବାଟେ ସୁରକ୍ଷା ଯୋଗାଇପାରୁନି । ଏତଦ୍‌ବ୍ୟତୀତ ଭାରତ ବର୍ଷରେ ମହିଳାମାନେ ଏପର୍ଯ୍ୟନ୍ତ ବିଜ୍ଞାନ ଓ ବୈଷୟିକ ବିଦ୍ୟାରେ ବେଶୀ ସଂଖ୍ୟାରେ ଯୋଗଦେଇ ପାରିନାହାନ୍ତି । କିନ୍ତୁ ଅନେକ ମହିଳା ବିଜ୍ଞାନର ସବୁ ସ୍ତରରେ ନିଜର ପ୍ରତିଭା ପ୍ରଦର୍ଶନ କରିପାରିଛନ୍ତି ଏବଂ ନିଜର ଅଧିକାର ସାବ୍ୟସ୍ତ କରି ପାରିଛନ୍ତି । ସୁବିଧା ଓ ସୁଯୋଗ ମିଳିଲେ ସେମାନେ ବିଜ୍ଞାନ କ୍ଷେତ୍ରରେ ଅଧିକ ମାତ୍ରାରେ ନିଜର ବିଜ୍ଞତା ପ୍ରକାଶ କରି ପାରିବେ ।

ମାଡ୍ରାସ ଆଇ.ଆଇ.ଟି.ର ପୂର୍ବତନ ଡ଼ାଇରେକ୍ଟର ପି.ଭି.ଇନ୍ଦ୍ରେସାନ୍‌ଙ୍କର ଇଂରାଜୀ ପ୍ରବନ୍ଧର ଓଡ଼ିଆ ଅନୁବାଦ କରି ପାଠକମାନଙ୍କ ପାଖରେ ପହଞ୍ଚାଇବା ଲାଗି ବହୁତ ଇଚ୍ଛା ହେଲା । କେଉଁ କାରଣରୁ ଅତି ଦରିଦ୍ର ପରିବାରର ପିଲାମାନେ ମଝିରୁ ପଢ଼ା ଛାଡ଼ି ଦେଉଛନ୍ତି ଅଥବା ସେମାନଙ୍କ ମଧ୍ୟରୁ କମ୍ ସଂଖ୍ୟକ ଛାତ୍ର ବିଶ୍ୱବିଦ୍ୟାଳୟ ସ୍ତରକୁ ଯାଉଛନ୍ତି ତାହାର ଆଲୋଚନା କରିଛନ୍ତି ଶ୍ରୀ ଇନ୍ଦ୍ରେସାନ୍ । ନିଯୁକ୍ତି ଦେଉଥିବା ସଂସ୍ଥାମାନଙ୍କ ସାଙ୍ଗରେ କଲେଜ କର୍ତ୍ତୃପକ୍ଷଙ୍କର ଯୋଗାଯୋଗ ରହିବା ନିତାନ୍ତ ଆବଶ୍ୟକ । ଉକ୍ତ ସଂସ୍ଥାମାନେ ଯେତିକି ଛାତ୍ରଙ୍କୁ ନିଯୁକ୍ତି ଦେଇପାରିବେ ସେଇ ଅନୁପାତରେ କଲେଜରେ ନାମଲେଖା ସଂଖ୍ୟା ସୀମିତ ରହିବା ଉଚିତ୍ ବୋଲି ସେ ଦର୍ଶାଇଛନ୍ତି ।

ଭାରତବର୍ଷରେ ପ୍ରତିଭାର ଅଭାବ ନାହିଁ, ବୌଦ୍ଧିକ ମୂଳଧନ (Intellectual Capital) ଦୃଷ୍ଟିରୁ ଭାରତବର୍ଷ ଗୋଟିଏ ବିକାଶାଳୀ ରାଷ୍ଟ୍ରରୂପେ ଗଣା ହୋଇସାରିଛି । କିନ୍ତୁ ଦୁଃଖର ବିଷୟ, ଭାରତୀୟ ପ୍ରତିଭା ଭାରତରେ ବିକଶିତ ନ ହୋଇ ବିଦେଶରେ ବିକଶିତ ହେଉଛି । ଆମେରିକାସ୍ଥ ସିଲିକନ୍ ଭ୍ୟାଲିରେ ୩ ଲକ୍ଷ ଭାରତୀୟ କାମ କରୁଛନ୍ତି । ମୋଟା ଦରମା ପାଉଛନ୍ତି ଏବଂ ଯୋଗ୍ୟତା କ୍ଷେତ୍ରରେ ଭାରତୀୟ ହିଁ ପୂର୍ବ ରେକର୍ଡ଼ ଭାଙ୍ଗି ଆଗଧାଡ଼ିରେ ଅଛନ୍ତି । ସବୁ ସୁବିଧା ଓ ସୁଯୋଗ ଭାରତୀୟ ପ୍ରତିଭାଙ୍କ ଠାରୁ ଆଦାୟ କରିପାରୁଛି ଆମେରିକା । ପ୍ରତିଭା ଚାଲାଣ ହେଉଥିବା ବିଷୟରେ ବିସ୍ତୃତ ଆଲୋଚନା କରାହୋଇଛି "ଭାରତୀୟ

ପ୍ରତିଭା" ପ୍ରବନ୍ଧରେ । ଭାରତୀୟ ପ୍ରତିଭାକୁ ଭାରତରେ ରଖିବା ପାଇଁ ଭାରତ ସରକାର କି ପଦକ୍ଷେପ ନେଉଛନ୍ତି ସେ ସବୁର ସୂଚନା ମଧ ଦିଆଯାଇଛି । ଏବେ ମାତ୍ର ସମ୍ବାଦ ପ୍ରକାଶ ପାଇଛି ଯେ ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ଭାବେ ଡ଼ଃ ମନମୋହନ ସିଂହ ବିଦେଶରେ ରହୁଥିବା ଭାରତୀୟ ବୈଜ୍ଞାନିକ ମାନଙ୍କୁ ସ୍ୱଦେଶ ଫେରିଆସି ସେମାନଙ୍କ ପ୍ରତିଭା ବିନିଯୋଗ କରିବାକୁ ତଥା ଭାରତର ବିଶ୍ୱବିଦ୍ୟାଳୟ ଏବଂ ବୈଜ୍ଞାନିକ ସଂସ୍ଥା ମାନଙ୍କରେ କାର୍ଯ୍ୟ କରିବାକୁ ନିବେଦନ କରିଛନ୍ତି । ବିଦେଶରେ ସେମାନଙ୍କୁ ଗବେଷଣା ଚଳାଇବା ପାଇଁ ଯେଉଁ ଉନ୍ନତ ବାତାବରଣ, ସୁବିଧା, ବେତନ, ଏବଂ ପ୍ରତିଭା ପ୍ରଦର୍ଶନର ଉପଯୁକ୍ତ ସୁଯୋଗ ମିଳୁଛି ସେ ସବୁ ସୁଯୋଗ ଯୋଗାଇବା ପାଇଁ ନିଶ୍ଚିତ ଭାବରେ କିଛି ଯୋଜନା ପ୍ରସ୍ତୁତ କରିବେ ବୋଲି ଆଶା କରାଯାଏ।

ଉଚ୍ଚଶିକ୍ଷା ବିଷୟ ଆଲୋଚନା କଲାବେଳେ ବିଶିଷ୍ଟ ଶିକ୍ଷାବିତ୍ ୰ ଡ଼କ୍ଟର ମାୟାଧର ମାନସିଂହଙ୍କ ବିଷୟ ତୁହାଇ ତୁହାଇ ମନେ ପଡ଼ିବାରୁ ତାଙ୍କର ଉତ୍ସର୍ଗୀକୃତ ସାଧନା ବଳରେ ସେତେବେଳେ ଗଢିଉଠିଥିବା ସମ୍ବଲପୁର ଗଙ୍ଗାଧର ମେହେର କଲେଜ୍‌ର ଆଦର୍ଶକୁ ପାଠକମାନଙ୍କ ପାଖରେ ପହଞ୍ଚାଇଛି । ଜଣେ ଶିକ୍ଷାବିତ୍ ତାଙ୍କର ଶେଷ ଇଚ୍ଛାପତ୍ରରେ ଯାହା ଲେଖିଯାଇଥିଲେ ତାହା ଅନନ୍ୟ । ଏପରି ଇଚ୍ଛାପତ୍ର କେବଳ ଜଣେ ନୀତିବାନ୍ ଶିକ୍ଷକ ବ୍ୟତୀତ ଆଉ କାହାରିଠାରୁ ଆଶା କରାଯାଇପାରେ ନାହିଁ । ସେ ଚାହିଁଥିଲେ, ତାଙ୍କ ପିଲାମାନେ ଏପରି କାର୍ଯ୍ୟ କରିବେ ଯାହାଦ୍ୱାରାକି ସଂସ୍କୃତି, ଶିକ୍ଷା ଏବଂ ମାନବିକ ମୂଲ୍ୟବୋଧ ଲାଗି ଖ୍ୟାତି ଅର୍ଜନ କରିଥିବା ତାଙ୍କ ପରିବାର ସୁନାମରେ ଆଞ୍ଚ ଆସିବ ନାହିଁ । ଶିକ୍ଷାକୁ ସଂସ୍କୃତି ଓ ମୂଲ୍ୟବୋଧ ଠାରୁ ଭିନ୍ନ କରି ଦେବ ନାହିଁ ।

## ଯେଉଁମାନେ ଆନ୍ତରିକତାର ସ୍ପର୍ଶ ଦେଇଥିଲେ

ବହିଟିର ମୁଖବନ୍ଧ ଲେଖିଥିବା ମୋର ପୂଜ୍ୟ ଗୁରୁ ବିଶିଷ୍ଟ ଶିକ୍ଷାବିତ୍, ପ୍ରବୀଣ ପ୍ରଶାସକ ଏବଂ ବିଜ୍ଞ ଦାର୍ଶନିକ ଡ଼କ୍ଟର ଶ୍ରୀନିବାସ ସାହୁଙ୍କୁ ଭକ୍ତି ଅର୍ଘ୍ୟ ଜ୍ଞାପନ କରୁଛି । ମୋ ବହିର ମୁଖବନ୍ଧ ଲେଖିବା ପାଇଁ ଏ ପରିଣତ ବୟସରେ ମୋ ପାଇଁ ମୋ ସାର୍ ଅଛନ୍ତି, ଏତିକିରେ ମୋ ବହି ତା'ର ମୂଲ୍ୟ ପାଇଯାଇଛି । କିଛି ଲାଭର ଆଶା ନ ରଖି ବହିଟି ପ୍ରକାଶ କରିବାରେ ପ୍ରକାଶକ ବନ୍ଧୁ ଶ୍ରୀ ଲକ୍ଷ୍ମୀନାରାୟଣ ପାଢୀଙ୍କର ଆଗ୍ରହ ଓ ଉଦ୍ୟମକୁ କିପରି ଭାବରେ ପ୍ରଶଂସା କରିବି ଜାଣି ପାରୁନାହିଁ । ସେ ଯୁଗର ଛାତ୍ର ଏପରି ଆଗ୍ରହ ଓ ଉଦ୍ୟମକୁ ଦାୟିତ୍ୱ ଓ କର୍ତ୍ତବ୍ୟ ବୋଲି ମନେ କରନ୍ତି ।

"ନୂତନ ଆହ୍ୱାନ - ଜଗତୀକରଣ ଓ ଆଧୁନିକ ଉଚ୍ଚଶିକ୍ଷା" ପୁସ୍ତକଟିରେ ଯେଉଁମାନଙ୍କଠାରେ ମୋ ଆନ୍ତରିକ କୃତଜ୍ଞତା ପ୍ରକାଶ କରିଛି ସେ ସମସ୍ତଙ୍କ ପାଖରେ ଏ ବହିର ପ୍ରକାଶନ ପାଇଁ ମଧ ସମଭାବରେ ଋଣୀ । ମୋ ପତ୍ନୀ ପଦ୍ମିନୀ ଏବଂ ପରିବାରର ଅନ୍ୟ ସଦସ୍ୟ ସମସ୍ତେ ମୋତେ ପ୍ରେରଣା ଯୋଗାଇଛନ୍ତି ଏ ପୁସ୍ତକ ପ୍ରସ୍ତୁତିରେ । ପୂର୍ବ ବହିରେ ଜଣାଇଛି ମୋ ପରିବାରର ଅଧିକାଂଶ ସଦସ୍ୟ ଉଚ୍ଚଶିକ୍ଷା ସହିତ ସମ୍ପୃକ୍ତ । ରାଜନୀତି ବିଜ୍ଞାନରେ ରିଡ଼ର ଥିବା (ଅଧୁନା ଭୁବନେଶ୍ୱର ରମାଦେବୀ ମହିଳା କଲେଜ୍) ବଡ଼ପୁଅ ଅଧାପକ ଡକ୍ଟର ସୁମନ୍ ଦାସ, ଏ.ଏସ.ବି.ଏମ୍. ମ୍ୟାନେଜମେଣ୍ଟ ଇନ୍‌ଷ୍ଟିଚ୍ୟୁଟ୍‌ରେ ସିନିଅର ଫାକଲ୍ଟି ଥିବା ସାନପୁଅ ଅଧାପକ ସୁଶାନ୍ ଦାସ, ସ୍ତ୍ରୀ ରୋଗ ଏବଂ ଇନ୍‌ଫର୍ଟିଲିଟି ଉପରେ ଉଚ୍ଚତର ଗବେଷଣାରତ ଏବଂ ଆନ୍ତର୍ଜାତିକ ସ୍ତରରେ ବହୁ ଭାବରେ ସମ୍ମାନିତ, ଜ୍ୱାଇଁ ଡ଼ାକ୍ତର ମନୁ ପଟ୍ଟନାୟକ, ମୋର ବଡ ଭଉଣୀ ଅବସରପ୍ରାପ୍ତ ଅଧାପିକା ନିର୍ମଳା ପରିଜା, ଭାଣିଜୀ ଅବସର ପ୍ରାପ୍ତ ଅଧାପିକା କସ୍ତୁରୀ ଦାସ, ଝିଆରୀ (ସାନ ଭାଇର ଝିଅ) ବାଙ୍ଗାଲୋରସ୍ଥ ପ୍ରଖ୍ୟାତ ମ୍ୟାନେଜ୍‌ମେଣ୍ଟ ଇନ୍‌ଷ୍ଟିଚ୍ୟୁଟର ପ୍ରଫେସର ଡ଼କ୍ଟର ମଧୁଛନ୍ଦା ଦାସ ଅନ୍ଥେ, ପତ୍ନୀଙ୍କର ଭଉଣୀ ବୃନ୍ଦ ମେଡିକାଲ କଲେଜର ଅବସରପ୍ରାପ୍ତ ପ୍ରଫେସର ଡ଼ାକ୍ତର ମନ୍ଦାକିନୀ ଦାସ, ରମାଦେବୀ ମହିଳା କଲେଜର ପୂର୍ବତନ ରାଜନୀତି ବିଜ୍ଞାନ ଅଧାପିକା ଦ୍ୱୟ ବିଜୟଲକ୍ଷ୍ମୀ ରାଓ ଏବଂ ଶର୍ବରୀ ପଟ୍ଟନାୟକ ପ୍ରଭୃତି ସମସ୍ତଙ୍କର ଭାରତୀୟ ଉଚ୍ଚଶିକ୍ଷାର ପ୍ରଗତି ଦିଗରେ ଅବଦାନ ଅଛି । ଆମେ ପରସ୍ପର ଭିତରେ ଅନେକ ସମୟରେ ଉଚ୍ଚଶିକ୍ଷା ସମ୍ବନ୍ଧରେ ଆଲୋଚନା କରୁ ଏବଂ ସେହି ଆଲୋଚନା ହିଁ ମତେ ଉପାଦାନ ଯୋଗାଏ ଲେଖିବାକୁ । ମୋର ଝିଅ, ଦୁଇ ବୋହୂ ଏବଂ ଚାରି ନାତି ନାତୁଣୀ ପ୍ରତ୍ୟେକେ ଭିନ୍ନ ଭିନ୍ନ ଉପାୟରେ ସ୍ୱଗୁଣ ଅନୁଯାୟୀ ମୋ ମନରେ ଉତ୍ସାହ ଭରି ଦେଇଛନ୍ତି ଏ ବହିଟି ଲେଖିବା ପାଇଁ ।

ଜର୍ମାନୀରେ ଥିବା ବନ୍ଧୁ ଇଞ୍ଜିନିୟର ଡ଼କ୍ଟର ରାଜେନ୍ଦ୍ର ନାରାୟଣ ଦାସଙ୍କ ବିଷୟ ଏ ବହିରେ ମଧ୍ୟ ଆଉଥରେ ଲେଖୁଛି। ଜର୍ମାନୀରେ ଥାଇ ମଧ୍ୟ ଉଚ୍ଚଶିକ୍ଷା ସମ୍ବନ୍ଧରେ ଟେଲିଫୋନ ମାଧ୍ୟମରେ ମୋ ସହିତ କେତେ ଆଲୋଚନା କରନ୍ତି । କିଛି ମାସ ତଳେ 'ସମ୍ବାଦ' ରେ ପ୍ରକାଶ ପାଇଥିବା ତାଙ୍କର ପ୍ରବନ୍ଧ, "ଶିକ୍ଷା ସଂକଟରେ ନା ସଙ୍କଟରେ ଶିକ୍ଷା" ମୋର ଶିକ୍ଷା ବିଷୟକ ଚିନ୍ତା ପାଇଁ ବେଶ୍ କିଛି ଉପାଦାନ ଯୋଗାଇଥିଲା । ନିକଟ ଅତୀତରେ ଭୁବନେଶ୍ୱର ଠାରେ ଗୋଟିଏ ସଭାରେ ସେ ମଞ୍ଚାସୀନ ଥାଆନ୍ତି ଏବଂ ମୁଁ ଶ୍ରୋତା ଗ୍ୟାଲେରୀରେ ପଛରେ ବସିଥାଏ । ତାଙ୍କର ଆଖି ପଡିଗଲା ମୋ ଉପରେ । ତାଙ୍କ ନିଜ ବକ୍ତବ୍ୟ ଆରମ୍ଭ କଲାବେଳେ ପ୍ରଥମରୁ ମୋ ନାମ ଉଚ୍ଚାରଣ କରି ମତେ ପ୍ରଣାମ ଜଣାଇଥିଲେ । ପାରମ୍ପରିକ ଉଚ୍ଚଶିକ୍ଷାର ଗୁଣାତ୍ମକମାନ ସହିତ ଯୋଡ଼ି ହୋଇ ରହିଥିବା ଏପରି ନମ୍ରତା ଓ ଗୁରୁଭକ୍ତିକୁ କ'ଣ ଜଗତୀକରଣ ଯୁଗର ସୂଚନା ପ୍ରଯୁକ୍ତି ଦେଇ ପାରିବ ?

ପୂର୍ବ ପ୍ରକାଶିତ ବହିଟିରେ ଯାହାକୁ ପୁତ୍ରବତ୍ ବୋଲି କହିଥିଲି ସେଇ ଜ୍ଞାନୀ, ବିଦ୍ୱାନ୍, ଅର୍ଥନୀତି ବିଷାରଦ ପ୍ରଫେସର ଡ଼କ୍ଟର ସୁକାନ୍ତ ଚନ୍ଦ୍ର ସ୍ୱାଇଁ ଯୋଗାଇଥିବା ପ୍ରେରଣା ଭାଷାରେ ପ୍ରକାଶ କରି ହେବନାହିଁ । ନୀରବତାର ଭିନ୍ନ ଭାଷା ଅଛି ।

ସେ ବି କୁହନ୍ତି, ସମ୍ବଲପୁର ଗଙ୍ଗାଧର ମେହେର କଲେଜରେ ସେ ମୋ ଛାତ୍ର ଥିଲେ । ସମ୍ବଲପୁର ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ପ୍ରଫେସର ଏବଂ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ପ୍ରଫେସର ଡ଼କ୍ଟର ଆଦିତ୍ୟ ପ୍ରସାଦ ପାଢ଼ୀ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିସନ୍‌ର ଏନଏଏସି (NAAC) ଟିମ୍‌ର ଅଧ୍ୟକ୍ଷ ଭାବରେ ବିଭିନ୍ନ ରାଜ୍ୟର ବିଶ୍ୱବିଦ୍ୟାଳୟ ଏବଂ ଉଚ୍ଚଶିକ୍ଷାନୁଷ୍ଠାନମାନ ପରିଦର୍ଶନ କରି ଉଚ୍ଚ ଶିକ୍ଷା ସଂକ୍ରାନ୍ତୀୟ ତଥ୍ୟମାନ ଯୋଗାଇ ଏ ବହିର ପ୍ରକାଶିତ ପ୍ରବନ୍ଧମାନ ଲେଖିବାରେ ମୋର ସହାୟକ ହୋଇଛନ୍ତି । ଏବେ ମାତ୍ର ଏକାଡେମୀ ଅଫ୍ ଗ୍ଲୋବାଲ ଏଜୁକେଶନ ସର୍ଭିସେସ୍ (Academy of Global Education Services) ପ୍ରତିଷ୍ଠାନର ଆଞ୍ଚଳିକ ଉପଦେଷ୍ଟା ବୋର୍ଡର ଅଧ୍ୟକ୍ଷ ଭାବରେ ଯୋଗ ଦେଇ ଭାରତୀୟ ଉଚ୍ଚଶିକ୍ଷାର ପ୍ରଗତି ଦିଗରେ ବହୁ ମୂଲ୍ୟବାନ୍ ପରାମର୍ଶମାନ ଦେଉଛନ୍ତି । ମୋର ଛାତ୍ର ପ୍ରଫେସର ପାଢ଼ୀଙ୍କର ଜ୍ଞାନ ଓ ଅଭିଜ୍ଞତାକୁ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ୍ ସମ୍ମାନ ଦେଉଛନ୍ତି, ଏହା ହିଁ ମୋ ପାଇଁ ସବୁଠାରୁ ଆନନ୍ଦର ବିଷୟ । ତାଙ୍କର ସାହାଯ୍ୟ ଓ ଆନ୍ତରିକତା ପାଇଁ ମୋ ବହି ତାଙ୍କଠାରେ ଋଣୀ ।

ଦୈନିକ 'ସମାଜ'ର ସମ୍ପାଦକ ଶ୍ରୀ ଶରତ ଚନ୍ଦ୍ର ମିଶ୍ର, 'ସମ୍ବାଦ'ର ସମ୍ପାଦକ ଶ୍ରୀ ସୌମ୍ୟରଞ୍ଜନ ପଟ୍ଟନାୟକ ଏବଂ ସାପ୍ତାହିକ 'ଚିରସନ୍ଧାନ'ର ସମ୍ପାଦକ ପାର୍ଥସାରଥୀ ଅଜୟ ବାରିକଙ୍କର ବଳିଷ୍ଠ ସାମ୍ବାଦିକତା ହିଁ ମୋ ପ୍ରବନ୍ଧମାନଙ୍କୁ ଲୋକଲୋଚନକୁ ଆଣିପାରିଛି । ସେଥିପାଇଁ ମୁଁ ସେମାନଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

**ଦର୍ଶନ ଓ ସମାଜ -ଚେତନା**

ଦୀର୍ଘ ବର୍ଷ ଧରି ଦର୍ଶନ ଶାସ୍ତ୍ର ଅଧ୍ୟୟନ ଓ ଅଧ୍ୟାପନାରୁ ଯତ୍ କିଞ୍ଚିତ୍ ଜ୍ଞାନ ଓ ଅନୁଭୂତି ଲାଭ କରିଥିଲି ତତ୍‌ସମ୍ବନ୍ଧୀୟ କେତୋଟି ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା । ନିଖିଳ ଓଡ଼ିଶା ଦର୍ଶନ ପରିଷଦର ଦଶମ ବାର୍ଷିକ ଅଧିବେଶନ ପାଇଁ ମତେ ସାଧାରଣ ସଭାପତି ଭାବରେ ନିର୍ବାଚିତ କରାଯାଇଥିଲା । ସେଇ ଅବସରରେ ମୋର ପ୍ରଦତ୍ତ ସଭାପତି ଅଭିଭାଷଣ ଅଧିବେଶନର ବାର୍ଷିକ ଜର୍ଣ୍ଣାଲରେ ପ୍ରକାଶ ପାଇଥିଲା । ଉକ୍ତ ପ୍ରବନ୍ଧଟି ପ୍ରକାଶ ପାଉଥିବା ଏହି ପୁସ୍ତକରେ ସ୍ଥାନ ପାଇଅଛି । ଉକ୍ତ ସଂସଦର ଦ୍ୱାଦଶ ଅଧିବେଶନରେ ଦୀର୍ଘକାଳ ଧରି ଆମର ଦର୍ଶନ ଶାସ୍ତ୍ର ଅଧ୍ୟୟନ ଓ ଅଧ୍ୟାପନାକୁ ସ୍ୱୀକୃତି ଦେଇ ପ୍ରଫେସର ହୃଦାନନ୍ଦ ରାୟଙ୍କୁ ଏବଂ ମତେ ସମ୍ମାନିତ କରାଯାଇଥିଲା । ଉକ୍ତ ଅଧିବେଶନରେ ମୁଁ ସଂକ୍ଷେପରେ ଯାହା କହିଥିଲି ସେ ସବୁ ପ୍ରବନ୍ଧ ଆକାରରେ ଏହି ପୁସ୍ତକରେ ପ୍ରକାଶ ପାଇଛି । ଧର୍ମ ବିଷୟକ ଉପଯୁକ୍ତ ଜ୍ଞାନ ଲାଭ ପାଇଁ ସ୍ୱାମୀ କର୍ଷ୍ଣୀ ଗୁରୁ ଶରଣାନନ୍ଦଜୀଙ୍କ ପୃଷ୍ଠପୋଷକତା ଏବଂ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ଦର୍ଶନ ଶାସ୍ତ୍ର ପ୍ରଫେସର ଡ଼କ୍ଟର ଏଲ୍.ଏନ୍.ଶର୍ମାଙ୍କ ଉପଯୁକ୍ତ ସମନ୍ୱୟରେ ଗଢାଯାଇଥିବା 'ସମ୍ବାଦ' ନାମକ ଜାତୀୟ ସଂସ୍ଥା ତରଫରୁ ଉତ୍କଳ ବିଶ୍ୱବିଦ୍ୟାଳୟ ଦର୍ଶନ ବିଭାଗ ଏବଂ ଭୁବନେଶ୍ୱରସ୍ଥ ହ୍ୟୁମାନିଷ୍ଟ ଫିଲୋସଫିକାଲ ଫାଉଣ୍ଡେସନ ଦ୍ୱାରା ମିଳିତ ଭାବେ ଆୟୋଜିତ ଏକ ଆଞ୍ଚଳିକ ଆଲୋଚନା ଚକ୍ର (ଓଡ଼ିଶାରେ ବିଭିନ୍ନ ଧର୍ମୀୟ ସଂପ୍ରଦାୟ ମଧ୍ୟରେ ସୌହାର୍ଦ୍ଦ୍ୟ ପୂର୍ଣ୍ଣ ସମ୍ପର୍କ)ର ପ୍ରଥମ ଦିବସ ସଭାରେ ମତେ

ସମ୍ମାନିତ କରିବା ସହିତ ଦ୍ୱିତୀୟ ଦିବସ ସଭାରେ ମତେ ମୁଖ୍ୟ ଅତିଥି ଭାବେ ନିମନ୍ତ୍ରଣ କରାଯାଇଥିଲା । ମୁଖ୍ୟ ଅତିଥି ଭାବରେ ମୁଁ ଦେଇଥିବା ଭାଷଣକୁ ମଧ୍ୟ ଏହି ପୁସ୍ତକରେ ସ୍ଥାନ ଦିଆ ହୋଇଅଛି । ୨୦୦୬ ମସିହା ଡ଼ିସେମ୍ବର ୧୬ ଓ ୧୭ ତାରିଖରେ ଦିଲ୍ଲୀରେ ଅନୁଷ୍ଠିତ ଗ୍ଲୋବାଲ କନ୍‌ଭେନ୍‌ସନ (Global Convention) ର ଓଡ଼ିଶା ଫୋରମ୍ ତରଫରୁ ପ୍ରକାଶ ପାଇଥିବା ସ୍ମରଣିକାରେ ଓଡ଼ିଶାରେ ଧର୍ମଦର୍ଶନ ଶିକ୍ଷାର ପରମ୍ପରା ବିଷୟକ ମୋର ଲିଖିତ ପ୍ରବନ୍ଧଟି କିଛି ଅଧିକ ତଥ୍ୟ ସହିତ ଏହି ପୁସ୍ତକରେ ପ୍ରକାଶ ପାଉଅଛି । ଦର୍ଶନ ଶାସ୍ତ୍ରର ଗବେଷଣାରେ ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଥିବା ଓଡ଼ିଆ ଦାର୍ଶନିକ ମାନଙ୍କର ସଂକ୍ଷିପ୍ତ ପରିଚୟ ଦେବା ଲାଗି ଚେଷ୍ଟା କରିଛି । ବିଶିଷ୍ଟ ଦାର୍ଶନିକ ପ୍ରଫେସର ହୃଦାନନ୍ଦ ରାୟଙ୍କର ଓଡ଼ିଆ ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ଆତ୍ମଜୀବନୀ "ଜଣେ ଅନୁଭବୀ ଅନୁଭବରେ" ମୋ ମନ ଉପରେ ବିଶେଷ ପ୍ରଭାବ ପକାଇଥିଲା । ଆତ୍ମ ଜୀବନୀର ପ୍ରତିଟି ସୋପାନରେ ଏପରି ଭାବରେ ଦର୍ଶନ ବ୍ୟାଖ୍ୟା କରାଯାଇଅଛି, ଯାହା ଅନ୍ୟ ଆତ୍ମଜୀବନୀ ଠାରୁ ପୃଥକ୍ ପରି ମନେହେଉଛି । ହୁଏତ ଅନେକ ପାଠକ ବହିଟି ସମ୍ପୂର୍ଣ୍ଣଭାବେ ପଢିବାର ସୁଯୋଗ ପାଇନଥିବେ । ଅନୁଭବୀର ଅସଂଖ୍ୟ ଅନୁଭବ ଭିତରେ ଆଲୋଚିତ ହେଉଥିବା ଅନେକ ଦର୍ଶନ ତତ୍ତ୍ୱମାନଙ୍କରୁ କେତୋଟିର ବିଶ୍ଳେଷଣ କରିଥିଲେ ଗୋଟିଏ ପ୍ରବନ୍ଧରେ ଯାହା "ଚିର ସନ୍ଧାନ" ପତ୍ରିକାରେ ପ୍ରକାଶ ପାଇଥିଲା । ଉକ୍ତ ପ୍ରବନ୍ଧଟି ଏହି ବହିରେ ରଖିବାକୁ ଇଚ୍ଛାକଲି । ଧର୍ମର ସାମାଜିକ ମୂଲ୍ୟବୋଧ ପ୍ରବନ୍ଧଟି "ବିଜୟା ଭାରତୀ"ରେ ପ୍ରକାଶ ପାଉଛି ।

ସାଧାରଣତଃ ଉଚ୍ଚଶିକ୍ଷା ପଦ୍ଧତିରେ ଦର୍ଶନ "ଫିଲୋସଫି" ଅନ୍ତର୍ଭୁକ୍ତ ହୋଇଥାଏ । ଦର୍ଶନ ବିଷୟକ ଚର୍ଚ୍ଚାରେ ବାସ୍ତବ ବ୍ୟତୀତ ଅମୂର୍ତ୍ତ ଚିନ୍ତନର ଅଧିକ ଉପଯୋଗ ହୋଇଥିବା ହେତୁ ବୋଧହୁଏ ଦର୍ଶନକୁ କେବଳ ଉଚ୍ଚଶିକ୍ଷା ସ୍ତରରେ ସୀମିତ କରାହୋଇଛି । କିନ୍ତୁ ଦାର୍ଶନିକ ଆଲୋଚନାର ମହତ ସାଧାରଣ ଜୀବନ ଯାପନ କ୍ଷେତ୍ରରେ ମଧ୍ୟ ଉପଲବ୍ଧ ହୋଇଥାଏ । ପ୍ଲେଟୋଙ୍କର ରିପବ୍ଲିକ୍ ଗ୍ରନ୍ଥରେ ନାନା ପ୍ରକାରର ଶାସନ ବ୍ୟବସ୍ଥା ବିଷୟରେ ପର୍ଯ୍ୟାପ୍ତ ଆଲୋଚନା ଏବଂ ସାଧାରଣ ଜୀବନରେ ତାହାର କାର୍ଯ୍ୟକାରିତା ନେଇ ନାନା ତଥ୍ୟ ଉନ୍ମୋଚିତ ହୋଇଛି । ମାର୍କ୍ସଙ୍କ 'ଦାସକାପିଟାଲ' ଗ୍ରନ୍ଥ ଉଭୟ ସାମ୍ୟବାଦ ଓ ସମାଜବାଦ ସିଦ୍ଧାନ୍ତ ତଥା କାର୍ଯ୍ୟକାରିତା ଉପରେ ଉଲ୍ଲେଖନୀୟ ଆଲୋଚନା କରି ସମାଜ ବ୍ୟବସ୍ଥାରେ ବହୁ ଦୃଷ୍ଟାନ୍ତ ମୂଳକ ପରିବର୍ତ୍ତନ ଆଣିବାରେ ସମର୍ଥ ହୋଇଛି । ଶଙ୍କରଙ୍କ ଅଦ୍ୱିତୀୟ ବ୍ରହ୍ମବାଦ ମାୟାମୋହ ବିବର୍ଜିତ ବୈରାଗ ଭାବର ଦୃଷ୍ଟିଭଙ୍ଗୀ ଉପରେ ଗୁରୁତ୍ୱ ଦେଇ ଏକ ଭିନ୍ନ ସାମାଜିକ ଆଦର୍ଶଭାବ ସୃଷ୍ଟି କରିଛି । ଇତିହାସରୁ ଏପରି ବହୁ ଉଦାହରଣ ମିଳିଥାଏ । ଉଭୟ ବ୍ୟକ୍ତି ତଥା ସାମାଜିକ ପରିପ୍ରେକ୍ଷୀରେ ବିଭିନ୍ନ ସମସ୍ୟା ନେଇ ଅନୁଚିନ୍ତା ଆବଶ୍ୟକ ହୋଇପଡିଥାଏ । ସେଗୁଡ଼ିକର ଯଥାଯଥ ବିଚାର ତଥା ଅନୁଶୀଳନ ନିମନ୍ତେ ଦାର୍ଶନିକ ସମୀକ୍ଷାର ଉପଯୋଗ ଥିବା ଦୃଷ୍ଟିରୁ ଉଚ୍ଚଶିକ୍ଷା ସ୍ତରରେ ଦର୍ଶନ ଚର୍ଚ୍ଚାର ଆବଶ୍ୟକତା ଉପଲବ୍ଧି କରାଯାଏ ।

ଏହି ଦୃଷ୍ଟିରୁ ଅନୁଧ୍ୟାନ କଲେ ଦର୍ଶନ ଏବଂ ସମାଜ ବ୍ୟବସ୍ଥା ମଧ୍ୟରେ ଥିବା ନିବିଡ଼ ସମ୍ବନ୍ଧକୁ ଅସ୍ୱୀକାର କରିହେବ ନାହିଁ । ଯେକୌଣସି ପ୍ରକାର ସମାଜିକ ବ୍ୟାପାର ନିମନ୍ତେ କିଛି ପଦକ୍ଷେପ ନେବାକୁ ହେଲେ, ବିଶ୍ଳେଷଣାତ୍ମକ ଚିନ୍ତନର ଯେ ଆବଶ୍ୟକତା ଅଛି ଏହା ଅନସ୍ୱୀକାର୍ଯ୍ୟ । ସେଭଳି ଚିନ୍ତନ ପାଇଁ ଦାର୍ଶନିକ ସମୀକ୍ଷା ଏକାନ୍ତ ଆବଶ୍ୟକ । ପ୍ଲେଟୋ, ମାର୍କ୍ସଙ୍କ ପରି ଚାଣକ୍ୟ ଏବଂ ଅଶୋକଙ୍କର ଏ ଦିଗରେ ଅବଦାନ ମଧ୍ୟ ବିଚାର ସାପେକ୍ଷ ।

ଓଡ଼ିଶା କଥା ବିଚାର କଲେ ଦେଖାଯାଏ, ଯେଉଁ ପରିମାଣରେ ଓଡ଼ିଶାର ସାହିତ୍ୟ, କଳା, ସ୍ଥାପତ୍ୟ ଆଦି ବିଷୟରେ ବ୍ୟାପକ ଆଲୋଚନା ହୋଇଛି, ସେହି ପରିମାଣରେ ଓଡ଼ିଶାର ଦର୍ଶନ ବିଷୟକ ଆଲୋଚନା ହୋଇନାହିଁ । କିନ୍ତୁ ପ୍ରମୁଖ ବେଦାନ୍ତ, ବୌଦ୍ଧ ଆଦି ଭାରତୀୟ ଧର୍ମ - ଦର୍ଶନ ଚିନ୍ତାଧାରାରେ ପରମ୍ପରା ଅନୁଯାୟୀ କେତେକ ଓଡ଼ିଶାର ବୋଲି ଚିହ୍ନିତ ହୋଇଛନ୍ତି । ସେମାନେ ଅବଶ୍ୟ ସେମାନଙ୍କର ଲେଖା ଓଡ଼ିଆ ଭାଷାରେ ପ୍ରକାଶ ନ କରି ସଂସ୍କୃତ ଭାଷାରେ ପ୍ରକାଶ କରିଛନ୍ତି । ମୀମାଂସକ କୁମାରିଲ ଭଟ୍ଟ, ବୌଦ୍ଧ ଧର୍ମାବଲମ୍ବୀ ନାଗାର୍ଜୁନ ଏବଂ ଅନ୍ୟାନ୍ୟ ବହୁ ବୌଦ୍ଧ ଦର୍ଶନଙ୍କ ଓଡ଼ିଶାର ବୋଲି ଗବେଷକମାନେ ମତ ଦେଇଛନ୍ତି । ପରବର୍ତ୍ତୀ କାଳରେ ବୈଷ୍ଣବବାଦର ବହୁଳ ପ୍ରଚାର ପରିପ୍ରେକ୍ଷୀରେ ଅଦ୍ୱୈତ ବେଦାନ୍ତର ଜ୍ଞାନ-ପ୍ରାଧାନ୍ୟ ବିଚାରର

କେତେକାଂଶରେ ଲୋକପ୍ରିୟତା ହ୍ରାସ ହେଉଥିବାବେଳେ ଉତ୍କଳୀୟ ଶ୍ରୀଧର ସ୍ୱାମୀ ଭାଗବତର ଟୀକାକାର ଭାବେ ପ୍ରଖ୍ୟାତ ହୋଇଥିଲେ । ସେ ପ୍ରଥମ କରି ଅଦ୍ୱୈତ ଜ୍ଞାନ-ତତ୍ତ୍ୱ ଭକ୍ତି ବିରୋଧୀ ନ ହୋଇ ଭକ୍ତି ସହ ସଂଗତ ବୋଲି ଯୁକ୍ତି କରିଥିଲେ । ବିଖ୍ୟାତ ଉତ୍କଳୀୟ ବୈଷ୍ଣବ ସାଧକ ବଳଦେବ ବିଦ୍ୟାଭୂଷଣ ଗୋବିନ୍ଦ-ଭାଷ୍ୟ ରଚନା କରିଥିଲେ । ଊନବିଂଶ ଶତାବ୍ଦୀରେ ଆଦିବାସୀ କନ୍ଧ ଜାତିର ଭୀମଭୋଇ ଅଲେଖ ମହିମା ସ୍ୱାମୀଙ୍କ ଉଦ୍ଦେଶ୍ୟରେ ବିବିଧ ଜଣାଣ ଓ ଭଜନ ରଚନା କରି ଲୋକ ପ୍ରସିଦ୍ଧି ଲାଭ କରିଥିଲେ । ପରବର୍ତ୍ତୀ କାଳରେ ବିଶ୍ୱନାଥ ବାବା ମହିମା ଧର୍ମ ଦର୍ଶନ ଉପରେ ଏକ ବିରାଟ ଗ୍ରନ୍ଥ ପ୍ରଣୟନ କରିଥିଲେ ।

ବିଂଶ ଶତାବ୍ଦୀରେ କଲେଜ୍ ସ୍ତରରେ ଦର୍ଶନ (ଉଭୟ ପ୍ରାଚ୍ୟ - ପାଶ୍ଚାତ୍ୟ ) ବିଷୟ ପାଠ୍ୟକ୍ରମରେ ସ୍ଥାନ ପାଇଲା ଏବଂ ସେଥିଯୋଗୁ ଓଡ଼ିଶାର ଉଚ୍ଚଶିକ୍ଷାର୍ଥୀମାନେ ଦର୍ଶନ ପଢ଼ିବାକୁ ସୁଯୋଗ ପାଇଲେ । ସେମାନଙ୍କ ମଧ୍ୟରୁ କେତେକ ଦର୍ଶନ ପ୍ରତି ଅଧିକ ଆକୃଷ୍ଟ ହୋଇ ପରିଣତ ବୟସରେ ଦର୍ଶନ ସମ୍ବନ୍ଧରେ ବିଭିନ୍ନ ରଚନା ପ୍ରସ୍ତୁତ କରିଥିଲେ । କେତେକ ମଧ୍ୟ ମୌଳିକ ଚିନ୍ତାଧାରାର ସୂତ୍ରପାତ କରି ଦେଶୀୟ ତଥା ଆନ୍ତର୍ଜାତୀୟ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଛନ୍ତି । ସେମାନଙ୍କ ମଧ୍ୟରେ ✓ ରତ୍ନାକର ପତି, ✓ ମୋହିନୀ ମୋହନ ସେନାପତି, ✓ ପଣ୍ଡିତ ନୀଳକଣ୍ଠ ଦାଶ, ✓ପ୍ରଫେସର ଗଣେଶ୍ୱର ମିଶ୍ର, ପ୍ରଫେସର ଜୀତେନ୍ଦ୍ର ନାଥ ମହାନ୍ତି, ପ୍ରଫେସର ଗୌରାଙ୍ଗ ଚରଣ ନାୟକ, ପ୍ରଫେସର ହୃଦାନନ୍ଦ ରାୟ, ପ୍ରଫେସର ବିଜୟାନନ୍ଦ କର, ✓ ବୈରାଗୀ ମିଶ୍ର ଉଲ୍ଲେଖନୀୟ ।

## ଯେଉଁମାନଙ୍କଠାରେ ମୁଁ ଋଣୀ

ଆଇ.ଏ. ପଢିବା ସମୟରେ ତର୍କଶାସ୍ତ୍ର (ଲଜିକ୍) ପଢୁଥିଲି । ପାଠ ଭାରି ଭଲ ଲାଗୁଥିଲା ଏବଂ ପରୀକ୍ଷା ମାନଙ୍କରେ ଗଣିତ ପରି ବହୁତ ନମ୍ବର ମିଳୁଥିଲା । ଶୁଣିଥିଲି, ତର୍କଶାସ୍ତ୍ର ଦର୍ଶନ ଶାସ୍ତ୍ରର ଗୋଟିଏ ବିଭାଗ । ପୁନଶ୍ଚ ଶୁଣିବାକୁ ପାଇଲି, ଆଇ.ଏ.ରେ ଲଜିକ୍ ନ ପଢିଥିଲେ ବି.ଏ ରେ ଫିଲୋସଫି ପଢି ପାରିବ ନାହିଁ । ଦୁଇ ବିଷୟ ଭିତରେ କି ସମ୍ପର୍କ ଅଛି ଜାଣିବାକୁ ଆଗ୍ରହ ଥାଏ । ଧୀରେ ଧୀରେ ସମ୍ପର୍କଟି ବୁଝାଇଦେଲେ ସ୍କୁଲ ପାଠ ବେଳୁ ଜାଣିଥିବା ମେଧାବୀ ଛାତ୍ର ଓ ଓଜସ୍ୱୀ ବକ୍ତା ହୃଦାନନ୍ଦ ରାୟ । କାହିଁକି କେଜାଣି ମୋ ମନକୁ ଟାଣି ନେଲେ ଦର୍ଶନ ପଢିବା ଆଡ଼କୁ । ବି.ଏ.ରେ ଦର୍ଶନ ଶାସ୍ତ୍ର ଅନର୍ସ ନେଇ ପଢିଲି । କିନ୍ତୁ ଦର୍ଶନ ଶାସ୍ତ୍ରରେ ଏମ୍.ଏ. ପଢିବାକୁ ହେଲେ ଓଡ଼ିଶା ବାହାରକୁ ଯିବାକୁ ପଡ଼ିବ ଯାହାକି ସ୍ୱାସ୍ଥ୍ୟ ଦୃଷ୍ଟିରୁ ମୋ ପାଇଁ ସମ୍ଭବ ମନେ ହେଉନଥିଲା । ବି.ଏ ପଢିବା ସମୟରେ ✓ ପ୍ରଫେସର ଗଣେଶ୍ୱର ମିଶ୍ରଙ୍କ ପାଠପଢା ଓ ଭଲ ପାଇବା ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲି । ପ୍ରଫେସର ମିଶ୍ର ଏବଂ ବନାରସରେ ଗବେଷଣା କରୁଥିବା ହୃଦାନନ୍ଦ ରାୟ ଉଭୟଙ୍କଠାରୁ ଯଥେଷ୍ଟ ପ୍ରେରଣା ଲାଭ କରି ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଏମ୍.ଏ ପଢି ପାରିଲି । ପରେ ପରେ ସରକାରୀ ବୃତ୍ତିଲାଭ କରି ରେଭେନ୍ସା କଲେଜ୍‌ରେ ପ୍ରଫେସର ଗଣେଶ୍ୱର ମିଶ୍ରଙ୍କ ତତ୍ତ୍ୱାବଧାନରେ ଦର୍ଶନଶାସ୍ତ୍ରରେ ଗବେଷଣା କଲି । ଅଧ୍ୟାପକ ଜୀବନରେ ମଧ୍ୟ ହୃଦାନନ୍ଦ ବାବୁ ବରିଷ୍ଠ ସହକର୍ମୀ ଥାଇ ଦର୍ଶନ ଶାସ୍ତ୍ରର ଜଟିଳ ରାସ୍ତାରେ ମତେ ହାତଧରି ଆଗେଇ ନେଇଛନ୍ତି । ତେଣୁ ମୋର ବହି "ଶିକ୍ଷା, ଦର୍ଶନ ଓ ସମାଜ - ଚେତନା" ପ୍ରଥମେ କୃତଜ୍ଞତାଭରା ପ୍ରଣାମ ଜଣାଉଛି ✓ ପ୍ରଫେସର ଗଣେଶ୍ୱର ମିଶ୍ରଙ୍କୁ ଏବଂ ଜୀବନ ଭରା ପ୍ରେରଣା ଦେଇ ଆସିଥିବା ଅଗ୍ରଜ ପ୍ରାୟ ପ୍ରଫେସର ହୃଦାନନ୍ଦ ରାୟଙ୍କୁ ।

ଏ ବହିଟିରେ ଥିବା ପ୍ରବନ୍ଧମାନ ଲେଖୁଥିବା ସମୟରେ ଟେଲିଫୋନ୍ ମାଧ୍ୟମରେ କଥାହୁଏ ଏବଂ ଅନେକ କିଛି ଶିକ୍ଷାଲାଭ କରେ ଦାର୍ଶନିକ ବନ୍ଧୁ ପୂର୍ବତନ କୁଳପତି ପ୍ରଫେସର (ଏମିରିଟସ୍) ଡ଼କ୍ଟର ଗୌରାଙ୍ଗ ଚରଣ ନାୟକଙ୍କଠାରୁ । ତାଙ୍କର ଅଗାଧ ଜ୍ଞାନକୁ କଳି ପାରେ ନାହିଁ । ଦର୍ଶନର ସାମାଜିକତା ଉପଲବ୍ଧି କଲି ତାଙ୍କ ସହିତ ସମ୍ପର୍କ ଜରିଆରେ । ସମ୍ପର୍କ ତ ବହୁ ଆଗରୁ ଥିଲା । କିନ୍ତୁ ଏବେକାର ସମ୍ପର୍କ ମତେ ଉତ୍ସାହିତ କଲା କିଛି ଲେଖିବା ପାଇଁ । ଦାର୍ଶନିକ ଭାବରେ ଭାରତରେ ଓ ବିଦେଶରେ ସେ ଖ୍ୟାତି ଅର୍ଜନ କରିଛନ୍ତି । କିଛି ନ ଜାଣିଥିବା ମୁଁ ଅନେକ କିଛି ଜାଣିବାର ସୁଯୋଗ ପାଇଲିଣି ତାଙ୍କଠାରୁ । ତେଣୁ ମୋ ବହିଟି ତାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି । ତାଙ୍କର ପ୍ରତିଭା କେବଳ ଦର୍ଶନ ଶାସ୍ତ୍ରରେ ସୀମିତ ନୁହେଁ, ସଂସ୍କୃତ

ସାହିତ୍ୟରେ ଅସମ୍ଭବ ପାଣ୍ଡିତ୍ୟ ସାଙ୍ଗକୁ ଇଂରାଜୀ ଓ ଓଡ଼ିଆ କବିତାମାନ ତାଙ୍କର କଣ୍ଠସ୍ଥ ଅଛି। ଏହା ସତ୍ୟ ଯେ, ଜ୍ଞାନର ଅଭାବଥିବା ବ୍ୟକ୍ତି ଜ୍ଞାନୀ ଓ ବିଦ୍ୱାନଙ୍କ ପାଖରେ ନ୍ୟୁନତା ଉପଲବ୍ଧି କରେ। ମୋ ମନ ଭିତରେ ଏପରି ନ୍ୟୁନତା ଭାବର ପରିଚୟ ପାଇଁ ପ୍ରଫେସର ନାୟକ ବୋଧହୁଏ ମୋ ମନ ଭିତରେ ଆଶ୍ୱାସନା ଭରି ଦେବା ଲାଗି 'ଅଭିମତ' ଜରିଆରେ କଥା କେଇପଦ ଲେଖିବା ପାଇଁ ରାଜି ହେଲେ। 'ସେ ମହାନ' ଏ କଥା ନ କହି ତାଙ୍କ ମହାନତା ଭାବକୁ ମୋ ହୃଦୟ ଭିତରେ ପ୍ରଣାମ କରି ଗ୍ରହଣ କରୁଅଛି।

କଟକ ରେଭେନ୍ସା କଲେଜ୍‌ରେ ଦର୍ଶନଶାସ୍ତ୍ର ଅଧ୍ୟାପକ ଥିବା ସମୟରେ ସେ ଥିଲେ ମୋର ପ୍ରିୟ ଛାତ୍ର । କିନ୍ତୁ ମୁଁ କ'ଣ କେବେ ଭାବିଥିଲି ଅବସର ଗ୍ରହଣ ପରେ ଦୀର୍ଘ ୧୮ ବର୍ଷ ଧରି ମୁଁ ତାଙ୍କର ଛାତ୍ର ହେବି ବୋଲି। ଏଇ ଦୀର୍ଘ ସମୟ ଧରି କେତେ ପାଠ ମତେ ପଢାଇ ସାରିଲେଣି ପ୍ରଫେସର(ଏମିରିଟସ୍)ଡ଼କ୍ଟର ବିଜୟାନନ୍ଦ କର। ସେ ଜାତୀୟ ସ୍ତରରେ ଦାର୍ଶନିକ ପ୍ରତିଷ୍ଠା ଲାଭ କରିଛନ୍ତି । ତାଙ୍କର ଗବେଷଣାତ୍ମକ ନିବନ୍ଧ ମାନ ଜାତୀୟ ତଥା ଆନ୍ତର୍ଜାତିକ ମହଲରେ ସୁବିଦିତ। ମୋର ଏ ବହି ତାଙ୍କର ଜ୍ଞାନ, ପ୍ରତିଷ୍ଠା ଏବଂ ଶିକ୍ଷାଦାନର ଉଦାରତା ପାଖରେ ଋଣୀ। ମୋର ପ୍ରବନ୍ଧମାନ ତାଙ୍କ ଶିକ୍ଷାଦାନର ବାହ୍ୟ ପ୍ରକାଶ।

ଆଉ ଜଣେ ଛାତ୍ର ମୋ ଅବସର ଗ୍ରହଣ ସମୟରେ ମତେ ଅନେକ ବିଷୟରେ ଶିକ୍ଷାଦାନ କରି ଆସୁଛନ୍ତି। କଥା କଥାକେ ମୁଁ ତାଙ୍କୁ ଫୋନ୍ କରି ମୋ ମନ ଭିତରେ ଉପୁଜୁଥିବା ଦ୍ୱନ୍ଦ୍ୱ ସବୁର ସମାଧାନ କରେ। ଦର୍ଶନ ଶାସ୍ତ୍ରରେ ଉଚ୍ଚତର ଗବେଷଣା କରିଛନ୍ତି ଏବଂ ବହୁ ବର୍ଷ ଧରି ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରି ଆସିଛନ୍ତି। ଦର୍ଶନ ଶାସ୍ତ୍ର ବ୍ୟତୀତ ସାହିତ୍ୟ କ୍ଷେତ୍ରରେ ବେଶ୍ ପାରଦର୍ଶିତା ଅଛି ତାଙ୍କର। ପ୍ରଫେସର ଡ଼କ୍ଟର ଗଣେଶ ପ୍ରସାଦ ଦାସ। ଜଣେ ଦାର୍ଶନିକ, କିନ୍ତୁ ବସ୍ତୁବାଦ ଦୁନିଆରେ ଚଳିବା ପାଇଁ ଯେଉଁ ବିଷୟ ମାନଙ୍କର ଜ୍ଞାନ ନିତାନ୍ତ ପ୍ରୟୋଜନ ସେ ସବୁଜ୍ଞାନର ଅଧିକାରୀ ସେ। ସଫଳ ଜୀବନ ଯାପନ କରିବାର ମାର୍ଗ ଜାଣି ନଥିବା ମୁଁ ପରିଣତ ବୟସରେ ଅନେକ କିଛି ଶିକ୍ଷାଲାଭ କଲି ତାଙ୍କଠାରୁ। ମୋର ଏହି ବହି ଡ଼କ୍ଟର ଦାସଙ୍କୁ ବିନମ୍ର କୃତଜ୍ଞତା ଜଣାଉଛି।

◆ ◆ ◆

# "ବୈକୁଣ୍ଠ ସମାନ ଆହା ଅଟେ ସେହି ଘର"

**ବିଷୟରେ ପଦେ .....**

ଏ ବହିଟି ଯଦି କିଏ ପାଠକ ପଢିବେ, ତାଙ୍କର ଜାଣି ରଖିବା ଲାଗି ମୁଁ ସ୍ପଷ୍ଟ କହିଦେବାକୁ ଚାହେଁ ଯେ ମୁଁ କବି ନୁହେଁ କି ମତେ କବିତା ଲେଖି ଆସେନାହିଁ, କିନ୍ତୁ ପିଲାଦିନେ ✓ ଉତ୍କଳମଣି ଗୋପବନ୍ଧୁ ଦାଶ, ✓ ମଧୁସୁଦନ ଦାସ, ✓ ମଧୁସୁଦନ ରାଓ, ✓ ପଦ୍ମଚରଣ ପଟ୍ଟନାୟକ, ✓ ବୈକୁଣ୍ଠନାଥ ପଟ୍ଟନାୟକ, ✓ ଡ଼କ୍ଟର ମାୟାଧର ମାନସିଂହ, ✓ ରାଧାମୋହନ ଗଡନାୟକ ପ୍ରଭୃତିଙ୍କ ଲିଖିତ ସେକାଳର କବିତା ସବୁ ମତେ ପଢିବାକୁ ଭାରି ଭଲ ଲାଗୁଥିଲା । ସେ କବିତା ସବୁ ଏପରି ଥିଲା, ଯେକୌଣସି ସାଧାରଣ ଲୋକ ପଢିଲେ ବି ଅର୍ଥ ବୁଝିପାରୁଥିଲା । ସେ କବିତା ସବୁ ବଡ ପାଟିରେ ଆବୃତ୍ତି କଲେ ମନ ଭିତରେ ଗୋଟାଏ ରକମର ଉନ୍ମାଦନା ସୃଷ୍ଟି ହେଉଥିଲା । କିନ୍ତୁ ଦୁଃଖର ବିଷୟ, ତଥା କଥିତ ଆଧୁନିକ ଗଦ୍ୟ କବିତା ମାନଙ୍କ ଭିତରୁ ଗୋଟିଏ ବି ମୁଁ ଭଲ ଭାବରେ ବୁଝିପାରିନାହିଁ । ମୁଁ ମୋ ବୁଝିବା ଶକ୍ତିକୁ ଦୋଷ ଦିଏ। ଯେ କୌଣସି ପତ୍ରିକାର ପୃଷ୍ଠା ଓଲଟାଇଲେ କବିତା ବିଭାଗରେ ସବୁ କବିତାତକ ଆଧୁନିକ ଏବଂ ସହଜେ ନବୁଝିପାରିବା ଶ୍ରେଣୀର । ଚେଷ୍ଟା କରେ ବୁଝିବାପାଇଁ, କିନ୍ତୁ ପାରେନାହିଁ । ତେଣୁ କବିତା ପଢିବା ଲାଗି ପିଲାଦିନର ଆଗ୍ରହ କ୍ରମଶଃ ଲୋପ ପାଇଗଲା ।

ମୁଁ ଯାହାସବୁ ଲେଖିଛି ସେଗୁଡ଼ିକ ପଦକୁ ପଦ ମିଶୁଥିବା ପୁରାତନ କବିତା ନୁହେଁ କିମ୍ବା ଦୈନନ୍ଦିନ ଜୀବନର ବ୍ୟବହାରରେ ଲାଗୁଥିବା ଯେକୌଣସି ବସ୍ତୁ ବା କାର୍ଯ୍ୟର ଉପମାମାନଙ୍କ ଦ୍ୱାରା ଅଳଙ୍କୃତ ଗଦ୍ୟ କବିତା ନୁହେଁ, ମୋଟରେ କହିଲେ ସେଗୁଡ଼ିକ କବିତା ପଦବାଚ୍ୟ ନୁହଁନ୍ତି । କିନ୍ତୁ ମୋ ପରିବାରର ସଦସ୍ୟମାନଙ୍କ ବିଷୟରେ ମୋ ମନ ଭିତରେ ଯେତେବେଳେ ଯାହା ଭାବନା ସୃଷ୍ଟି ହୁଏ ସେ ସବୁକୁ ଭାଷାରେ ପ୍ରକାଶ କରିବାକୁ ଚେଷ୍ଟା କରେ । ପିଲାମାନଙ୍କର ଜନ୍ମଦିନରେ କିମ୍ବା ବିବାହ ବାର୍ଷିକୀରେ ମୁଁ କେତେବେଳେ କେମିତି ମୋ ଭାବନା ପ୍ରକାଶ ପାଇଥିବା ଲେଖା ସେମାନଙ୍କୁ ଉପହାର ଦିଏ। ଯେହେତୁ ଏ ଲେଖାମାନେ କବିତା ନୁହନ୍ତି, ମୋ ପରିବାର ସାଙ୍ଗରେ ସଂପୃକ୍ତ ନଥିବା ବ୍ୟକ୍ତିମାନେ ଏ ସବୁର ମୂଲ୍ୟ ଆକଳନ କିପରି ବା କରିବେ ? ଏ ଲେଖାମାନଙ୍କର ଭିତ୍ତିଭୂମି ହେଲା ଆନ୍ତରିକତା । କବିତା ବା ପଦ୍ୟର ନିୟମ ବା ଭାଷାର ନିୟମକୁ ମୁଁ ନଜରକୁ ଆଣିନାହିଁ । ସମୟ ସମୟରେ ପରିବାର ସଦସ୍ୟଙ୍କର ବିୟୋଗରେ ବିଚଳିତ ହୋଇ ଏଣୁ ତେଣୁ ଲେଖି ପକାଇଛି ।

ମୋ ପରିବାରକୁ ତିନି ଭାଗରେ ବିଭକ୍ତ କରିଛି । ମୋ ପୁଅ, ଝିଅ, ନାତି, ନାତୁଣୀମାନଙ୍କୁ ଗୋଟିଏ ଭାଗରେ ରଖିଛି । ଆଉ ଗୋଟିଏ ଭାଗରେ ମୋ ସ୍ତ୍ରୀଙ୍କ ପାଇଁ ଲେଖିଥିବା ଅଳ୍ପ କେତୋଟି ଲେଖା । କିନ୍ତୁ ପ୍ରଧାନ ଭାଗଟିରେ ମୋ ପିଇସି ପ୍ରଭୃତିଙ୍କ ବିଷୟରେ ମନକୁ ଯାହା ଆସିଛି ଲେଖିଛି । ଏ ଲେଖା ସବୁ ବିଭିନ୍ନ ସମୟରେ ଲେଖା ହୋଇଛି । ମୋ ଝିଅର ଓ ମୋ ଶାଳୀର ବିଭାଘର ସମୟରେ ଲେଖିଥିବା ମାଙ୍ଗଳିକ ମଧ ଏ ପୁସ୍ତକଟିରେ ସ୍ଥାନ ପାଇଛି ।

ମୋ ପିଲାମାନେ ମୋର ଦେଇଥିବା ଲେଖା ସବୁକୁ ଯତ୍ନେ ସାଇତି ରଖୁଥିଲେ ଏବଂ ମୋତେ ବହୁ ଭାବରେ ପ୍ରଭାବିତ କଲେ ସେ ସବୁ ଲେଖାକୁ ବହି ଆକାରରେ ପ୍ରକାଶ କରିବା ଲାଗି ।

ପରିବାର ଭିତରେ ଥିବା ଆନ୍ତରିକତାକୁ ପ୍ରାଧାନ୍ୟ ଦେଉଥିବା ଏବଂ ସାଧାରଣ ଲୋକଙ୍କ କଣ୍ଠରେ ଆବୃତ୍ତି ହେଉଥିବା ✓ ମଧୁସୁଦନ ରାଓଙ୍କର "ବୈକୁଣ୍ଠ ସମାନ ଆହା ଅଟେ ସେହି ଘର" ମୋ ଲେଖା ସଂକଳନର ଉପଯୁକ୍ତ ନାମକରଣ ବୋଲି ମୁଁ ବିବେଚନା କଲି । ତା ସଂଗେ ସଂଗେ ମୋ ପରିବାରର ସଦସ୍ୟ ମାନେ କବିତା ପଦଟିର ପର ବାକ୍ୟ "ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର" କୁ ଆନ୍ତରିକତାର ସହ ପ୍ରତିଷ୍ଠା କରି ପାରିଲେ ମୋ ଲେଖାଗୁଡ଼ିକର ମୂଲ୍ୟ ମୋତେ ମିଳିଗଲା ବୋଲି ଭାବିବି । ମୋର ପରିବାରର କେତେକ ସଦସ୍ୟଙ୍କର ଫଟୋ ସବୁକୁ ଏକତ୍ର କରି ଗଢି ଉଠିଛି ବହିଟିର ପ୍ରଚ୍ଛଦପଟ ।

# ଏ ସବୁ ମୋହର ସୁଖ ପସରା

('ବୈକୁଣ୍ଠ ସମାନ ଆହା ଅଟେ ସେହି ଘର'
ପୁସ୍ତକ ପରେ ପରେ ନିଜ ପରିବାରବର୍ଗଙ୍କ ପାଇଁ ଆଉ ଏକ ଅନ୍ତରଙ୍ଗ ସର)

ବିଶିଷ୍ଟ ସାହିତ୍ୟିକ ପ୍ରଫେସର ଡ଼କ୍ଟର ଶ୍ରୀଚରଣ ମହାନ୍ତିଙ୍କ
ଦ୍ୱାରା ସୃଷ୍ଟିର କିଛି ଆଭାସ ମାତ୍ର' ।

**ଗଣେଶ୍ୱର ଦାସ**

## ସ୍ୱାଗତମ 'ସୁଖ ପସରା'

"ବୈକୁଣ୍ଠ ସମାନ ଆହା ଅଟେ ସେହି ଘର" ପୁସ୍ତକଟିରେ ମୋ ପରିବାର ବ୍ୟକ୍ତିମାନଙ୍କ ପ୍ରତି ମୋ ସ୍ନେହ, ଶ୍ରଦ୍ଧା, ସମ୍ମାନ ଏଣୁ ତେଣୁ ଲେଖିଥିବା ଭାଷାରେ ପ୍ରକାଶ ପାଇଥିଲା। ମତେ ଜାଣିଥିବା ମୋ ବନ୍ଧୁମାନେ ଉକ୍ତ ପୁସ୍ତକଟିରେ ପ୍ରକାଶ ପାଇଥିବା ତଥାକଥିତ କବିତା ଗୁଡ଼ିକ ପଢି ଅନେକାଂଶରେ ଭାବବିହ୍ୱଳ ହୋଇ ପଡ଼ିଥିଲେ। ସେମାନଙ୍କର ଏତଦ୍‌ଦୃଶ ଭାବାବେଶ ମତେ ଅଧିକ ଲେଖିବା ପାଇଁ ଉତ୍ସାହିତ କରିଥିଲା । ମୋର ଦିବଂଗତ ବାପା, ବୋଉ, ଶାଶୁ, ଶ୍ୱଶୁରଙ୍କର ବାର୍ଷିକ ଶ୍ରାଦ୍ଧ ଦିବସମାନଙ୍କରେ ସେମାନେ ତୁହାଇ ତୁହାଇ ମୋ ମନ ଭିତରକୁ ଆସନ୍ତି ଏବଂ କିଛି ଦି ପଦ ନ ଲେଖିଲା ପର୍ଯ୍ୟନ୍ତ ମତେ ଶାନ୍ତି ମିଳେ ନାହିଁ । ସେହିପରି ପିଲାମାନଙ୍କର ଜନ୍ମଦିନ ବା ବିବାହ ବାର୍ଷିକୀରେ ଗ୍ରିଟିଂ କାର୍ଡ଼ ବଦଳରେ କଥା କେଇପଦ ଲେଖି ଶୁଭେଚ୍ଛା ଜଣାଇବାରେ ଅଶେଷ ଆତ୍ମ ସନ୍ତୋଷ ଲାଭ କରେ। ଏମିତି ଲେଖୁ ଲେଖୁ ଜୀବନ ସରିଆସିଲାଣି । ସଂସାରରୁ ବିଦାୟ ନେବା ପୂର୍ବରୁ ମୋ ପରିବାର ବର୍ଗଙ୍କ ଉଦ୍ଦେଶ୍ୟରେ ଲେଖିଥିବା ମନକଥା ସବୁକୁ " ଏସବୁ ମୋହର ସୁଖ ପସରା" ବାକ୍ସ ଭିତରେ ସଯତ୍ନେ ସଜାଡ଼ି ମୃତ୍ୟୁକୁ ଆହ୍ୱାନ ଜଣାଇବି। ପରିବାରବର୍ଗଙ୍କୁ 'ଗୀତାଞ୍ଜଳି' ଭାଷାରେ କହିବି, "ମୁଁ ମୋର ବିରତି ନେଇଛି । ଭ୍ରାତାଗଣ ବିଦାୟ ଦିଅନ୍ତୁ। ମଥାନତେ ଶ୍ରଦ୍ଧା ନିବେଦନ, ମୁଁ ଏଥର ବିଦାୟ ନେଉଛି। ମୋ ଦ୍ୱାରର ଚାବିକାଠି ଏଥରକ ଦେଲି - ମୋ ଘରୁ ସମସ୍ତ ଅଧିକାର ମୁଁ ଛାଡ଼ିଲି। ତୁମମାନଙ୍କର ଶେଷ ଦୟାପୂର୍ଣ୍ଣ ବାକ୍ୟ ଭିକ୍ଷା କରେ।......... ମୋ'ର ବନ୍ଧୁଗଣ! ଏ ମୋ ' ବିଦାୟ ବେଳାରେ ମୋର ଟିକେ ଶୁଭ ମନାସନ୍ତୁ। "* ସେଇ 'ଗୀତାଞ୍ଜଳି' ଭାଷାରେ 'ମୃତ୍ୟୁ' କୁ କହିବି,

"ଅନ୍ତିମ ପରିପୂର୍ଣ୍ଣତା ହେ ମୋ ଜୀବନର, ମୃତ୍ୟୁ, ମୋ'ର ମୃତ୍ୟୁ! ....... ଦିନ ପରେ ଦିନ ମୁଁ ତୁମକୁ ଅପେକ୍ଷା କରିଛି; ତୁମ ପାଇଁ ସିନା ଜୀବନର ଆନନ୍ଦ ଯନ୍ତ୍ରଣା ଅଙ୍ଗେ ନିଭାଇଛି"*।

ମୋ ପରିବାରର ବ୍ୟକ୍ତିମାନଙ୍କ ପାଇଁ ମନ କଥା ପ୍ରକାଶ କଲାବେଳେ ଗୋଟିଏ ପ୍ରଶ୍ନ ପ୍ରାୟ ଉପୁଜେ । 'ମୋ ପରିବାର', 'ମୋ ମନ କଥା' ସବୁ ତ ମୋର ବ୍ୟକ୍ତିଗତ ବ୍ୟାପାର ବା ସମସ୍ୟା । ଏଥିରେ ମୋ ଲେଖାର ପାଠକମାନେ କିପରି ଭାବରେ ମାନସିକ ସ୍ତରରେ ସନ୍ତୋଷ ଲାଭ କରିବେ । ବ୍ୟକ୍ତିଗତ ସ୍ତରରେ ଲେଖିଲାବେଳେ ମୁଁ ବ୍ୟକ୍ତିକୁ ସାଧାରଣ ବର୍ଗ ଭିତରେ ମିଶାଇ ରଖେ । ମୋ ବାପା, ମୋ ବୋଉ, ମୋ ଅପା, ମୋ ମନ ଭିତରେ ଯେଉଁ ଆର୍ଦ୍ରତା ଏବଂ କୋମଳତା ସୃଷ୍ଟି କରିଥାନ୍ତି ତାହା ସମସ୍ତଙ୍କ କ୍ଷେତ୍ରରେ ପ୍ରୟୋଗ କରାଯାଇ ପାରିବ । ବାପା, ବୋଉ, ଅପା, ଭାଇ, ପତ୍ନୀ ଅଥବା ପିଲାମାନଙ୍କ ପ୍ରତି ଥିବା ସୀମିତ ଭାବନା ଆଜି ଅସୀମର ଗଭୀର ପୂର୍ଣ୍ଣତା ଭିତରେ ମିଶି ଯାଆନ୍ତି । ପୁଣି ବିଶ୍ୱକବିଙ୍କ ଦାର୍ଶନିକ ଛାୟାତଳେ ଆଶ୍ରୟ ନେଇ ତାଙ୍କରି ସଙ୍ଗୀତରେ ପ୍ରକାଶ କରୁଛି,

"ଆସିଚି ଏ ଯେଉଁ ଅସୀମର ପାରେ,
ହଜେ ନାହିଁ ଯହିଁ କିଛି କେଉଁଠାରେ,
ହଜେ ନାହିଁ ଆଶା, ହଜେ ନାହିଁ ସୁଖ,
ହଜେ ନାହିଁ ଘୋର ଅଶ୍ରୁଜଳରେ ଥରେ ଦେଖିଥିବା ମୁଖ" ....

"ଦିଅ ହେ ବୁଡ଼ାଇ ତୁମ ଅସୀମର ଗଭୀର ପୂର୍ଣ୍ଣତାରେ
ଥରେ ହେଲେ ଶେଷେ ରସିଯାଏଁ ସେଇ ହଜିଲା ପରଶେ,
ମିଶିଯାଏଁ ଯାଇ ଅଖିଳ ବିଶ୍ୱରାସେ" । (×)

ମୋ ବ୍ୟକ୍ତିଗତ ଜୀବନ ତଥା ମୋ ବ୍ୟକ୍ତିଗତ ସଂପର୍କ ବହୁ ପରିମାଣରେ ପ୍ରଭାବିତ ହୋଇଛି ବିଶ୍ୱକବି ରବୀନ୍ଦ୍ର ନାଥ ଟାଗୋରଙ୍କ 'ଗୀତାଞ୍ଜଳି' ଦ୍ୱାରା । ବିଜ୍ଞ, ବିଦ୍ୱାନ, ବିଶିଷ୍ଟ କବି, ଉଚ୍ଚକୋଟୀର ପ୍ରଶାସକ ଶ୍ରୀ ହରପ୍ରସାଦ ଦାସଙ୍କର 'ଗୀତାଞ୍ଜଳି'ର ଓଡ଼ିଆ ଅନୁବାଦ ମତେ ବିଶ୍ୱଗୁରୁଙ୍କର ଗଭୀର ଦାର୍ଶନିକ ତତ୍ତ୍ୱ ଭିତରକୁ କିଛିଟା ପ୍ରବେଶ କରିବା ପାଇଁ ଅନେକ ପରିମାଣରେ ସାହାଯ୍ୟ କରିଛି । ତେଣୁ ମୁଁ ସେଇ ମହାନ୍ ବ୍ୟକ୍ତିଙ୍କ ପାଖରେ କୃତଜ୍ଞତା ଜ୍ଞାପନ କରୁଛି ।

"ସୃଷ୍ଟିର କିଛି ଅଭାସ ମାତ୍ର" ଲେଖିଥିବା ବିଶିଷ୍ଟ ସାହିତ୍ୟିକ ଓ ସମାଲୋଚକ ପ୍ରଫେସର ଡ଼ଃ. ଶ୍ରୀଚରଣ ମହାନ୍ତିଙ୍କଠାରେ ମୋର କୃତଜ୍ଞତା କଳି ହେବ ନାହିଁ । ପ୍ରଥମଥର ପାଇଁ ଜଣେ ବିଶିଷ୍ଟ ସାହିତ୍ୟିକ ଓ ଲେଖକଙ୍କ ଠାରୁ ଜାଣିବାକୁ ପାଇଲି ଯେ ମୁଁ ଲେଖିଥିବା କଥାସବୁ ଭିତରେ କବିତ୍ୱର ଆଭାସ ମିଳୁଛି । ବ୍ୟକ୍ତିଗତ ସଂପର୍କକୁ ବାଦ୍ ଦେଇଦେଲେ ବାକ୍ୟରେ କବିତା ମାନ ଗଢି ଉଠିଛନ୍ତି । କାର୍ଯ୍ୟବ୍ୟସ୍ତତା ଭିତରେ ଡ଼ଃ. ମହାନ୍ତି କବିତା ଗୁଡ଼ିକର ସମୀକ୍ଷା କରି ପାଠକ ମାନଙ୍କଠାରେ ମତେ ପହଞ୍ଚାଇ ପାରିଛନ୍ତି । ବୟସରେ ବହୁତ ସାନ ହୋଇଥିବାରୁ କେବଳ ହାର୍ଦ୍ଦିକ ସାଧୁବାଦ ଜଣାଉଛି ।

ଏକଦା ଛାତ୍ର ଥିଲେ ବୋଲି ଏ ପର୍ଯ୍ୟନ୍ତ ଋଣ ସୁଝି ପାରି ନାହାନ୍ତି କହି କବିତା ଗୁଡ଼ିକୁ ପୁସ୍ତକ ଆକାରରେ ଛପାଇ ପ୍ରକାଶ କରିବାର ସମ୍ପୂର୍ଣ୍ଣ ଦାୟିତ୍ୱ ନେଇଥିବା ହେତୁ ମ୍ୟାଗ୍ନମ ପ୍ରିଣ୍ଟର୍ସ୍‌ର ସତାଧିକାରୀ ଶ୍ରୀ ଲକ୍ଷ୍ମୀନାରାୟଣ ପାଢୀଙ୍କୁ ସ୍ନେହାଶୀର୍ବାଦ ପ୍ରଦାନ କରୁଅଛି ।

ଶେଷରେ ମୋ ପରିବାର ଭିତରେ ଯେଉଁମାନଙ୍କର ଆନ୍ତରିକତାକୁ ନେଇ ମୋ ସୁଖ ପସରା ଗଢି ଉଠିଛି ସେମାନଙ୍କଠାରୁ ବିଦାୟ ନେବାର ସମୟ ଯେତେ କରୁଣ ହେଲେ ବି ବାସ୍ତବିତାର ସମ୍ମୁଖୀନ ହେବାଲାଗି ସେମାନଙ୍କର ମାନସିକ ପ୍ରସ୍ତୁତି ହିଁ ଭଗବାନଙ୍କଠାରେ ପ୍ରାର୍ଥନା କରୁଅଛି ।

**ଗଣେଶ୍ୱର ଦାସ**

* **ଗୀତାଞ୍ଜଳୀ -ରୂପାନ୍ତର ଜଗନ୍ନାଥ ପାତ୍ର - ପୃ ୧୨୨,୧୨.୧୧୯**

× **ଗୀତାଞ୍ଜଳୀ - ଅନୁବାଦ ହରପ୍ରସାଦ ଦାସ - ପୃ ୧୯୫**

## ସୃଷ୍ଟିର କିଛି ଆଭାସ ମାତ୍ର

### ନିରୋଳା କବି ମନଟିଏ !

ସ୍ରଷ୍ଟା ପ୍ରଫେସର ଗଣେଶ୍ୱର ଦାସଙ୍କ ସୃଷ୍ଟି ପ୍ରବାହକୁ ମୁଁ ପ୍ରଣାମ ଜଣାଉଛି । ତା୪.୪.୧୯୮୪ରେ ସରକାରୀ କଲେଜ, ରାଉରକେଲାର ଅଧ୍ୟକ୍ଷ ଭାବରେ ଯୋଗଦାନ କରିବା ଦିନରୁ ମୋର ସାର୍, ପ୍ରଫେସର ଦାସଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ। ତାଙ୍କର କ୍ଷୁଦ୍ର ଶରୀର ମଧ୍ୟରେ ରହିଛି କି ବିରାଟ ଦୁନିଆଁର ଭାବନା। ଦାର୍ଶନିକ ବ୍ୟକ୍ତିତ୍ୱ ଭିତରେ ବିଦ୍ୟମାନ କବିମନର ସଦାପ୍ରବାହିତ ଝରଣାଟିଏ । ପ୍ରଶାସନ କ୍ଷେତ୍ରରେ ଉପସ୍ଥିତ ରହିଥାଏ ଇସ୍ପାତର ଟାଣ ବ୍ୟକ୍ତିତ୍ୱ ଏବଂ ତାଙ୍କର ହୃଦୟ-କନ୍ଦର-ଲବଣୀ-ସଦୃଶ୍ୟ-ସୁକୋମଳ । ଏ ସବୁ ଭିତରେ ଯେ ତୁଙ୍ଗା-କବି-ମନ-ଟିଏ ଅନ୍ତଃସଲୀଳା ଫଲ୍‌ଗୁ ପରି ପ୍ରବାହିତ ହୋଇ ଚାଲିଥିଲା, ତାହା କର୍ମକ୍ଷେତ୍ରରୁ ଅବସର ନେଲା ପରେ ହିଁ ସ୍ପଷ୍ଟ ହୋଇଗଲା।

ଏହା ପୂର୍ବରୁ ଯେ ସେ ଲେଖୁ ନଥିଲେ ସେପରି କହି ହେବନି । ସେ ବରାଦି କବିତା ନ ଲେଖିଲେ ବି ତାଙ୍କ ଭିତରେ ଉଛୁଳି ଉଠୁଥିବା ସ୍ନେହ ସୋହାଗର ଭାବନା ଅବସ୍ଥା ଚକ୍ରରେ ଦାନାବାନ୍ଧି ବସୁଥିଲା ଚିଠିପତ୍ର ରୂପରେ, କବିତା ଭାବରେ। ଯେତେବେଳେ ଆନନ୍ଦ ଆସିଛି ବା ଦୁଃଖ ଆସିଛି, ଆଖିର ଲୁହ ସାଥିରେ ହାତକୁ କଲମଟି ଆସିଯାଇଛି । ଲୁହ କାଳି ହୋଇ କବିତା ପାଲଟି ଯାଇଛି। ଝିଅ, ସୀମାର ବାହାଘର ହେଉ ବା ଆଦରର ସାନଭାଇ ବୀରେଶ୍ୱର ଦାସଙ୍କର ଅକାଳ ବିୟୋଗରେ ହେଉ। ନିଜ ପରିବାରକୁ ନିବିଡ ଭାବରେ ଭଲ ପାଉଥିବାର ସଂକେତ ସେ ରଖିଯାଇଛନ୍ତି ନିଜ ରଚନାରେ। ସମଗ୍ର ପରିବାରକୁ ବାନ୍ଧି ରଖିଛନ୍ତି ନିଜ ଭାବନାରେ, ସ୍ନେହର ଡ଼ୋରିରେ।

ପ୍ରଫେସର ଦାସଙ୍କ ନିଜର ପ୍ରେରିତ-ଲେଖା କ୍ରମେ ପାଲଟି ଯାଇଛି ସ୍ମୃତିର ଆଲେଖ୍ୟ ହୋଇ। ବିଭିନ୍ନ ସମୟରେ ସେ ଆଙ୍କିଥିବା ମନର ଛବିକୁ କବିତା ରୂପରେ ସଜାଇ ମଣ୍ଡିତ କରିଛନ୍ତି "ବୈକୁଣ୍ଠ ସମାନ ଆହା ଅଟେ ସେହି ଘର" ପୁସ୍ତକରେ। ଋଷିକବି ମଧୁସୁଦନଙ୍କ ବୀଣାକୁ ସେ ପରିବାର ମଧ୍ୟରେ ପରୀକ୍ଷା କରି ଦେଖାଇ ଦେଇଛନ୍ତି । ବିରାଟ ଭାବଗତ ପରିବାର। ଗୁରୁଜନଙ୍କୁ ପ୍ରଣାମ ଓ ସାନମାନଙ୍କୁ ଆଶିଷ, ସବୁ କବିତାରେ। ସେ କେବଳ ଛନ୍ଦବନ୍ଧ ଅକ୍ଷର ଯୋଡ଼ା କାଗଜ ନୁହେଁ, ହୃଦୟରୁ ଝରିପଡୁଥିବା ଶ୍ରଦ୍ଧାର ଝରଣାଟିଏ । ପୁସ୍ତକ ସଜାର ପରିକଳ୍ପନା ବି ଅଭିନବ। 'ସଂପ୍ରୀତି', ଯାହାକୁ ନିଜର ସ୍ତ୍ରୀ ଓ ପିଲାମାନଙ୍କ ନାମର ପ୍ରଥମ ଅକ୍ଷରକୁ ନେଇ ନାମ କରଣ। ଦ୍ୱିତୀୟ ବିଭାଗଟି 'ସୁଦୀପ୍ତି' ତାଙ୍କ ବାପା, ବୋଉ ଓ ପିଲାମାନଙ୍କ ନାମର ପ୍ରଥମ ଅକ୍ଷରକୁ ନେଇ ଓ 'ସାନିଧ୍ୟ'ରେ ସଂକଳିତ ହୋଇଛି ତାଙ୍କର ବୃହତ୍ତର ପରିବାରର ଛବି, ଯେଉଁଥିରେ ରହି ଆସିଛି ସମଗ୍ର ପରିବାରରେ ପରସ୍ପରର ନିରନ୍ତର ସ୍ନେହ।

ଅନ୍ତରଙ୍ଗ ବନ୍ଧୁମାନଙ୍କୁ ଦୀର୍ଘ ଚିଠିଲେଖି ଭଲମନ୍ଦ ଖବର ନିଅନ୍ତି ପ୍ରଫେସର ଦାସ, ସେ ଚିଠି ପଢ଼ିଲେ ଲାଗେ ଗଦ୍ୟରେ ଲେଖା ହୋଇଥିବା ଭାବପୂର୍ଣ୍ଣ କବିତାଟିଏ। ତାଙ୍କ କବିତା ଲେଖା ସମ୍ପୂର୍ଣ୍ଣ ନୂତନ ଧରଣର । କବିତା ଲେଖିବା ପାଇଁ ତାହା ଲେଖା ହୋଇ ନଥାଏ, ଲେଖୁ ଲେଖୁ ତାହା କବିତା ହୋଇଯାଇଛି। କାହାପ୍ରତି ଶ୍ରଦ୍ଧା ଆନ୍ତରିକତା ନଥିଲେ ଏ ପ୍ରକାର ଲେଖା ସମ୍ଭବ ହୋଇପାରନ୍ତା ନାହିଁ।

ପ୍ରଫେସର ଗଣେଶ୍ୱର ଦାସଙ୍କର ଏହା ସପ୍ତମ ପ୍ରକାଶିତ ସୃଷ୍ଟି। ଅପ୍ରକାଶିତ ବି ଅନେକ ଅଛି। କେବଳ କଲମ କାଳିରେ ନୁହେଁ, ହୃଦୟ ମଧ୍ୟରେ। ପୁସ୍ତକ ରୂପରେ ପ୍ରକାଶ କରିବା ପାଇଁ ସେ ବଡ କୁଣ୍ଠିତ। ତଥାପି ତାଙ୍କ ପରିବାର ଓ ପ୍ରିୟତମ ଲୋକଙ୍କ ସହଯୋଗରେ ପ୍ରକାଶନ ସଂଖ୍ୟା ବଢ଼ି ବଢ଼ି ଚାଲିଛି । ସଂପ୍ରତି ପ୍ରକାଶ ପାଇବାକୁ ଯାଉଥିବା ପୁସ୍ତକ "ଏସବୁ ମୋହର ସୁଖ ପସରା" ବିଭିନ୍ନ ଘଟଣା ଅବସରରେ ଅନ୍ତରଙ୍ଗମାନଙ୍କୁ ତାଙ୍କ ପ୍ରଦତ୍ତ କବିତାର ସମାହାର। ଆମେ ନିକଟ ସମ୍ପର୍କୀୟ ବା ଦୂର ସମ୍ପର୍କୀୟ ମାନଙ୍କୁ ପ୍ରଣାମ ଅଥବା ଆଶିଷ ପ୍ରଦାନ କଲାବେଳେ, କେତେବେଳେ କିଛି ଟଙ୍କା, ଦ୍ରବ୍ୟ, ମିଠା ବା କେକ୍ ଦେଇଥାଉ। ଏହା ମାଧ୍ୟମରେ କିଛି ଅନ୍ତରଙ୍ଗ ଭାବକୁ କଅଁଳିଆ କରିବା ପାଇଁ। କିନ୍ତୁ ତା ସହିତ ମୁହଁରେ ପଦେ ଶୁଭେଚ୍ଛା, କାଗଜରେ ଧାଡ଼ିଟିଏ ଦେଲେ ତା ସେ ସମୟରେ ଉଲ୍ଲାସ ପ୍ରଦାନ କରିବା ସହିତ ପରମୁହୂର୍ତ୍ତରେ କି ପ୍ରକାର ଆନନ୍ଦ ଦିଏ ଅନୁଭବରେ ହିଁ ବୁଝିବା ସମ୍ଭବ।

ଏଭଳି ଅଭ୍ୟାସ ଅନ୍ୟମାନଙ୍କର ବି ଥାଇପାରେ, କିନ୍ତୁ ପ୍ରଦତ୍ତ ଉପହାରକୁ ଗୁନ୍ଥି, ମାଳ ସଜାଇ ପ୍ରକାଶିତ ରୂପରେ ବାହାରକୁ ଉତ୍ସର୍ଗ କଲେ, ତାହା ହୋଇଯାଏ ସମାଜର ସମ୍ପତ୍ତି । ସାରଙ୍କର ଏହି କବିତାମାନଙ୍କରୁ ପାଦଟୀକା ବା ଟିପ୍ପଣୀକୁ

ବାଦ୍‌ଦେଲେ ଏ କବିତା ବ୍ୟକ୍ତିଗତ ସ୍ତରରୁ ଉର୍ଦ୍ଧ୍ୱକୁ ଯାଇ ଅନେକ ସୁନ୍ଦର କବିତା ଭାବରେ ବିବେଚିତ ହେବ । ଯାହା ଅନ୍ୟାନ୍ୟ କବିମାନେ ହିଁ କରିଥାନ୍ତି । ବ୍ୟକ୍ତିଗତ ଭାବନାରେ ସାର୍ବଜନୀନ ଭାବ ସଂଯୋଗ କଲେ ତାହାହିଁ ହୋଇଯାଏ କାଳଜୟୀ ସାହିତ୍ୟ। ପ୍ରଫେସର ଦାସଙ୍କ ଆତ୍ମଜୀବନୀ, ବୌଦ୍ଧିକ ପ୍ରବନ୍ଧ ସଂକଳନ, ସମ୍ବାଦ ପତ୍ରର ସାହିତ୍ୟ ପତ୍ରରେ ପ୍ରକାଶିତ ଅନେକ ଅସଂକଳିତ ରଚନାରେ ହିଁ ସେହି ସ୍ପର୍ଶ ରହି ଆସିଛି ।

ଦୁନିଆରେ ପ୍ରତ୍ୟେକ ବ୍ୟକ୍ତି ସଭାବତଃ ସତନ୍ତ୍ର, ସେ ଘର ହେଉ ବା ବାହାର ହେଉ, ସ୍ନେହ-ପ୍ରୀତିର ତରଳ ବନ୍ଧନରେ ବାନ୍ଧିହୋଇ ଯିବାକୁ ହିଁ କୁହାଯାଏ ପରିବାର । ଯେପରି ଧର୍ମୀୟ ସଂସ୍ଥା ବା ସାମାଜିକ ଅନୁଷ୍ଠାନ ମାନଙ୍କରେ ହୋଇଥାଏ । 'ଭିନ୍ନ ଏକ ସଂଜ୍ଞା ମୋ ଜନ୍ମଦିନର'ରେ ଲେଖିଛନ୍ତି -

"ବନ୍ଧନରେ ବାନ୍ଧିହୋଇ ସଭିଏଁ ଥାଆନ୍ତୁ ପାଖରେ ମୋର
ସଭିଙ୍କ ସେନେହ ଯାତ୍ରା ଶେଷରେ ପାଥେୟ ହେଉ ମୋର" ।

ସେହିପରି ବାପାଙ୍କର ବିଗତ ଦିନର ସ୍ମୃତିକୁ ମନେ ପକାଇ ଲେଖିଛନ୍ତି -

"ମନେଅଛି ବାପା ଜଗାକୁ ଦେଖି ତମ ଆଖିରେ ଆଖିଏ ଲୁହ ।
ଯେତେ ପୋଛୁଥାଅ ସେତେ ବୋହୁଥାଏ ଭକ୍ତିର ଅମାପ କୋହ ।"

ନିଜ ବୋଉଙ୍କର ଉନବିଂଶତି ଶ୍ରାଦ୍ଧ ଅବସରରେ ବି ରହିଛି ତାଙ୍କ କଲମରୁ କବିତାଟିଏ, 'ବୋଉଲୋ'ରେ

"ବୋଉଲୋ, ତୁ ଶିଖାଇଥିବା ସହିବାର ସାଧନା ନେଇ
ଜୀବନର ଯାବତ ଝଡ଼ଝଞ୍ଜା ସବୁ ନେଲି କୋଳେଇ
ତୋପରି ଅନାଇ ରହିଛି କେବେ ଶୁଣିବି ତାଙ୍କରି ଡାକ
ମହାନନ୍ଦେ ଚାଲିଯିବି ନଥିବ ଆଉ ଦୁଃଖ ଅବା ଶୋକ ।"

ସେହିପରି ଶାଶୁଙ୍କର ଦଶମ ବାର୍ଷିକ ଶ୍ରାଦ୍ଧ ଅବସରରେ ଦୁଃଖାଶ୍ରୁକୁ ଅଶ୍ରୁର ମାଳ ଓ ତା ମଧରେ ଏକ କମନୀୟ ଫୁଲର ଅର୍ଘ୍ୟ ଅର୍ପଣ କରିଛନ୍ତି । ଯେପରି 'ପ୍ରଭୁଙ୍କୁ ଡାକୁଛି ଦିଅନ୍ତୁ ଶୀଘ୍ର ମେଲାଣି'ରେ ପଦେ ଲେଖଛନ୍ତି ।

"ମାଳରେ ଥିବା ପ୍ରତିଟି ଅଶ୍ରୁବିନ୍ଦୁରେ ମହକୁଛି
ତମ କମନୀୟତାର କେତେ କୋମଳ ଫୁଲ,
ଆଉ ମାଳର ମଝିରେ ଝଟକୁଛି
ନମ୍ରତାର ଫୁଲଟିଏ, ସତେ ଅବା ଫୁଟିଛି"

"ଦୁଃଖ ଅଭାବରେ ଦୁଃଖ" ଏ ପର୍ଯ୍ୟାୟର ଏକ ଚମତ୍କାର କବିତା । ଅଶ୍ରୁପାତରେ ଦୁଃଖ ଧୋଇ ହୋଇଯାଏ । ଆଖିରୁ ଲୁହ ନ ବୋହି ଦୁଃଖ ରହିଲେ ବେଦନାର ପାହାଡ ଆଉରି ଉଚ୍ଚ ହୋଇଯାଏ । ଯେପରି --

ସେତେବେଳେ ବି ଦୁଃଖ ଥିଲା
ଆଖିରୁ ଅଜସ୍ର ଲୁହ ବୋହୁଥିଲା
କେତେ ନିଦ୍ରା ବିହୀନ ରାତ୍ରି ବିତୁଥିଲା ।'

ମାତ୍ର ଏବେ ପରିସ୍ଥିତି ବଦଳିଛି, ଯେପରି - 'ଏବେ ବାର୍ଦ୍ଧକ୍ୟର ବନ୍ଧନରେ ବନ୍ଧା ମୁହିଁ
କର୍ତ୍ତବ୍ୟର କାରୁଣ୍ୟରେ ଅଭିମାନ ମରେ ଯହିଁ
ହଜିଲା ଦୁଃଖକୁ ପାଇବାର ପ୍ରୟାସ ନାହିଁ ।'

ପୁସ୍ତକର ଦ୍ୱିତୀୟ ପର୍ଯ୍ୟାୟରେ ଭରି ରହିଛି ଅନ୍ତରଙ୍ଗ ଭାବନାର କେତୋଟି ପାଖୁଡା । ଏ ପର୍ଯ୍ୟନ୍ତ ଅର୍ଦ୍ଧଶତକ ବର୍ଷ ଯାହାଙ୍କ ପ୍ରେରଣାରେ, ସହଯୋଗରେ ବାଟ ଚାଲିଛନ୍ତି ସେ । ବୃହତ୍ତର ପରିବାରକୁ ଗୁନ୍ଥିବାରେ ସୂତାଖିଅର ଭୂମିକା ନେଇଛନ୍ତି ଯିଏ, ତାଙ୍କରି ଜନ୍ମଦିନ ଅବସରରେ ତୋଳି ଦେଇଛନ୍ତି କେତୋଟି ସଜଫୁଟା ଫୁଲ । ଜୀବନ ତରଣୀରେ ବସି ପବନ ତାନରେ

ଦୋହଲି ଦୋହଲି ବିତାଉଥିବା ଦିନର ଘଟଣା । ଏଥିରେ ରହିଛି ଅନାବିଳ ଭଲ ପାଇବା ଯେପରି ଶିବ-ଶକ୍ତିଙ୍କର ନିବିଡ଼ ଭାବ। ଉତ୍ତରଣ ବୟସରେ ମନେ ପଡ଼ିଯାଉଛି ସେହି ବିତିଲା ଦିନର ଘଟଣାସବୁ । ଘରେ ବାହାରେ ତୀର୍ଥ ସ୍ଥଳରେ ପାଳନ କରିଛନ୍ତି ପତ୍ନୀଙ୍କର ଜନ୍ମଦିନ । କାମନା କରିଛନ୍ତି ପତ୍ନୀଙ୍କର ଓ ପରିବାରର ମଙ୍ଗଳ । ଉପହାର ଧନରେ ନଦେଇ ମନରେ ଦେଇ ଲେଖିଛନ୍ତି --

"-- ମୋ ଠାରେ ତୁମେ, ତୁମଠାରେ ମୁଁ ସେଇ ମାତ୍ର ଥାଉ

'ତୁମେ ମୋ ସର୍ବସ୍ୱ' କହି ଦିନ ଆମ ବିତିଯାଉ ।"

ସ୍ନେହ, ଶ୍ରଦ୍ଧା, ଭଲପାଇବା ମଧ୍ୟରେ ମାତୃତ୍ୱର ଆନନ୍ଦରେ ଯାବତୀୟ ଯନ୍ତ୍ରଣାକୁ ଆଦରି ନେଇ ବିତାଇଥିବା ଦିନକୁ ଅତି ମାର୍ମିକ ଭାଷାରେ ଉପସ୍ଥାପନ କରିଛନ୍ତି ପ୍ରଫେସର ଦାସ କବିତା ରୂପରେ ।

ପୁସ୍ତକର ତୃତୀୟ ଅଂଶରେ ରହିଛି ଅନ୍ତରଭରି ଭଲ ପାଉଥିବା ଭଉଣୀମାନଙ୍କ ପ୍ରତି ବାର୍ତ୍ତା । ଜନ୍ମ ଦିନର ଶୁଭେଚ୍ଛା ଓ ବାର୍ତ୍ତାରେ ପରିବାର ମଧ୍ୟରେ ରହିଥିବା ନିବିଡ଼ ଭଲପାଇବାର ମନ୍ତ୍ର ଏଥିରେ ଉଚ୍ଚାରିତ । ସେହି ନିବିଡ଼ତାର ରୂପ କବିତା ରୂପରେ ଆସିଛି --

"ମୃତ୍ୟୁତ ସତେ ଡରିଯିବ ତତେ, ଡରିଯିବ ପିଲାଙ୍କ ଅଜସ୍ର ଯତ୍ନକୁ

ଶହେବର୍ଷ ପୂର୍ତ୍ତି ପିଲାଏ ପାଳିବେ, ଏତିକି ମିନତୀ ପ୍ରଭୁଙ୍କୁ ।"

ବଡ ଭାଇଭଉଣୀଙ୍କ ବିବିଧ ସ୍ମୃତି ମନେ ପକାଇ ଲେଖିଛନ୍ତି କେତେ କେତେ କବିତା, ତା ଭିତରେ ବି ଲେଖି ହୋଇଯାଇଛି 'ଟିମିଅପା'ଙ୍କୁ । କହିଛନ୍ତି --

"ଆଜି ଆଖିଲୁହ ପୋଛି ଦେବା<br>ଅତୀତର ଯନ୍ତ୍ରଣାକୁ ଭୁଲିଯିବା<br>ମନଖୋଲି ଆଜି ଯାବତ ହସିବା, ଖେଳିବା<br>ଖେଳୁ ଖେଳୁ କେଉଁଦିନ ଚାଲିଯିବା ।"

ପ୍ରଫେସର ଦାସଙ୍କ କବିତାରେ ହତାଶା ଅପେକ୍ଷା ଆଶାବାଦର ସ୍ୱର ଅଧିକ । ଯେପରି - ନୂଆ ବର୍ଷରେ ତାଙ୍କ ଶାଳୀ 'ଲକ୍ଷ୍ମୀ'ଙ୍କ ପାଇଁ ଶୁଭେଚ୍ଛା ବାର୍ତ୍ତାରେ

"କାଢ଼ି ଦେ ତୋ ମନ ସିନ୍ଦୁକରୁ ଯାବତ ବ୍ୟଥା ଓ ବେଦନା<br>ଅତୃପ୍ତିର ଯାବତ ଦୀର୍ଘଶ୍ୱାସ, ଆନନ୍ଦେ ଭରିଉଠୁ ତୋ ନୂଆ ବରଷ ।"

ସେହିପରି ଅନ୍ୟ ଏକ ଶୁଭେଚ୍ଛାରେ ଦୁର୍ଗେଶ ନନ୍ଦିନୀଙ୍କୁ --

"ଚିରଦିନ କାମରେ ବିଶ୍ୱାସ ତମର<br>ତମ ନିର୍ମଳ ମନ ତମ ଆନ୍ତରିକତା<br>'ଶେଷ ନିଃଶ୍ୱାସ' ତମପାଇଁ ଅବାନ୍ତର<br>ଆମ ସଭିଙ୍କ ପାଇଁ ତମ ଜନ୍ମ ଦିନର ବାର୍ତ୍ତା"

ଏହାର ପର ପର୍ଯ୍ୟାୟରେ ଏହି ପରିବାର ବଗିଚାର ଟିକି ଟିକି ଫୁଲଙ୍କୁ ନେଇ ସଜାଇଛନ୍ତି ବଗିଚା । ଚାରା ଗଛ କ୍ରମେ ବଡ ହୋଇଛି ଓ ସେ ଗଛରୁ ପୁଣି ଆଉ ଗଛ, କୋଳାହଳରେ ପୁରିଉଠିଛି ସାରା ବଗିଚା ଯାହାକୁ କବି ଲେଖିଛନ୍ତି -

"ଆମ ସୃଷ୍ଟ କଣ୍ଢେଇମାନେ<br>କଣ୍ଢେଇରୁ ସୃଷ୍ଟି କଣ୍ଢେଇ<br>ସୌନ୍ଦର୍ଯ୍ୟରୁ ସୃଷ୍ଟ ଜୀବନ / ଜୀବନରୁ ସୃଷ୍ଟ ଆନନ୍ଦ..."

ଏହି ପର୍ଯ୍ୟାୟରେ "ମହାନନ୍ଦେ ବିତୁ ଜୀବନ ତୁମର" ଏକ ଚମତ୍କାର କବିତା । ପତ୍ନୀଙ୍କର ଭୟାନକ ଶାରୀରିକ ଅସୁସ୍ଥତା ମଧ୍ୟରେ ପୁଅ ସୁମନ୍ ଓ ବୋହୂ ରୀନାର ବିବାହ ବାର୍ଷିକୀ ପାଳନ ପାଇଁ ବି ଭୁଲି ନାହାନ୍ତି ସେ ।

"ପ୍ରବଳ ଝଡ, ତା ସାଙ୍ଗକୁ ପ୍ରବଳ ବର୍ଷା,
ତୁମେ ଦି' ଜଣ ଛତାଟିଏ ଦେଲ ସିନା
ନ ହେଲେ ଭାସିତ ଯାଇଥାନ୍ତୁ କେଉଁ ଦୂରଦୂରାନ୍ତକୁ
ସତ୍ତା ବୁଡିଗଲାବେଳେ କି ଥିଲା ଆମକୁ ଜଣା ।"

ତା ସହିତ - 'ଏକ ସଫଳ ଜୀବନ ଯାତ୍ରା ପାଇଁ ପ୍ରାର୍ଥନା, ବାକିଆ ପାଉଣା ପାଇଁ ପ୍ରାର୍ଥନା, କିଛିଟା ଆଶା, ପ୍ରଭୁ ତମଠାରେ ସମର୍ପଣ, ତଥା 'ଫୁଲଟି ଉଲ୍ଲସି ଉଠିବ', ଆଦିରେ ପରିପୂର୍ଣ୍ଣ ଭାବ ପ୍ରକାଶ ପାଇଛି । 'ଭାଷାହୀନ ଆଶାରେ' ଲେଖିଛନ୍ତି - 'ମୋ ଦାରିଦ୍ର୍ୟ ମହାନ ହୋଇଗଲା, / ଯେଉଁଦିନ ତୁ ଦାରିଦ୍ର୍ୟର ଅର୍ଥ ବୁଝିଲୁ ।'

ତା ସହିତ ନାତିର ଜନ୍ମ ଦିନରେ ଇଂରାଜୀରେ ଲେଖା କବିତା ଓ ସେ କବିତା ମାନଙ୍କର ଓଡ଼ିଆ ଅନୁବାଦ ବେଶ୍ ସୁନ୍ଦର ହୋଇଛି । ପୁଣି 'ଯୌବନରେ ସୁକ୍ରୀତ' ଓ 'ମୁଁ ଦେଖିଛି ସୁକ୍ରୀତକୁ' କବିତାରେ ଯୁବମାନସର ବିଶ୍ଳେଷଣ କେବଳ ନିଜ ନାତି ନୁହେଁ ଦୁନିଆଁର ଅନେକ ନାତିଙ୍କ ପାଇଁ ଏହା ପଠନୀୟ । ପ୍ରଫେସର ଦାସ ସବୁ ଯୁବକଙ୍କୁ ସୁକ୍ରୀତ ମଧ୍ୟରେ ଅନୁଧ୍ୟାନ କରିଛନ୍ତି । ସେହିପରି 'ଲକ୍ଷ୍ୟସ୍ଥଳ କେବେ ଭୁଲିବୁ ନାହିଁ କବିତାରେ ସାନବୋହୂ ଦୀପ୍ତିର ଜନ୍ମଦିନ ଅବସରରେ ଆଶିଷ ପ୍ରଦାନ ମାଧ୍ୟମରେ ଯେପରି ସବୁ ବୋହୂଙ୍କୁ ଦେଇଛନ୍ତି ଉପଦେଶ ।

ପିତା ବା ଶଶୁର ଭାବରେ ଝିଅ, ବୋହୂଙ୍କ ଅନ୍ତରର ବାଣୀ କବିତା ମାଧ୍ୟମରେ ପ୍ରଦାନ କରିଛନ୍ତି ସେ । ଯେପରି 'ଭୁଲିଗଲି ପୁଅ ମୋର ମା'ଟିଏ ବୋଲି' କବିତାରେ ଚମତ୍କାର ଭାବ ଉପସ୍ଥାପନ କରିଛନ୍ତି । 'ସେଇତୋର ସିଦ୍ଧି ଓ ସାଧନା' ଓ 'ସୁଖ ଶାନ୍ତି ଭରି ଉଠୁ ତୋ ଜୀବନେ ରେ' କବିତା ଝିଅ ଓ ବୋହୂଙ୍କୁ ଶୁଭେଚ୍ଛା ଜଣାଇଛନ୍ତି ।'

ସେହିପରି ପୁତ୍ରୋପମ ବନ୍ଧୁ ଡ଼ଃ ସୁକାନ୍ତ ଚନ୍ଦ୍ର ସାଇଁ ଓ ତାଙ୍କ ପତ୍ନୀଙ୍କୁ 'ମୁକ୍ତିର ଆଶା' କବିତାରେ ଆନ୍ତରିକ ଶୁଭେଚ୍ଛା ଜଣାଇଛନ୍ତି ।

କବି ସୁଖରେ ଉଲ୍ଲସିତ ବା ଦୁଃଖରେ ହାଃ ହୁତାଶ ନ ହୋଇ କବିତା କିମ୍ବା ଶୁଭେଚ୍ଛା ବାର୍ତ୍ତା ଦେଇ ପରମେଶ୍ୱରଙ୍କ ନିକଟରେ ସମର୍ପଣ କରି ନିଅନ୍ତି ନିଜକୁ । ଦିନେ ବଡବୋହୂ ଦୁର୍ଘଟଣାରେ ଶଯ୍ୟାଶାୟୀ ଓ ନାତି ବି କଲେଜରୁ ଆସୁ ଆସୁ ଦୁର୍ଘଟଣାଗ୍ରସ୍ତ ହୋଇଛି, ଆଗରେ ବୋହୂର ଜନ୍ମଦିନ । ସେହି ଅବସରରେ ସେ ତଥାପି କବିତାଟିଏ ଉପହାର ଦେଇ 'ଅମାବାସ୍ୟାର ଅନ୍ଧକାରକୁ ଡରିବୁନି' କବିତାରେ ନିଜର ଅଭିବ୍ୟକ୍ତି ପ୍ରକାଶ କରିଛନ୍ତି ।

ପୁସ୍ତକଟିରେ ଭାବ ଓ ଭାଷା ବେଶ ହୃଦୟସ୍ପର୍ଶୀ । ବ୍ୟକ୍ତିଗତ ଚିତ୍ର ସମାହାରରେ ପ୍ରକାଶ କରିଥିବା ଏ ଦଲିଲ୍ ସବୁ ସାରସ୍ୱତ କେଦାରରେ ଚମତ୍କାର ଫସଲ ଭାବରେ ଆଜି ଓ ଆଗାମୀ ପିଢୀରେ ଯେ ନିଶ୍ଚୟ ବିବେଚିତ ହେବ ସେ ପ୍ରକାର ଆଶା ରହିଛି । ପୁସ୍ତକ ପ୍ରକାଶନ ଅବସରରେ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା, ସାର୍ ନିରାମୟ ଦୀର୍ଘଜୀବନ ଲାଭ କରନ୍ତୁ । ତା ସହିତ ସୃଷ୍ଟି ସମ୍ପଦକୁ ପ୍ରକାଶ ପାଇଁ ପ୍ରଭୁ ଜଗନ୍ନାଥ ଅସୀମ ଆତ୍ମ-ଶକ୍ତି ପ୍ରଦାନ କରନ୍ତୁ ଏତିକି ମାତ୍ର କାମନା ।

**ଡ଼ଃ ଶ୍ରୀଚରଣ ମହାନ୍ତି**
**ପ୍ରାଧ୍ୟାପକ, ଓଡ଼ିଆ ବିଭାଗ**
**ଜାତୀୟ କବି ବୀର କିଶୋର ସରକାରୀ ମହାବିଦ୍ୟାଳୟ,**
**କଟକ - ୩ ।**




# VALUE SYSTEM

(A Text Book for +3 Degree Students)

**Professor Ganeswar Das**

Principal, Government College,

Rourkela, Odisha

**Dr. Dibakar Sahoo,**

Lecturer, Dalmia College,

Rajgangpur, (Odisha)

NEWMAN PUBLICATIONS

SAMBALPUR

# PREFACE

This book is the outcome of a long cherished will of the authors. Keeping in view the demand of the students and teachers, the authors have designed this work so as, to meet, the urgent necessity of a concise course on value system. The students were facing a lot of problems due to the paucity of books ever since value system was introduced in the foundation courses at the +3 degree level in Indian Universities. This noble work will be fruitful if it succeeds in ameliorating the mental strain of the students. The book is expected to be intelligible to the general students and informative to the advanced students also.

The authors are highly grateful to professor Girija Goswami without his assistance the present work would not have seen the light of the day.

AUTHORS

# COURSES OF STUDIES

## Value System

1. Value system in modern Society Materialism vs. Spiritualism, Moral and Religious values.

2. Liberal and democratic values, Totalitarian Values, Democratic Values, Rights, Liberty, Equality, Justice, Nationalism. Humanism, Internationalism, Totalitarian values, Communism, Fascism.

3. Science, Religion and Ethics.

4. Social and Economic Values.



ଡକ୍ଟର ଶ୍ରୀଚରଣ ମହାନ୍ତି

ଶାନ୍ତିନିକେତନର ଶିକ୍ଷା ଓ ସଂସ୍କାରକୁ ଉପଜୀବ୍ୟ କରି ଅଧ୍ୟାପନାକୁ ବୃତ୍ତି କରିଥିବା ଡକ୍ଟର ଶ୍ରୀଚରଣ ମହାନ୍ତି ପ୍ରବୃତ୍ତିରେ ଜଣେ ସାହିତ୍ୟ ସାଧକ। ସାରସ୍ୱତ ଜଗତରେ ତାଙ୍କର ପରିଚିତିର ପରିସୀମା କବିତା, ପ୍ରବନ୍ଧ, ରମ୍ୟରଚନା, ଶିଶୁସାହିତ୍ୟ, ଗୀତିକବିତାଠୁ ଆରମ୍ଭ କରି ସାହିତ୍ୟ ସମାଲୋଚନା ପର୍ଯ୍ୟନ୍ତ ପରିବ୍ୟାପ୍ତ। ଜଣେ ନିଷ୍ଠାପର ଗବେଷକ, ସଂପାଦକ ତଥା ସାହିତ୍ୟ ସଂଗଠକ ଭାବରେ ତାଙ୍କର ସୁଖ୍ୟାତି ରହିଛି। ସେ ତିନିଥର ମାୟାଧର ମାନସିଂହ ପୁରସ୍କାର ତଥା ଶିଶୁସାହିତ୍ୟରେ ତିନିଥର ଜାତୀୟ ପୁରସ୍କାର ଲାଭ କରିଛନ୍ତି। ସେ ଜଣେ ସୌଖୀନ କଣ୍ଠଶିଳ୍ପୀ ତଥା ଆକାଶବାଣୀ ଓ ଦୂରଦର୍ଶନର ସ୍ୱୀକୃତିପ୍ରାପ୍ତ ଗୀତିକାର। ଓଡ଼ିଶାର ବହୁ ସଂସ୍ଥା ତାଙ୍କୁ ସମ୍ବର୍ଦ୍ଧନା ପ୍ରଦାନ କରିଛନ୍ତି।

୧୯୮୪ ମସିହାରୁ ଆଜିପର୍ଯ୍ୟନ୍ତ ପ୍ରଫେସର ଗଣେଶ୍ୱର ଦାସଙ୍କ ସହିତ ତାଙ୍କର ସାହିତ୍ୟିକ ସଂପର୍କ ରହିଆସିଛି। ରାଉରକେଲା ସରକାରୀ କଲେଜର ଅଧ୍ୟକ୍ଷ ଥିବା ସମୟରେ ପ୍ରଫେସର ଦାସ ତାଙ୍କୁ ଗୀତ ରଚନା, ସାହିତ୍ୟର ବିଭିନ୍ନ ବିଭାଗରେ ଲେଖିବା ଓ ସାଂସ୍କୃତିକ କାର୍ଯ୍ୟକ୍ରମ ପରିଚାଳନା ପାଇଁ ବହୁବିଧ ପ୍ରୋତ୍ସାହ ପ୍ରଦାନ କରିଥିଲେ। ପ୍ରଫେସର ଦାସଙ୍କ ଅବସର ଗ୍ରହଣ ପରେପରେ ତାଙ୍କ ରଚନା ପ୍ରଣୟନ, ସଂକଳନ ଓ ପ୍ରକାଶନ ତଥା ଅନେକ ପୁସ୍ତକର ନାମକରଣ ପାଇଁ ପୂର୍ଣ୍ଣପ୍ରାଣରେ ସହଯୋଗ କରିଆସିଛନ୍ତି ଡକ୍ଟର ମହାନ୍ତି।